ଉତ୍କଳମଣି

# ପଣ୍ଡିତ ଗୋପବନ୍ଧୁ


ଲେଖକ:—

ଶ୍ରୀ ସତ୍ୟବାଦୀ ତ୍ରିପାଠୀ

ଶ୍ରୀ ବାଉରବଂଧୁ ତ୍ରିପାଠୀ



ପ୍ରଥମ ମୁଦ୍ରଣ

ପ୍ରକାଶକ:—

ବୁକ୍‌ଡିପୋ—ବାରିପଦା

# ଭୂମିକା

ପୁସ୍ତକର କଳେବରମଣ୍ଡନ ଭୂମିକାର କେବଳ ମୁଖ୍ୟ ଉଦ୍ଦେଶ୍ୟ ନୁହେ । ସାହିତ୍ୟଜଗତରେ ଭୂମିକାର ଆବଶ୍ୟକତା ଯଥେଷ୍ଟ । ଏହାଦ୍ୱାରା ପୁସ୍ତକର ବିଷୟବସ୍ତୁର ଆଭାସ ମିଳେ । ସେଥିପାଇଁ ପାଠକପାଠିକା-ମାନଙ୍କର ପ୍ରଥମଦୃଷ୍ଟି ପଡ଼େ—ଭୂମିକାଉପରେ । ଭୂମିକା ଦେଖି ପୁସ୍ତକ ପ୍ରତି ତାଙ୍କର ଆଗ୍ରହ ବଢ଼ିଥାଏ । ତଥାପି ସ୍ୱର୍ଗୀୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଜୀବନଚରିତର ମୁଖବନ୍ଧ ଲେଖିବା ଅନାବଶ୍ୟକ ବୋଲି ମନେହୁଏ । ଗୋପବନ୍ଧୁଙ୍କର ନାମ ଉତ୍କଳର ପ୍ରତ୍ୟେକ ଗୃହରେ ଜଣାଶୁଣା । ଉତ୍କଳର ଆବାଳବୃଦ୍ଧବନିତାଙ୍କ ନିକଟରେ ସେ କିପରି ଭାବରେ ପରିଚିତ, ତାଙ୍କର କ୍ରିୟାକଳାପ ସମସ୍ତଙ୍କ ହୃଦୟରେ ଯେ କିପରି ଭାବରେ ଅଙ୍କିତ, ତାହା କାହାରିକୁ ଅଜଣା ନାହିଁ । ଆଜି ତାଙ୍କର ଅଭାବ ଯେ ସକଳେ କିପରି ଭାବରେ ଅନୁଭବ କରୁଛନ୍ତି, ତାହା ବର୍ଣ୍ଣନା କରିବା ଦୁଃସାଧ୍ୟ । ଓଡ଼ିଶାର ସମସ୍ତ ପୁରପଲ୍ଲୀ ଉତ୍କଳମଣିଙ୍କ ମଧୁମୟ ପ୍ରଭାବରେ ପ୍ରଭାବିତ । ଗୋପବନ୍ଧୁଙ୍କ ଜୀବନଚରିତ ଯେ ଜାତୀୟ ସାହିତ୍ୟ ମଧ୍ୟରେ ଏକ ଅମୂଲ୍ୟ ସମ୍ପଦ, ତାହା ସମସ୍ତେ ଏକ ବାକ୍ୟରେ ସ୍ୱୀକାର କରିବେ । ଯେଉଁ ମହାପୁରୁଷ ଦେଶର ଦୈନ୍ୟ ଅପନୋଦନ ପାଇଁ ଜୀବନର ଶେଷ ରକ୍ତ ବିନ୍ଦୁଟିକ ସୁଦ୍ଧା ଅକାତରରେ ଢାଳି ଦେଇ ପାରିଥିଲେ, ତାଙ୍କର ପ୍ରାଣ ଯେ କି ମହତ୍ତ୍ୱଭାବରେ ଗଢ଼ା ଓ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ଉପାଦାନଗୁଡ଼ିକ ଯେ କିପରି ମଧୁମୟ ଭାବରେ ତାଙ୍କ ହୃଦୟରେ ନିବେଶିତ ଥିଲା, ତାହା ଆମ୍ଭମାନଙ୍କ କଳ୍ପନା ସୀମାର ଅତୀତ ସାଧାରଣ ମାନବ ସଂସାରର ଅନ୍ଧକାରାଚ୍ଛନ୍ନ କଣ୍ଟକାକୀର୍ଣ୍ଣ ପଥରେ ପରିଭ୍ରମଣ କଲାବେଳେ ମାୟାର ମୋହିନୀ ଶକ୍ତି ଦ୍ୱାରା ପ୍ରଲୋଭିତ ହୋଇ ଗନ୍ତବ୍ୟ ପଥ ପରିତ୍ୟାଗ କରିଥାଏ । କିନ୍ତୁ ଗୋପବନ୍ଧୁଙ୍କ ଜୀବନରେ ମାୟାର ସେହି ମୋହିନୀ ଶକ୍ତି ସମ୍ପୂର୍ଣ୍ଣରୂପେ ପ୍ରତିହତ । ନାନା ବିଘ୍ନମୁଖେ

ପ୍ରକୃତମଧ୍ୟରେ ସେ ତାଙ୍କ ଜୀବନର ଲକ୍ଷ୍ୟ ସ୍ଥିର କରି ପାରିଥିଲେ—ଏହାହିଁ ତାଙ୍କ ଜୀବନର ବିଶିଷ୍ଟ ସ୍ୱାତନ୍ତ୍ର୍ୟ । ଦରିଦ୍ର ନାରାୟଣର ସେବାକୁ ସେ ଜୀବନରେ କେବଳ ବ୍ରତ କରି ପ୍ରାଣବାୟୁ ବାହାରି ଯିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେହିମାନଙ୍କ ପାଇଁ କର୍ମକ୍ଷେତ୍ରରେ ଦଣ୍ଡାୟମାନ ରହିଥିଲେ । ସୁବିସ୍ତୀର୍ଣ୍ଣ କର୍ମକ୍ଷେତ୍ରରେ ବିଭିନ୍ନ ମତାବଲମ୍ବୀମାନଙ୍କ ମଧ୍ୟରେ କାର୍ଯ୍ୟ କରୁଥିଲେ ସୁଦ୍ଧା ସ୍ୱୀୟ କର୍ତ୍ତବ୍ୟ ପାଳନରେ କେହି ତାଙ୍କୁ କେବେ ପରାଙ୍ମୁଖ ଦେଖି ନାହାନ୍ତି; ଦେଖିଛନ୍ତି—କର୍ତ୍ତବ୍ୟ ପାଳନରେ ମହା-ଆନନ୍ଦ, ହୃଦୟରେ ଅସୀମ ଉତ୍ସାହ ଓ କର୍ମ ସାଧନାରେ ଏକ ଅଦ୍ଭୁତ ଅଭିନବ ପ୍ରେରଣା । କର୍ତ୍ତବ୍ୟର ମଧୁର ଆହ୍ୱାନ ସେ ସର୍ବଦା ଶୁଣି ପାରୁଥିଲେ, ଧନସମ୍ପଦ-ପରିପୂର୍ଣ୍ଣ ସୁରମ୍ୟ ଅଟ୍ଟାଳିକା- ପରିଶୋଭିତ ନଗରରେ, ଜୀର୍ଣ୍ଣ କୁଟୀରପୂର୍ଣ୍ଣ ଦରିଦ୍ର ପଲ୍ଲୀରେ, ପ୍ରଳୟକାଳୀନ ଜଳରାଶି ପରିପୂରିତ ଉଦ୍ଧ୍ୟଦ୍‌ବେଗା ପ୍ରବାହିନୀର ଘନଘୋର ତରଙ୍ଗାବର୍ତ୍ତରେ, ବିକଟ-ଦଶନ ରକ୍ତଲୋଲୁପ ଦୁର୍ଭିକ୍ଷର ରଣପ୍ରାଙ୍ଗଣରେ ଉତ୍କଳର ଦୀନବନ୍ଧୁଙ୍କର ପ୍ରଶାନ୍ତ ଆନନ ତିଳେମାତ୍ର ତାହାର ଦର୍ଶ ଆଉ ପାଇ ନ ଥିଲା ଏତାଦୃଶ ମହାପୁରୁଷଙ୍କର ବିଭିନ୍ନ କର୍ମମୟ ଜୀବନଚରିତ ଯେ କିପରି କଠୋର ଆୟାସସାଧ୍ୟ, ତାହା ପାଠକପାଠିକାମାନେ ବିଚାର କରିବେ ।

ଗୋପବନ୍ଧୁଙ୍କ ଜୀବନଚରିତ, ଲେଖକଦ୍ୱୟ ତାଙ୍କର ପବିତ୍ର ପାଦତଳେ ବସି, ମଧୁର ଉପଦେଶରାଜି ଶ୍ରବଣକରି ଜୀବନକୁ ତାଙ୍କର ପ୍ରେରଣାରେ ଅନୁପ୍ରାଣିତ କରିଥିଲେ; ଲେଖକ ଶ୍ରୀମାନ୍ ସତ୍ୟବାଦୀ ତ୍ରିପାଠୀ ପୁରୀ ବ୍ରାହ୍ମଣସମିତି ଛାତ୍ରାବାସରେ ଥିଲାବେଳେ ଗୋପବନ୍ଧୁଙ୍କୁ ଆଦର୍ଶ-ରୂପେ ପାଇ ତାଙ୍କର ପ୍ରଭାବରେ ଛାତ୍ରାବସ୍ଥାରୁ ନିଜ ଜୀବନର ଗତିକୁ ନିୟନ୍ତ୍ରିତ କରିପାରିଥିଲେ । ସାଂସାରିକ ନାନା ବାଧାବିଘ୍ନନିବନ୍ଧନ ଉଚ୍ଚଶିକ୍ଷାରୁ ବିରତ ହୋଇ ଶ୍ରୀମାନ୍ ସତ୍ୟବାଦୀ କଣ୍ଠଦେଶ ସରକାରୀ ଚାକିରି ଗ୍ରହଣକଲେ । କିନ୍ତୁ ଗୋପବନ୍ଧୁଙ୍କର ପ୍ରିୟ କର୍ମଭୂମି ସତ୍ୟବାଦୀରେ

କର୍ମୀ ଅବଶ୍ୟକ ହେବାରୁ ସେଠାରେ ଆନନ୍ଦରେ ଯୋଗ ଦେଇ ଉତ୍କଳମଣିଙ୍କୁ, ପୁଣି ଗୁରୁଭାବରେ ପାଇ ନିଜକୁ ଧନ୍ୟ ମଣିଥିଲେ । ସେ ବର୍ତ୍ତମାନ ପଲ୍ଲୀର ଜଣେ ଶୁଦ୍ଧ ପୂତ କର୍ମୀ । ପ୍ରାଥମିକ ଜୀବନରେ ଗୋପବନ୍ଧୁଙ୍କୁ ଗୁରୁରୂପେ ପାଇ ଓ ପରବର୍ତ୍ତୀ ଜୀବନରେ ତାଙ୍କର ସହକର୍ମୀ ହୋଇ ସେ ଉତ୍କଳପ୍ରାଣ ଦରିଦ୍ରବନ୍ଧୁଙ୍କ କାର୍ଯ୍ୟକଳାପ ବିଷୟରେ ଓ ଜୀବନର ଗତି ସମ୍ପର୍କରେ ଯଥେଷ୍ଟ ଅଭିଜ୍ଞତା ଲାଭ କରି ପାରିଥିଲେ ।

ଶ୍ରୀମାନ୍ ରାଜୀବବନ୍ଧୁ ଗୋପବନ୍ଧୁଙ୍କ ପ୍ରିୟତମ ଜୁରିଅନା-ବକୁଳ-ସେବିତ ସତ୍ୟବାଦୀ ବିଦ୍ୟାଳୟରେ ପାଠ ସମାପନାନ୍ତେ ବର୍ତ୍ତମାନ କଲେଜର ଛାତ୍ର । ସେ ଘନିଷ୍ଠ ଭାବରେ ସ୍ୱର୍ଗୀୟ ଗୋପବନ୍ଧୁଙ୍କ ସମ୍ପର୍କରେ ଆସି ଥିଲେ ଓ ପଣ୍ଡିତଙ୍କ ଜୀବିତାବସ୍ଥାରେ ତାଙ୍କ ଜୀବନଚରିତ ଲେଖିବାପାଇଁ ସଚେଷ୍ଟ ଥିଲେ । ଫଳତଃ ଏହି ଲେଖକଦ୍ୱୟ ଗୋପବନ୍ଧୁଙ୍କ ସହିତ ବିଶେଷଭାବରେ ସଂପୃକ୍ତ ।

ଏହି ଜୀବନଚରିତ ଲେଖିବାରେ ଉତ୍କଳର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ଉତ୍କଳମଣିଙ୍କ ବିଷୟରେ ନାନା ଉପାଦାନ ପ୍ରଦାନ କରି ସାହାଯ୍ୟ କରିଥିବାରୁ ତାଙ୍କଠାରେ ଆମ୍ଭେମାନେ ଋଣୀ । ଗୋପବନ୍ଧୁଙ୍କର ସରସ ମଧୁମୟ ଜୀବନ ସମ୍ପର୍କରେ ନୀରସ ଭୂମିକା ଲେଖି ପାଠକପାଠିକା-ମାନଙ୍କର ଧୈର୍ଯ୍ୟ ଲୋପ କରାଇବା ନିତାନ୍ତ ଅଯୌକ୍ତିକ । ସେଥିପାଇଁ ପୁସ୍ତକର ଭୂମିକା ବିଶେଷଭାବରେ ନ ଲେଖି ଶେଷରେ ଏତିକି ମାତ୍ର କହୁଁ—ମେଘମାଳା-ସମାଚ୍ଛନ୍ନ ନୈଶ ଗଗନରେ ଚପଳାର ସ୍ଫୁରଣ ପଥଭ୍ରଷ୍ଟ ପାନ୍ଥକୁ ଗନ୍ତବ୍ୟ ପଥ ଦେଖାଇ ପ୍ରାଣରେ ନବଆଶା ସଞ୍ଚାର କରାଇଲା ପରି ଏହି ପୁସ୍ତିକାଟି ଯଦି ତମସାଚ୍ଛନ୍ନ ସଂସାର ପଥରେ ମାନବ-ସମାଜର କିଛି ଉପକାର କରେ, ତେବେ ଶ୍ରମ ସାର୍ଥକ ହେବ । ଇତି ।

ବାରିପଦା
୧୭-୮-୨୮ } ପ୍ରକାଶକ

## ପଣ୍ଡିତ ଗୋପବଂଧୁ ଦାସଙ୍କର ବଂଶାବଳୀ



ଉତ୍କଳମଣି

# ପଣ୍ଡିତ ଗୋପବନ୍ଧୁ

[୧]

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ ବିନାଶାୟଚ ଦୁଷ୍କୃତାଂ
ଧର୍ମ୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଦେଶ ଯେତେବେଳେ ଦୁର୍ଦ୍ଦଶାରେ ପଡ଼ି ହାହାକାର କରେ, ସେତେବେଳେ ସେହି ସ୍ୱର୍ଗଲୋକର ଦେବତା ମର୍ତ୍ତ୍ୟଲୋକକୁ ଓହ୍ଲାଇ ଆସନ୍ତି—ଦେଶର ଦୁଃଖ ଦୁର୍ବିପାକ ଘୁଞ୍ଚାଇ ଦେବାପାଇଁ; ଯେତେବେଳେ ଜଗତରେ ଧର୍ମ୍ମହାନି ଘଟେ ଓ ଲୋକମାନେ ଧର୍ମାନ୍ଧ ହୋଇ ଅତି ନୀଚ ହୀନ କାର୍ଯ୍ୟ କରିବାପାଇଁ କୁଣ୍ଠା ପ୍ରକାଶ କରନ୍ତି ନାହିଁ, ସେତେବେଳେ ସେ ଧର୍ମଯାଜକରୂପରେ ଓହ୍ଲାଇ ଆସନ୍ତି—ଲୋକମାନଙ୍କୁ ଧର୍ମର କୋଳକୁ ଟାଣି ନେବା ପାଇଁ; ଯେତେବେଳେ ଦେଶ ନିଷ୍ଠୁର ବିଦେଶୀର କରକବଳିତ ହୋଇ ନରନାରୀରକ୍ତରେ ରଞ୍ଜିତ ହୁଏ, ସେତେବେଳେ ନେତାରୂପରେ, ଜନନୀରୂପରେ ଅବତାର ଗ୍ରହଣ କରନ୍ତି—ଦେଶକୁ ଉଦ୍ଧାର କରିବାପାଇଁ ।

ଯେତେବେଳେ ଭାରତର ଲୋକେ ସନାତନଧର୍ମର ଅପଚୟ କରିବାକୁ ବସିଲେ—ପ୍ରକୃତ ଧର୍ମ୍ମ କ'ଣ ତାହା ଜାଣିଲେ ନାହିଁ, ସେତେବେଳେ ସେ ଶ୍ରୀକୃଷ୍ଣରୂପରେ, ବୁଦ୍ଧରୂପରେ, ଚୈତନ୍ୟରୂପରେ

ଜନ୍ମଗ୍ରହଣ କରିଥିଲେ—ଧର୍ମ ପ୍ରଚାର କରିବାପାଇଁ; ଦୁର୍ଦ୍ଧାନ୍ତ ଅସୁରମାନଙ୍କର ଅତ୍ୟାଚାରରେ ଯେତେବେଳେ ଧରା ପ୍ରକମ୍ପିତ ହେଲା, ଯେତେବେଳେ ମୁନି ଋଷିମାନଙ୍କର ଆଶ୍ରମମାନ ଟଳମଳ ହେବାକୁ ଲାଗିଲା, ସେତେବେଳେ ସେହି ଭଗବାନ୍ ପ୍ରହ୍ଲାଦରୂପରେ, ରାମଚନ୍ଦ୍ର ରୂପରେ ଜଗତରେ ଅବତାର ଗ୍ରହଣ କରିଥିଲେ—ସଂସାରରେ ଶାନ୍ତିସ୍ଥାପନ କରିବାପାଇଁ। ଭାରତୀୟମାନଙ୍କର ବିଜୟ-ପତାକା ଆଫ୍ରିକାରେ ଉତ୍ତୋଳନ କରିବାପାଇଁ, ପଞ୍ଜାବର ରକ୍ତନଦୀରୁ ଭାରତବାସୀଙ୍କୁ ଉଦ୍ଧାର କରିବା ପାଇଁ, ଖିଲାଫତ ସମସ୍ୟାରେ ମୁସଲମାନମାନଙ୍କର ସମ୍ମାନ ରକ୍ଷା କରିବା ପାଇଁ, ତଥା "ଅହିଂସା ପରମୋ ଧର୍ମଃ, ଯତୋ ଧର୍ମ ସ୍ତତୋଜୟଃ" ପ୍ରଚାର କରିବାପାଇଁ ମହାତ୍ମା ଗାନ୍ଧିଙ୍କର ଯେପରି ଅବତାର, ସେହିପରି ଉତ୍କଳ ଯେତେବେଳେ ଘୋର ଅନ୍ଧକାରରେ ଆଚ୍ଛନ୍ନ ଥିଲା, ଯେତେବେଳେ ଉତ୍କଳର ଦରିଦ୍ର ସନ୍ତାନମାନେ ଜ୍ଞାନାଲୋକରୁ ବଞ୍ଚିତ ହୋଇଥିଲେ, ଯେତେବେଳେ ସୁଜଳା ସୁଫଳା ଶସ୍ୟଶ୍ୟାମଳା ମା ଉତ୍କଳଭୂମିର ସନ୍ତାନମାନେ ଅନାହାରରେ ଜୀବନ ହରାଉ ଥିଲେ, ବସ୍ତ୍ର ବିନା ଲଜ୍ଜା ନିବାରଣ କରିବାକୁ ଅକ୍ଷମ ହେଉଥିଲେ ସେତେବେଳେ ସେହି ଦିବ୍ୟଅମରଧାମରୁ ଓହ୍ଲାଇ ଆସି ଥିଲେ **ତ୍ୟାଗୀ ଗୋପବନ୍ଧୁ**—ସେମାନଙ୍କୁ ଅନ୍ନବସ୍ତ୍ର ଦାନକରି ବଞ୍ଚାଇବା ପାଇଁ। ଯେଉଁ ସିଂହପରାକ୍ରମୀ ଉତ୍କଳଜାତି ଦିନେ ଜଗତର ନାଥଙ୍କୁ ସ୍ଥାପନ କରି ସମଗ୍ର ଭାରତବାସୀଙ୍କର ମସ୍ତକ ଅବନତ କରାଇ ପାରିଥିଲା, ସେହି ଜାତି ଯେତେବେଳେ କଲିକତାରେ କୁଲି ହୋଇ, ପୂଜାରୀ ହୋଇ ସୁବା ପରିବାରରେ ଲାଞ୍ଛିତ, ଘୃଣିତ ଓ ଅବମାନିତ ହେଉଥିଲେ, ଯେତେବେଳେ ପୁରାପ୍ରସିଦ୍ଧ ଭାରତ-ମୁକୁଟମଣି ଉତ୍କଳଖଣ୍ଡ ଭାରତୀୟ ମହାଜାତୀୟ ଯଜ୍ଞରେ ଆହୁତ ହେବାପାଇଁ ସ୍ଥାନ ପାଉ ନ ଥିଲା, ସେତେବେଳେ ସେହି ଦରିଦ୍ରବନ୍ଧୁ ଗୋପବନ୍ଧୁ ଉତ୍କଳରେ ଅବତାର ଗ୍ରହଣ କରିଥିଲେ।

[୨]

ପୁରୀଜିଲ୍ଲା ପୁରୀସଦରର ସତ୍ୟବାଦୀ ଥାନାରେ ଗୋଟିଏ କ୍ଷୁଦ୍ର ପଲ୍ଲୀଗ୍ରାମ । ଗ୍ରାମଟି ଦେଖିବାକୁ ଯେପରି ମନୋହର, ସ୍ଥାନଟି ସେହିପରି ସ୍ୱାସ୍ଥ୍ୟକର । ତାହା ଦୂରରୁ ଦେଖିଲେ ନଡ଼ିଆ ଗୁଆ ପଣସ ପ୍ରଭୃତି ବିବିଧ ବୃକ୍ଷଶ୍ରେଣୀ ମଧ୍ୟରେ ଗୋଟିଏ କୁଞ୍ଜ ସଦୃଶ ପ୍ରତୀୟମାନ ହୁଏ । ପୁଣି ଭାର୍ଗବୀ ନଦୀ ସେହି ଗ୍ରାମର ପଶ୍ଚିମ ଦିଗରେ ପ୍ରବାହିତ ହେଉଥିବାରୁ ସ୍ଥାନଟି ବିଶେଷ ମନୋରମ ହୋଇଅଛି । ଗ୍ରାମଟି କେବଳ ଯେ ସୁନ୍ଦର ଏବଂ ସ୍ୱାସ୍ଥ୍ୟକର, ତାହା ନୁହେଁ; ଏହା ହିନ୍ଦୁମାନଙ୍କର ତୀର୍ଥସ୍ଥାନମାନଙ୍କ ମଧ୍ୟରୁ ଗୋଟିଏ । ପ୍ରବାଦ ଅଛି, ଥରେ ଗଙ୍ଗାଦେବୀ ଏହିଠାରେ ଚୂଡ଼ି ଉପରକୁ ଦେଖାଇ ଲୋକମାନଙ୍କୁ ନଦୀ ବକ୍ଷରେ ଦର୍ଶନ ଦେଇଥିଲେ; ସେଥିପାଇଁ ପ୍ରତିବର୍ଷ ଚୈତ୍ରମାସ କୃଷ୍ଣ ତ୍ରୟୋଦଶୀ ଦିନ ସାଗରସ୍ନାନ ମେଳା ଏଠାରେ ଅନୁଷ୍ଠିତ ହୁଏ । ବହୁଦୂରରୁ ଲୋକମାନେ ଆସି ସ୍ନାନ କରନ୍ତି । ଲୋକମାନଙ୍କର ବିଶ୍ୱାସ, ସେଠାରେ ସ୍ନାନ କଲେ ଗଙ୍ଗାସ୍ନାନର ଫଳ ମିଳେ । ଆମ୍ଭମାନଙ୍କର ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ସେହିଠାରେ ଜନ୍ମଗ୍ରହଣ କରି ତାହାକୁ ଚିରସ୍ମରଣୀୟ ତୀର୍ଥସ୍ଥାନ କରିଅଛନ୍ତି ।

ପଣ୍ଡିତ ଗୋପବନ୍ଧୁ ସନ ୧୨୮୪ ସାଲ କନ୍ୟା ୯ ୨୭ ଦିନ ବୁଧବାର (ଆଶ୍ୱିନ ଶୁକ୍ଳପକ୍ଷ ଚତୁର୍ଥୀ, ଇଂରାଜୀ ୧୮୭୭ମସିହା ଅକ୍ଟୋବର ତା୯ରିଖ) ଦିବା ଦ ୨ ଣ୍ଡ ଠାରେ ବିଶୁଦ୍ଧ ତୁଳଲଗ୍ନରେ ଜନ୍ମଗ୍ରହଣ କରିଥିଲେ ଯେ ଅପର ପାଇଁ ଜନ୍ମଗ୍ରହଣ କରିଥାଏ, ଯାହାର ଜୀବନ ପର ପାଇଁ ଅର୍ପିତ ଯେଉଁ ରକ୍ତ ଦେଶ ପାଇଁ ଦଶପାଇଁ ଗଠିତ, ତାହା ଅତି ଶୈଶବରୁ ଏପରି କି ଜନନୀଗର୍ଭରୁ ଜନ୍ମିଲା ମାତ୍ରକେ ଜଣା ପଡ଼ି ଥାଏ । "ତୁଳସୀ ଦୁଇ ପତ୍ରରୁ ବାସେ ।" ଗୋପବନ୍ଧୁଙ୍କର ଜନ୍ମସମୟରୁ ଜଣା ପଡ଼ିଥିଲା ଯେ ସେ ନିଜ ଘରପାଇଁ, ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଜନ୍ମଗ୍ରହଣ କରି ନାହାନ୍ତି—ତାଙ୍କର ଜନ୍ମ ପର ପାଇଁ । ତାଙ୍କର ମାତା ସ୍ୱର୍ଣ୍ଣମୟୀ ଦେବ

ଗୋପବନ୍ଧୁଙ୍କ ଦଶମାସ ଗର୍ଭରେ ଧରି ଶେଷକୁ ତିନଦିନ କାଳ ଘୋର କଷ୍ଟ ଭୋଗ କରି ଜାଣିଲେ ଯେ, ତାଙ୍କର ଏ ଗର୍ଭଜାତ ସନ୍ତାନ ତାଙ୍କର ନୁହେ, ତହୁଁ ସେ ସମସ୍ତଙ୍କ କଥାନୁସାରେ ତାଙ୍କର ପଡ଼ିଶା ଘର ଜ୍ଞାତି ଚକ୍ରଧର ଦାଶଙ୍କ ଘରେ ପାଦ ଦେଲାକ୍ଷଣି ଗୋପବନ୍ଧୁ ଆବିର୍ଭୂତ ହୋଇଥିଲେ ।

ଗୋପବନ୍ଧୁଙ୍କ ପିତାଙ୍କର ନାମ ଦୈତ୍ୟାରି ଦାଶ । ତାଙ୍କର ପୂର୍ବପୁରୁଷମାନେ ଯାଜପୁରରେ ଥିଲେ । ପୁରୀର ଗଙ୍ଗବଂଶୀୟ ରାଜାମାନେ ପ୍ରାୟ ୩୦୦ ବର୍ଷ ପୂର୍ବେ ସେମାନଙ୍କୁ ଡ଼କାଇ ଆଣି ବଲ୍ଲିହଣ୍ଡା ହରିହରପୁର ଗ୍ରାମରେ ରଖାଇ ଥିଲେ । ସେଠାରୁ ସେମାନେ ଆସି ସୁଆଣ୍ଡୋରେ ବାସ କରୁଅଛନ୍ତି । ଗୋପବନ୍ଧୁଙ୍କର ପିତାମହଙ୍କ ନାମ ଥିଲା ଭଗବାନ ଦାଶ । ସେ କୌଶିକ ଗୋତ୍ରୀୟ ବ୍ରାହ୍ମଣ । ଭଗବାନ୍ କିଛି ପଢାଶୁଣା କରି ନ ଥିଲେ ମାତ୍ର ସେ ଭାରି ଭକ୍ତ ଥିଲେ । ଦେବ ପୂଜା ନ କରି ସେ ପ୍ରତ୍ୟହ ଜଳସ୍ପର୍ଶ କରୁ ନ ଥିଲେ । ସାରଳା ତାଙ୍କର ପ୍ରଧାନ ଉପାସ୍ୟ ଦେବତା । ସାରଳାଙ୍କଠାରେ ଗୁହାରିଆ ପଡ଼ି ସେ ଦୁଇ ଗୋଟି ପୁତ୍ରରତ୍ନ ଓ ଗୋଟିଏ କନ୍ୟାରତ୍ନ ଲାଭ କରିଥିଲେ । ସେହି ଦେବୀଙ୍କଠାରେ ଗୁହାରିଆ ପଡ଼ି ଶେଷରେ ସେ ନିଜର ଜିଭ କାଟି ଦେବୀଙ୍କୁ ସମର୍ପଣ କରି ମୃତ୍ୟୁକୁ ବରଣ କରିଥିଲେ । ଭଗବାନଙ୍କ ବଡ଼ପୁଅଙ୍କ ନାମ ଦୀନବନ୍ଧୁ, ସାନ ପୁଅଙ୍କ ନାମ ଦୈତ୍ୟାରି । ପିତାଙ୍କ ସଦୃଶ ଦୀନବନ୍ଧୁ ପିଲାଦିନରୁ ବଡ଼ ଭକ୍ତ ଥିଲେ । ବିଶେଷ ଦେବତାଙ୍କଠାରେ ତାଙ୍କର ଭାରି ମନ ଥାଏ । ପିଲାଦିନୁଁ ତାଙ୍କର ଏପରି ଦେବସେବା ଦେଖି ଲୋକେ ଭାବୁଥିଲେ, ସେ ସନ୍ନ୍ୟାସ ଅବଲମ୍ବନ କରିବେ । ପିତାମାତା ସେ ଚିନ୍ତାରେ ତାଙ୍କୁ ଶୀଘ୍ର ବିବାହ କରାଇ ଥିଲେ । ବିବାହ କଲେ ତାଙ୍କର ସଂସାର ପ୍ରତି ଅନୁରାଗ ବଢ଼ିବ ବୋଲି ଲୋକେ ଭାବି ଥିଲେ, କିନ୍ତୁ ଫଳରେ ତାହା ହେଲା ନାହିଁ । ବିବାହିତ ହୋଇ ଦୀନବନ୍ଧୁ କେତେଦିନ ପାଇଁ ଗୃହସ୍ଥାଶ୍ରମ କରିଥିଲେ । ସେଥିରେ ମଧ୍ୟ ସେ ଗୋଟିଏ ପୁତ୍ର ଲାଭକରିଥିଲେ । ମାତ୍ର କିଛିଦିନ ପରେ ଉକ୍ତ ସନ୍ତାନଟି ମରି ଯିବାରୁ ଦୀନବନ୍ଧୁ ସଂସାର ଛାଡ଼ି ବାବାଜି ହୋଇ ଚାଲିଗଲେ

ବୁଲି ବୁଲି ଶେଷରେ ବୈଷ୍ଣବ ଧର୍ମପୀଠ ନବଦ୍ୱୀପ ଧାମକୁ ଯିବାପାଇଁ ମନଃସ୍ଥ କଲେ । ଯାଉଁ ଯାଉଁ ନବଦ୍ୱୀପ ନିକଟରେ ଗୋଟିଏ ଗ୍ରାମରେ ରାତିରେ ଆଶ୍ରୟ ନେଲେ । ଘନବନ୍ଧୁ ଯାହାଙ୍କ ଗୃହରେ ଆଶ୍ରୟ ନେଇଥିଲେ, ସେ ବଡ଼ କୃଷ୍ଣଭକ୍ତ । କୃଷ୍ଣଙ୍କ ସେବା ପୂଜାହିଁ ତାଙ୍କର ଏକମାତ୍ର କର୍ତ୍ତବ୍ୟ ଥିଲା । ସେଦିନ ରାତିରେ ତାଙ୍କୁ ସ୍ୱପ୍ନରେ ଜଣାଗଲା ଯେ, ସେ (କୃଷ୍ଣ ମୂର୍ତ୍ତି) ତାଙ୍କଘରେ ଆଉ ରହିବାକୁ ଇଚ୍ଛା କରୁ ନାହାନ୍ତି । ଯେଉଁ ବ୍ୟକ୍ତି ତାଙ୍କଘରେ ଆଜି ଆଶ୍ରୟ ପାଇଅଛନ୍ତି, ସେ ଉତ୍ତମ ସାଧୁ ପୁରୁଷ । ତାଙ୍କ ସଙ୍ଗରେ ଯିବା ତାଙ୍କର ଇଚ୍ଛା । ପରଦିନ ସକାଳେ ସେହି ବ୍ୟକ୍ତି ସ୍ଥାନାନ୍ତରେ କୃଷ୍ଣ ମୂର୍ତ୍ତିଟି ଆଣି ଘନବନ୍ଧୁଙ୍କୁ ଦାନ କରି ଦେଲେ । ମୂର୍ତ୍ତିଟି ପାଇ ଘନବନ୍ଧୁଙ୍କର ଆନନ୍ଦର ସୀମା ଆଉ ରହିଲା ନାହିଁ । ସେ ସେଠାରୁ ମୂର୍ତ୍ତିଟି ସ୍କନ୍ଧରେ ବସାଇ ନିଜ ଗ୍ରାମକୁ ଲେଉଟି ଆସିଲେ । ନିଜଘରେ କୃଷ୍ଣମୂର୍ତ୍ତିଙ୍କୁ ପ୍ରତିଷ୍ଠିତ କରାଇ ତାଙ୍କର ସେବାପୂଜାରେ ନିଜକୁ ନିୟୋଜିତ କରିଥିଲେ । କିଛିଦିନପରେ ତାଙ୍କର ଆଉ ମନ ମାନିଲା ନାହିଁ । ତହୁଁ ଘନବନ୍ଧୁ ସାନଭାଇ ଦୈତ୍ୟାରିଙ୍କୁ କୃଷ୍ଣଙ୍କର ସେବାପୂଜା ଭାର ଦେଇ ଚିରଦିନପାଇଁ ଗୃହତ୍ୟାଗ କଲେ । କାଳେ କୌଣସି ସମୟରେ କୃଷ୍ଣଙ୍କ ପୂଜାରେ କିଛି ତ୍ରୁଟି ଘଟିପାରେ, ଏହି ଆଶଙ୍କାରେ ଘନବନ୍ଧୁ ବିନୋଦବିହାରୀ ଦେବଙ୍କ ନାମରେ ସମସ୍ତ ସମ୍ପତ୍ତି ଲେଖି ଦେଇଗଲେ ।

ଦୈତ୍ୟାରି ଭାଇଙ୍କ କଥାନୁସାରେ ସେହି ଦେବପୂଜାରେ ନିଜକୁ ଲଗାଇ ଗୃହସ୍ଥାଶ୍ରମ କଲେ । ତାଙ୍କୁ ଏକାକୀ ଗୃହସ୍ଥାଶ୍ରମରେ ରହି ଗୋଟିଏ ପରେ ଆଉ ଗୋଟିଏ, ଏପରି ତିନିଗୋଟି ସ୍ତ୍ରୀର ପାଣିଗ୍ରହଣ କରିବାକୁ ପଡ଼ିଥିଲା । ପ୍ରଥମ ସ୍ତ୍ରୀ ମରିଯିବାରୁ କୁଳରକ୍ଷାପାଇଁ ଦ୍ୱିତୀୟଦାର ଗ୍ରହଣକଲେ ମାତ୍ର ଦ୍ୱିତୀୟ ସ୍ତ୍ରୀ ଗୋଟିଏ ମାତ୍ର ପୁତ୍ର ଜନ୍ମ କରି ଇହଲୀଳା ସମ୍ବରଣ କଲେ ଆଉ ବିବାହ ନ କରିଥିଲେ ଦୈତ୍ୟାରିଙ୍କର ଚଳିଥାନ୍ତା, ମାତ୍ର ଜନ୍ମ ସମୟରେ ସେ ପୁଅଟିକୁ ବଡ଼ଭାଇ ଘନବନ୍ଧୁଙ୍କୁ ଦାନ କରି ଦେଇଥିଲେ ତେଣୁ ନିଜର ବଂଶରକ୍ଷାପାଇଁ ତୃତୀୟ ଥର ବିବାହ କରିଥିଲେ । ଆମ୍ଭମାନଙ୍କର ଉତ୍କଳମଣି ତ୍ୟାଗୀ ପଣ୍ଡିତ ଗୋପବନ୍ଧୁ ଏହି ତୃତୀୟ ସ୍ତ୍ରୀ ଶ୍ରୀମତୀ ସ୍ୱର୍ଣ୍ଣମୟୀ

ଦେବୀଙ୍କର ସନ୍ତାନ । ସ୍ୱର୍ଣ୍ଣମୟୀ ପୁତ୍ରଜନ୍ମ କରି ପୁତ୍ରମୁଖ ଲାଭ କରି ପାରି ନ ଥିଲେ । ଜନ୍ମ କରିବାର ଅତି ଅଳ୍ପ ଦିନ ପରେ ଗୋପବନ୍ଧୁଙ୍କର ଅତି ଶୈଶବରେ ସ୍ୱର୍ଣ୍ଣମୟୀ ମହାପ୍ରସ୍ଥାନ କଲେ । ଗୋପବନ୍ଧୁ ତାଙ୍କର "ଭର୍ଗେ ପ୍ରତି" କବିତାରେ ଏବଂ ତାଙ୍କର ଭ୍ରାତୃବିୟୋଗବେଳେ ଦୁଃଖ ପ୍ରକାଶ କରି ଲେଖିଛନ୍ତି;—

"ଦେଖି ନାହିଁ ମୁଁ ମାତୃ-ବଦନ,
ପାନ କରି ନାହିଁ ମାତୃସ୍ତନ,
ହୋଇଣ ସଦୟ ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ ଜୀବନ—ଲୋ ଭଗିନ !"

ଆହୁରି ମଧ୍ୟ "ରେଭେନ୍‌ସା କଲେଜରୁ ବିଦାୟ" କବିତାରେ ଲେଖିଛନ୍ତି;—

"ଦେଲେ ଏ ଯେ ନରଦେହ
ଥିଲେ କରିଥାନ୍ତେ ସ୍ନେହ

ସ୍ୱପ୍ନେ ହିଁ ଦେଖିନାହିଁ ତାଙ୍କ ସୁଧା ମୁଖ
ଆଜନମ ବାଳୁ ମୋର ଚିର ସଖା ଦୁଖ ।"

ଏପରି ପୁତ୍ରରତ୍ନ ପାଇ ଦୈତ୍ୟାରି ଆଉ ବିବାହ ନ କରିଥିଲେ ଚଳିଥାନ୍ତା; ମାତ୍ର ଏହି ପିଲାଦିଓଟିଙ୍କର ଲାଳନ ପାଳନଭାର ନିଜେ ବହନ କରିବାକୁ ଅସମର୍ଥ ଜାଣି ଚତୁର୍ଥ ଥର ବିବାହ ପାଇଁ ବାଧ୍ୟ ହେଲେ । ବ୍ରାହ୍ମଣ-କୁଳରେ ବିବାହ ସଙ୍ଗେ ସଙ୍ଗେ ସ୍ତ୍ରୀ ଘରକୁ ଆସେ ନାହିଁ; ସୁତରାଂ ଚତୁର୍ଥ ସ୍ତ୍ରୀ ଘରକୁ ଆସିବା ପର୍ଯ୍ୟନ୍ତ ଦୁଇପିଲାଙ୍କର ଲାଳନପାଳନଭାର ତାଙ୍କର ଔରସ ପିତୃସୀ ଶ୍ରୀମତୀ କମଳା ଦେବୀଙ୍କ ହସ୍ତରେ ଅର୍ପିତ ହୋଇଥିଲା । କମଳା ପୁତ୍ରମାନଙ୍କୁ ଅତିଯତ୍ନରେ ପାଳନ କରୁଥିଲେ । ନାନୀଙ୍କ ପ୍ରତି ଗୋପବନ୍ଧୁଙ୍କର ସ୍ନେହ ଓ ଭକ୍ତି ତାଙ୍କର ଭବିଷ୍ୟତ ଜୀବନରେ ଲିଖିତ "ମୋ ନାନୀ" କବିତାରୁ ବେଶ୍ ଜଣା ପଡୁଛି ;—

" ଆବାଲ୍ୟ ବିଧବା ଆହା, କେବେ ମାତ୍ର ବାରେ
ଭୋଗି ନାହିଁ ଦିବ୍ୟ ସୁଖ ଦାମ୍ପତ୍ୟ ପ୍ରଣୟ,
ପର ସେବା ବ୍ରତେ ନିଜ ଜୀବନ-ସମୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ;
ସଦା ସମଭାବ ତବ ଭିତରେ ବାହାରେ
ପରଲାଗି ଆଲୋଡ଼ିତ ସତତ ହୃଦୟ,
ଆଜୀବନ ତେଜ ନିଜ ସୁଖ ସମୁଚ୍ଚୟ
ସୁଧାମୟ ମାତୃଭାବ ମିଳେ ତୁମ୍ଭଠାରେ ।
ସଦାଶୟା ସ୍ନେହମୟୀ ପରମ ପାବନୀ,
ଜୀବର ମହତ ଲକ୍ଷ୍ୟ ସାଧୁଛ ଗୁପତେ;
ତୁମ୍ଭ ସ୍ୱତ ଆଦରଲେ ସକଳ କାମିନୀ
ଓଲ୍ଟାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।
ତୁମ୍ଭର ନିଷ୍କାମ ସ୍ନେହ ସଦା ଥିବ ମାନ
ଯହିଁ ଥିଲେ ସ୍ମରୁଥିବ ନିତ 'ନାଣି ନାନୀ' ।

[୩]

ପିଲାଦିନୁଁ ମାତାଙ୍କୁ ହରାଇ ଗୋପବନ୍ଧୁ ମାତାଙ୍କ ସ୍ନେହ କପର ଜାଣି-ପାରି ନଥିଲେ । ମାତାଙ୍କର ମୃତ୍ୟୁ ଯେପରି ପରୋକ୍ଷଭାବରେ ଗୋପବନ୍ଧୁଙ୍କ ଜୀବନରେ ବହୁତ ଉପକାର କରିଅଛି । ସାଧାରଣତଃ ଦେଖାଯାଏ, ଓଡ଼ିଶାର ଅଶିକ୍ଷିତା ମାତାମାନେ ପୁତ୍ରକନ୍ୟାମାନଙ୍କର ଶିକ୍ଷାର ଭାର ଗ୍ରହଣ କରିବା ଦୂରେ ଥାଉ, ସେମାନଙ୍କର ଶିକ୍ଷାପଥରେ କଣ୍ଟକ ହୋଇଥାନ୍ତି । ଗୋପବନ୍ଧୁଙ୍କର ସେ କଣ୍ଟକ ନ ଥିଲା । ସେ ମାତୃବିୟୋଗଦୁଃଖରେ ସର୍ବଦା ଚିନ୍ତିତ ଥାନ୍ତି । କ୍ରମେ ତାଙ୍କର ସେ ଚିନ୍ତା ବିସ୍ତାରିତ ହୋଇ ଉତ୍କଳ ଜନନୀଙ୍କ ଉପରେ ପଡ଼ିଲା, ତହୁଁ ଗୋପବନ୍ଧୁ ଉତ୍କଳଜନନୀଙ୍କସେବାରେ ନିଜକୁ ନିୟୋଜିତକଲେ । ଯେଉଁ ଉତ୍କଳଜନନୀଙ୍କ ସେବାରେ ସେ ଆଜୀବନ ଲାଗିଥିଲେ, ଯାହାଙ୍କର ଛିନ୍ନ

ବିଚ୍ଛିନ୍ନାଂଶ ଏକତ୍ରିତ ଦେଖିବାପାଇଁ ସେ ଦୃଢ ଆଶା ପୋଷଣ କରିଥିଲେ, ସେହି ଛିନ୍ନମସ୍ତା ମାତୃଭୂମିକୁ ଅତି ଶୈଶବ କାଳରୁ ସେ ଚହ୍ନିଥିଲେ । ସେ ଜାଣିଥିଲେ ଯେ,ଜନନୀ ନଥିଲେ ସୁଦ୍ଧା ଉତ୍କଳ ତାଙ୍କର ଶୈଶବର ଲୀଳାଭୂମି, ଯୌବନର କର୍ମକ୍ଷେତ୍ର, ବାର୍ଦ୍ଧକ୍ୟର ବିଶ୍ରାମ ସ୍ଥାନ ଓ ଅନ୍ତିମକାଳର ଆଶ୍ରୟ । ପିଲା ଦିନରୁ ସମସ୍ତଙ୍କୁ ଭକ୍ତି କରିବା ତାଙ୍କର ଯେପରି ଗୋଟିଏ କର୍ତ୍ତବ୍ୟ ଥିଲା । ନିଜର ସହୋଦର ଭାଇ ନ ଥିଲେ ସୁଦ୍ଧା ସେ ସମସ୍ତ ବିଶ୍ୱବାସୀଙ୍କୁ ନିଜର ଭାଇ ବୋଲି ଜ୍ଞାନ କରୁଥିଲେ । ସେଥିପାଇଁ ସମସ୍ତଙ୍କର ସ୍ନେହ ଶ୍ରଦ୍ଧାର ପାତ୍ର ହୋଇଥିଲେ । ଏପରିକି ଶୈଶବାବସ୍ଥାରେ କେତେବେଳେ ଗୋପବନ୍ଧୁଙ୍କୁ ନ ଦେଖିଲେ କିମ୍ବା ତାଙ୍କ ସଙ୍ଗରେ ଖାଇବାକୁ ନ ବସାଇଲେ ସେମାନଙ୍କୁ ଭଲ ଲାଗୁ ନ ଥିଲା ।

ଆଜିକାଲି ପରି ସେତେବେଳେ ଗୃହଆଡେ଼ ସ୍କୁଲ କଲେଜ ସେତେ ନ ଥିଲା । ନୂତନ ଶିକ୍ଷା ସଭ୍ୟତା ଲୋକଙ୍କୁ ସେତେ ସ୍ପର୍ଶ କରି ନ ଥିଲା । ପୁଣି ସୁଆଣ୍ଡୋ ଭଳି କ୍ଷୁଦ୍ର ପଲ୍ଲୀରେ ନୂତନ ଧରଣରେ ଶିକ୍ଷାଦାନ କଥା ଲୋକେ ଜାଣିବେ କୁଆଡୁ ? ସେଥିପାଇଁ ତାଙ୍କ ପିତା ଗୋଟିଏ ଅବଧାନ ନିଯୁକ୍ତ କରି ପିଲାଦୁହିଙ୍କୁ ତାଙ୍କ ତତ୍ତ୍ୱାବଧାନରେ ଛାଡ଼ିଦେଲେ । ପ୍ରାୟ ୮।୯ ବର୍ଷ ଯାଏଁ ଗୋପବନ୍ଧୁଙ୍କୁ ସେହି ଅବଧାନଙ୍କନିକଟରେ ପଢିବାକୁ ହୋଇଥିଲା । ପାଠପଢା ଆରମ୍ଭ କରି ଅନ୍ୟ କୌଣସି ବାଜେ ବିଷୟରେ ମନ ଦେବା ଗୋପବନ୍ଧୁଙ୍କର ନ ଥିଲା,ତେଣୁ ଅବଧାନ ଚାଟଶାଳିରେ ପଣିକିଆ, ଦେଶୀଅଙ୍କ,ଖଡ଼ିପାଠ, ତାଳ-ପତ୍ରଲେଖା ଓ ଜମିଦାରୀ ସିରସ୍ତା ପ୍ରଭୃତି ବିଷୟରେ ସେ ଖୁବ୍ ଧୁରନ୍ଧର ଥିଲେ । ପିଲାଦିନୁ ଭାଗବତ ବୋଲିବା ତାଙ୍କର ଅଭ୍ୟାସ ଥିଲା । ସର୍ବୋପରି ପ୍ରତିଦିନ ରାତିରେ ନିଜର ଆରାଧଦେବତା ବିନୋଦବିହାରୀଙ୍କ ଆଗରେ ଭାଗବତ ଅଧ୍ୟାୟେ ଲେଖାଏଁ ପାଠ କରିବା ତାଙ୍କର କର୍ତ୍ତବ୍ୟ ଥିଲା । ସୁତରାଂ ଭାଗବତ ପ୍ରତି ପିଲାଦିନୁଁ ତାଙ୍କର ଆଗ୍ରହ ଥିଲା । ଗୀତ ଲେଖିବା ଓ ବୋଲିବା ପାଇଁ ସେ ଭାରି ଭଲ ପାଉଥିଲେ । ରାତିରେ ଭାଗବତ ବୋଲିବା-ବେଳେ ସେ ତହିଁରୁ ବହୁତ ପଦେ ମନେ ରଖି ଅନ୍ୟ ସମୟରେ ମୁହେଁ ମୁହେଁ ଗାଉଥିଲେ । ଅବଶ୍ୟ ଅର୍ଥ ବୁଝିବା ତାଙ୍କ ପକ୍ଷରେ ସେତେବେଳେ କଷ୍ଟକର

ଥିଲା । ଯେତେବେଳେ ସେ ତାହାର ପ୍ରକୃତ ଅର୍ଥ ବୁଝିଲେ, ସେତେବେଳେ ଭାଗବତରୁ ମୁଖସ୍ଥ ପଦଗୁଡ଼ିକ ଗଣ୍ଠିଧନ କରି ରଖିଲେ । ଭାଗବତରୁ ଯେତେ ସୁନ୍ଦର ସାରଗର୍ଭକ ଉପଦେଶ ଗୋପବନ୍ଧୁଙ୍କ ମୁଖରୁ ଶୁଣାଯାଉଥିଲା, ଅନ୍ୟ କେହି ସେପରି ବ୍ୟବହାର କରିଥିବାର ଦେଖାଯାଏ ନାହିଁ । ଗୀତ ଲେଖିବା-ପାଇଁ ପିଲାଦିନେ ତାଙ୍କର ଏପରି ଆଗ୍ରହ ଥିଲା ଯେ, ଅବଧାନେ ତାଳପତ୍ରରେ ଜମିଦାରୀ ସିରସ୍ତାର ଗ୍ରନ୍ଥ ଲେଖିବାକୁ ଦେଲାବେଳେ ସେ ଭାଗବତରୁ ଯାହା ମୁଖସ୍ଥ କରିଥାନ୍ତି, ତହିଁ ସଙ୍ଗେ ନୂତନ ପଦ ଯୋଜନା କରି ଲେଖି ବସନ୍ତି । ଅନେକଥର ଏଥିପାଇଁ ସେ ମାଡ଼ ଗାଳି ଖାଇଛନ୍ତି, ତେବେ ସୁଦ୍ଧା ସେ ତାହା ଶୁଦ୍ଧ ନଥିଲେ । ଥରେ ଅବଧାନେ ବିରକ୍ତ ହୋଇ ତାଙ୍କୁ ପିତାଙ୍କ ନିକଟକୁ ନେଇଗଲେ । ପିତା ସେଥିରେ ମାଡ଼ଗାଳି ଦେବା ଦୂରେ ଥାଉ, ବରଂ ବିଶେଷ ଆନନ୍ଦିତ ହୋଇ ପୁଅକୁ ଉତ୍ସାହିତ କରିଥିଲେ ଏବଂ ଅବଧାନଙ୍କୁ କେତେକ ଉପଦେଶ ଦେଇ ସେ ଦିନ ଶୁଦ୍ଧ ଦେଇଥିଲେ । ସେହି ଦିନଠାରୁ ପିତା ପ୍ରତିଦିନ ଭାଗବତ ଅଧ୍ୟାୟକ ସନ୍ଧ୍ୟାବେଳକୁ ପୁଅ ଲେଖିଥିବା ଗୀତଯାକ ଉପସ୍ଥିତ ଶ୍ରୋତାମାନଙ୍କୁ ଶୁଣାନ୍ତି । ସେଥିରେ ସମସ୍ତେ ନାନା ଉତ୍ସାହପୂର୍ଣ୍ଣ ବାକ୍ୟରେ ଗୋପବନ୍ଧୁଙ୍କୁ ପ୍ରଶଂସା କରନ୍ତି । ଏହିପରି ଗୋପବନ୍ଧୁଙ୍କର ଭାଗବତ ପ୍ରତି ଅତି ଅଳ୍ପ ବୟସରୁ ଯେଉଁ ଆଦର ଓ ଆଗ୍ରହ ଥିଲା, ସେଥିରେ"ଜଗନ୍ନାଥ ଦାସଙ୍କ ପ୍ରତି ତାଙ୍କର ଯେଉଁ ପ୍ରଗାଢ ଭକ୍ତି ଥିଲା, ତାହା ତାଙ୍କର ଶ୍ରୁତିଜୀବନରେ ଲିଖିତ "ଭକ୍ତକବି ଶ୍ରୀ ଜଗନ୍ନାଥ ଦାସ" ଶୀର୍ଷକ କବିତାରୁ ଏବଂ ତାଙ୍କର ସମସ୍ତ ଗଦ୍ୟ ସାହିତ୍ୟରୁ ଉତ୍ତମରୂପେ ଜଣାପଡ଼େ ।

"ଉତ୍କଳର ବ୍ୟାସ ଜଗନ୍ନାଥ ଦାସ
ବିଷ୍ଣୁ ଅଂଶେ ଅବତାର
ଭକତ ପ୍ରଧାନ ଗୁଡ଼ ଦିବ୍ୟଜ୍ଞାନ
କଲ ସ୍ୱଦେଶେ ପ୍ରଚାର ।
ବେଦମହୋଦଧି ବ୍ୟାସ ତପୋନିଧି
ମନ୍ଥି ଯେ ତତ୍ତ୍ୱ ସକଳେ
ଉଦ୍ଧରି ପୁରାଣେ ନାନା ଉପାଖ୍ୟାନେ

ପ୍ରକାଶିଥିଲେ ସରଳେ ।

ସଂକ୍ଷିପ୍ତ ସଂସ୍କୃତ— ଅମୂଲ୍ୟ ଆଧାରେ
ଥିଲ ସେ ଅମୀୟ ରସ
ସର୍ବେ ଦୁଖୀ ଧନୀ ପଣ୍ଡିତ ଅଜ୍ଞାନୀ
ନ ପାଇଲେ ସମଅଂଶ ।

ତେଣୁ ବାରମ୍ବାର 'ପ୍ରାକୃତ ପ୍ରବନ୍ଧ'
ଗୀତେ କଲ ପରକାଶ
ଥିବାଯାଏ ଭାଷା ଗାଇବ ଓଡ଼ିଶା
'କହେ ( ହରି ) ଜଗନ୍ନାଥ ଦାଶ' ।

ନୃପତି ନବରେ କୃଷକ କୁଟୀରେ
ଆଜି ଉଠେ ତୁମ୍ଭ ନାମ
ଦିନ ଅବସାନେ ଶ୍ରମକ୍ଲାନ୍ତ ଜନେ
ଦେଉଛି ଶାନ୍ତି ଆରାମ ।

ବ୍ରାହ୍ମଣ ଚଣ୍ଡାଳ ପ୍ରେମେ ଏକମେଳ
ଧର୍ମଭାବେ ହୋଇ ମତ୍ତ
ଜନପଦେ ସମ୍ପଦେ ଗାଆନ୍ତି ଆନନ୍ଦେ
ସ୍ଥାନେ ସ୍ଥାନେ ଭାଗବତ ।

ସୁକବି ପ୍ରଶଂସା ପାଇବାକୁ ଆଶା
ମନରେ ନଥିଲ ପୋଷି
ତଥାପି ଉତ୍କଳ— ଭାବୀ କବିକୁଳ
ହେବେ ତୁମ୍ଭନାମ ଘୋଷି ।

ତୁମ୍ଭ ସମାଧିରୁ ଆହେ କବିଗୁରୁ
କେତେ ଦାର୍ଶନିକ ତତ୍ତ୍ୱ
ଜନମିଣ କାଳେ ଉତ୍କଳସାହିତ୍ୟେ
ଦେବେ ନବ ନବ ଛନ୍ଦ ।

କେତେ ଧର୍ମ୍ମଶର ଦେବେ ନଜ ଶିର
ସ୍ୱଦେଶ ସ୍ୱଧର୍ମ ହିତେ
ଅସଂଖ୍ୟ ନାସ୍ତିକ ହୋଇବେ ପ୍ରେମିକ
ତୁମ୍ଭ ମଧୁମନ୍ତ୍ର ଗୀତେ ।"

## [୪]

ଗୋପବନ୍ଧୁଙ୍କର ପିତା ଦୈତ୍ୟାରି ସେବକାଳର ମୁକ୍ତାର ଥିଲେ । ସହର ମଫସଲରେ ତାଙ୍କର ଖ୍ୟାତି ଥିଲା । ନୂଆ ନୂଆ ବିଷୟ ସେ ପଢୁଥିଲେ, ଶୁଣୁଥିଲେ ଓ ଜାଣୁଥିଲେ । ମୋଟ ଉପରେ କହିବାକୁ ଗଲେ ସେ ନୂତନ ସଭ୍ୟତା ଆଡକୁ ଟାଣି ହୋଇ ଆସୁଥିଲେ । ପୁଅକୁ ଗୃହଶାଳୀରେ ଶିକ୍ଷା ଦେଇ ଶିକ୍ଷା ସାଙ୍ଗ କରିବା ତାଙ୍କର ଇଚ୍ଛା ନ ଥିଲା । ପୁଅ ଉପରି ନୂତନ ଧରଣରେ ଶିକ୍ଷିତ ହେବ, ସେଥିପାଇଁ ସେ ବିଶେଷ ଯତ୍ନ କରୁଥିଲେ । ଆଜି-କାଲି ପରି ସେତେବେଳେ ନିମ୍ନ ବା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସେତେ ନ ଥିଲା । ପ୍ରାଥମିକ ଶିକ୍ଷା ପାଇବାପାଇଁ ଅଧିକାଂଶ ସ୍ଥାନରେ ପିଲାମାନଙ୍କୁ ପ୍ରତ୍ୟହ ୩।୪ ମାଇଲ ଯିବା ଆସିବା କରିବାକୁ ପଡୁଥିଲା । ପୁଅକୁ ନୂତନ ଧରଣରେ ପାଠ ପଢାଇବେ ବୋଲି ସେ ବହୁ ଯତ୍ନରେ ଗ୍ରାମରେ ଗୋଟିଏ ଉଚ୍ଚପ୍ରାଥମିକ ବିଦ୍ୟାଳୟ ବସାଇଲେ । କ୍ରମେ ଅବଧାନ ପାଠ ଶେଷ କରି ବଡ଼ଭାଇ ନାରାୟଣ ଓ ଗୋପବନ୍ଧୁ ଦୁହେଁ ନବପ୍ରତିଷ୍ଠିତ ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଲାଗିଲେ । ବଡଭାଇ ନାରାୟଣ ସେଠାରେ ଅଧ୍ୟୟନ କଲାବେଳେ ଗୋପବନ୍ଧୁଙ୍କ ସଙ୍ଗେ ଶିକ୍ଷାଦିଗରେ ସମକକ୍ଷ ନ ଥିଲେ, ତଥାପି ଗୋପବନ୍ଧୁଙ୍କର କୌଣସି ସମୟରେ ତାଙ୍କପ୍ରତି ଭକ୍ତି ଓ ଶ୍ରଦ୍ଧା କମ୍ ନଥିଲା । ଗୋପବନ୍ଧୁ ଯେ ଆଜି ତ୍ୟାଗୀ ମହାପୁରୁଷ ହୋଇ ଦେଶରେ ପୂଜା ପାଉଛନ୍ତି ଓ ଚିରଦିନ ଏହିପରି ପୂଜା ପାଇବେ ଏବଂ "ତାଙ୍କର ନାମ ଉଜ୍ଜ୍ୱଳ ଇତିହାସରେ

ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ” ( Speech delivered by Mr.M. S. Das., C. I E. at the Cuttack session of the Provincial Conference. ) ଏ ସମସ୍ତ ତାଙ୍କର ଭାଇ ନାରାୟଣଙ୍କ ଅଭାବରେ ହୋଇ ପାରି ନ ଥାନ୍ତା । ଉଭୟଙ୍କ ମଧ୍ୟରେ ସ୍ନେହ ସୋଦରତା ଯେ ପ୍ରଗାଢ଼ ଭାବରେ ଥିଲା, ତାହା ବଡ଼ଭାଇ ନାରାୟଣଙ୍କର ମୃତ୍ୟୁରେ “ମୋର ଭ୍ରାତୃ ବିୟୋଗ” ଶୀର୍ଷକ ଲେଖାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ;—

“ଦେଶର ଶତଶତ ଭାଇଙ୍କର ବନ୍ୟା ବିପତ୍ତିରେ ବ୍ୟଥିତ ହୋଇ ସାଧ୍ୟମତେ ସେମାନଙ୍କ ସେବାରେ ନିଯୁକ୍ତ ଥିଲାବେଳେ ବର୍ତ୍ତମାନ ମୋର ଘୋର ପାରିବାରିକ ବିପତ୍ତି ଉପସ୍ଥିତ । ମୋ ଭାଇନା (ବଡ଼ଭାଇ) ନାରାୟଣ ଦାଶଙ୍କର ଏମାସ ତା୨୨ରିଖ ମଙ୍ଗଳବାର ଦିନ ଶ୍ରୀକ୍ଷେତ୍ରପ୍ରାପ୍ତି ହୋଇଅଛି । ସେ ମୋଠାରୁ ଆଠବର୍ଷ ବଡ଼ । ମୃତ୍ୟୁ ସମୟକୁ ତାଙ୍କୁ ୪୮ବର୍ଷ ମାତ୍ର ହୋଇ-ଥିଲା । ବୈମାତୃକ ହେଲେହେଁ ତାଙ୍କର ମୋଠାରେ ଅକୃତ୍ରିମ ସ୍ନେହ ଓ ଅଭେଦ ପ୍ରୀତି ଥିଲା । ଅତି ଶୈଶବାବସ୍ଥାରେ ମୋର ମାତୃବିୟୋଗ ହୋଇ ଥିଲା । ‘ଦେଖିନାହିଁ ମୁହିଁ ମାତୃବଦନ,ପାନ କରିନାହିଁ ମାତୃସ୍ତନ ।’ ସ୍କୁଲରେ ପଢ଼ୁଥିବା ବେଳେ ପିତା ଗୁଳିଗଲେ । କଲେଜରେ ପଢ଼ୁଥିବା ବେଳେ ମୋର ଏକମାତ୍ର ପୁଅ ମଲା ଏବଂ ଜୀବନର ସଖା ଓ ପ୍ରେରକ, ଅଭେଦାତ୍ମା ବନ୍ଧୁ ରାମଚନ୍ଦ୍ର ଦାଶ ମୁକ୍ତାରଙ୍କର ପରଲୋକ ହେଲା । ପଢା ଶେଷ ହେବା ସଙ୍ଗେ ସଙ୍ଗେ ମୋର ଗୃହସ୍ଥାଶ୍ରମ ଶେଷ ହେଲା । ବି,ଏଲ୍, ପରୀକ୍ଷା ପାସ୍ ଖବର ଏବଂ ପତ୍ନୀ ବିୟୋଗ ବାର୍ତ୍ତା ମୁଁ ଏକାଦିନକେ ପାଇଥିଲି । ଜେଲରେ ଥିଲାବେଳେ ମୋର ଶିକ୍ଷକ ଓ ସହୃଦୟ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ମୃତ୍ୟୁ ମୋତେ ଦାରୁଣ ବ୍ୟଥା ଦେଇଥିଲା । ଜେଲରୁ ଫେରିବାର ଅଳ୍ପଦିନମଧ୍ୟରେ ପୁତ୍ରକଳ୍ପ ସହକର୍ମୀ ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ ଶିକ୍ଷକ ଶ୍ରୀମାନ୍ କୃପାସିଂଧୁଙ୍କୁ ହରାଇଲି । ମାତା, ପିତା, ପତ୍ନୀ, ପୁତ୍ର, ବଂଧୁ ଓ ସଖାମାନଙ୍କର ବିଚ୍ଛେଦ ବେତ ବାରଂବାର ଖାଇ ଖାଇ ଏହି ମୋର ଦେହ ସିଝି ଗଲାଣି । ଦେଶର ସାଧାରଣ କାର୍ଯ୍ୟରେ ନିରନ୍ତର ନିରତ ରହି ମୁଁ ଏହିସବୁ ଦୁଃଖ

ପାରୁଥିଲି । ପଲ୍ଲୀର ଅଜ୍ଞାତ କୋଣରେ ରହି ଯେ ମୋର ଏହି ସାଧାରଣ କାର୍ଯ୍ୟରେ ସହାୟ ଥିଲେ, ଯାହାଙ୍କ ବଳରେ ମୁଁ ନିଶ୍ଚିନ୍ତ ଓ ସ୍ୱଚ୍ଛନ୍ଦରେ ମୋର ସମସ୍ତ ଶକ୍ତି, ସମୟ, ମନ, ଧ୍ୟାନ ଦେଶସେବାରେ ଲଗାଇ ପାରୁଥିଲି, ଆଜ ସେ ମୋତେ ଛାଡ଼ି ଚାଲିଗଲେ । ପଢ଼ିଲାବେଳେ ଭାଇନା ମୋତେ ଅକୁଣ୍ଠିତଚିତ୍ତରେ ସାହାଯ୍ୟ କରୁଛନ୍ତି । ଓକିଲାତି କରି ମୁଁ ତାଙ୍କୁ ହଜାରେ ଟଙ୍କା ସୁଦ୍ଧା ଦେଇ ନାହିଁ । ସେଥିରେ ସେ କେବେ ବିରକ୍ତି ବା ଅସନ୍ତୋଷ ପ୍ରକାଶ କରି ନାହାନ୍ତି । ମୋର ଅର୍ଜ୍ଜନ ମୋର ଇଚ୍ଛାମତେ ଖର୍ଚ୍ଚ କରିବାରେ ତାଙ୍କର କିଛି ଆପତ୍ତି ନଥିଲା । ବରଂ ଓକିଲାତି କଲାବେଳେ ଏବଂ ପରେ ଓକିଲାତି ଛାଡ଼ି ଦେଶକାର୍ଯ୍ୟରେ ସମ୍ପୂର୍ଣ୍ଣ ଲାଗିଲାବେଳେ ମୋର ଅଭାବ ଜାଣି ସେ ଅନେକ ସମୟରେ ସାହାଯ୍ୟ ଦେଉଥିଲେ । ଅସହଯୋଗ ଆନ୍ଦୋଳନର ୬ । ୭ ବର୍ଷ ଆଗରୁ ମୁଁ ଓକିଲାତି ଛାଡ଼ିଥିଲି, ସେତେବେଳେ ଲାଇସେନ୍‌ସ୍ ନେବା ଲାଗି ମୋତେ ଅନୁରୋଧ କରିଥିଲେ, ମାତ୍ର ମୋର ଏକାନ୍ତ ଅନିଚ୍ଛା ଦେଖି ଅଧିକ ବଳାଇଲେ ନାହିଁ । ସ୍ତ୍ରୀବିୟୋଗ ପରେ ଅନେକ ଦିନଯାଏ ପୁନର୍ବାର ବିବାହ କରିବାକୁ ମୋ ସଙ୍ଗେ ଲାଗିଥିଲେ । ମୁଁ ନ ମାନିବାରୁ ନିରସ୍ତ ହେଲେ; ମାତ୍ର ମୁଁ ଜାଣେ ଏଥିରେ ତାଙ୍କ ମନରେ ଚିରଦିନ ଲାଗି ଦାରୁଣ ଦୁଃଖ ରହିଲା । ମୁଁ ଅସହଯୋଗ ଦୀକ୍ଷା ଗ୍ରହଣ କଲି, ସେ ମଧ୍ୟ ସେଥିରେ ସଙ୍ଗେ ସଙ୍ଗେ ଦୀକ୍ଷିତ ହେଲେ । ସେ ଏବଂ ତାଙ୍କ ସ୍ତ୍ରୀ ଉଭୟେ ପରମ ଖଦଡ଼ ଭକ୍ତ ଥିଲେ । ମୁଁ ଜେଲଖାନାରେ ଥିଲାବେଳେ ଦୁହେଁ ହାତରେ ସୂତା କାଟି ଦୁଇଖଣ୍ଡ ଲୁଗା ତିଆରି କରାଇ କୁମାରପୂର୍ଣ୍ଣିମାକୁ ମୋ ଲାଗି ହଜାରିବାଗ ଜେଲକୁ ପଠାଇଥିଲେ । ବାଡ଼ିରେ କପା କରାଇ ଯେତେଦୂର ସମ୍ଭବ ନିଜଘରେ ସୂତା କଟାଇ ଘରର ପ୍ରୟୋଜନୀୟ ଲୁଗାଖର୍ଚ୍ଚ ଚଳାଉଥିଲେ । ମୋ ଅପେକ୍ଷା ସେ ଅଧିକ ସ୍ୱଦେଶୀ ଥିଲେ । ବିଦେଶୀ ଲବଣ ବ୍ୟବହାର ସେ ଏକାବେଳେକେ ଛାଡ଼ି ଦେଇଥିଲେ । ଏ ପର୍ଯ୍ୟନ୍ତ ଆମଘରେ କରକଚ ପଶି ନାହିଁ । ଆଗେ ଗୃହାଳଘରେ ଔଷଧ ବ୍ୟବହୃତ ହେଉଥିଲା । ଅସହଯୋଗ ଆନ୍ଦୋଳନ ଦିନୁ ଭାଇନା ତାହା ବନ୍ଦ କରିଦେଲେ । ସେହିଦିନୁ ମଧ୍ୟ

ବଲାତ ମହଣଛତା ସେ ଗ୍ରଡ଼ିଥିଲେ । କେବଳ ଏତକ ନୁହେ, ୧୯୨୧, ୧୯୨୨ ମସିହା ମଧ୍ୟରେ କେତେଗୁଡ଼ିଏ ତମସୁକ ଓ ଡ଼ିକ୍ରି ତମାଦି ହୋଇ ଥିଲେ ସୁଦ୍ଧା ସେ ମକଦ୍ଦମା କରିବାକୁ ଯାଇ ନ ଥିଲେ । ଦେଶର ଜନ-ସାଧାରଣଙ୍କଠାରେ ମୁଁ ଯେଉଁ ଆର୍ଥିକ ସ୍ୱରାଜ୍ୟ କଥା କହୁଥାଏ ସେ ଅନେକ ପରିମାଣରେ ତାହା ସାଧନ କରିପାରି ଥିଲେ । ପାରିବାରିକ ବ୍ୟବହାର ନିମନ୍ତେ ଲୁଣ, ହଳଦି ଓ ଜିରା ମରିଚ ଛଡ଼ା ଅନ୍ୟକିଛି ତାଙ୍କୁ କିଣିବାକୁ ପଡ଼ୁ ନ ଥିଲା । କୁଟି ମୋଟା ଖାଇବା, କାଟି ମୋଟା ପିନ୍ଧିବା ଦ୍ୱାରା ସେ ଶାନ୍ତ ସୁଖ ସମୃଦ୍ଧିରେ ଦିନ କଟାଉ ଥିଲେ ଏବଂ ଦେବତା ବ୍ରାହ୍ମଣ ଅତିଥି ଅଭ୍ୟାଗତ-ଙ୍କର ସାଧ୍ୟାନୁସାରେ ଗୃହସ୍ଥୋଚିତ ସେବା କରିପାରୁଥିଲେ । ଆମ ଅଂଚଳରେ ସେ ଜଣେ ପଲ୍ଲୀର କର୍ମୀ ଥିଲେ ; ସବୁ କାର୍ଯ୍ୟରେ ଲୋକଙ୍କୁ ପରାମର୍ଶ ଦେଉଥିଲେ ଏବଂ ବିଶେଷତଃ ଖଦଡ଼ ପ୍ରଚାର ବିଷୟରେ ସମସ୍ତଙ୍କୁ ସାଧ୍ୟମତେ ପ୍ରବର୍ତ୍ତାଉଥିଲେ । ସେ ନିରଳସ, କର୍ମଠ, ତେଜସ୍ୱୀ, ତ୍ୟାଗୀ ଗୃହସ୍ଥ ଥିଲେ । ତାଙ୍କ ବିୟୋଗରେ ମୋର ମେରୁଦଣ୍ଡ ଭାଙ୍ଗିଯାଇଛି ଏବଂ ଜୀବନର କାର୍ଯ୍ୟ-କ୍ରମରେ ବିଭ୍ରାଟ ଉପସ୍ଥିତ ହୋଇଛି । ସାଧାରଣ କାର୍ଯ୍ୟକ୍ଷେତ୍ରରେ ମୁଁ ଯେ ଏଣିକି ଅବାଧରେ ସମସ୍ତ ଶକ୍ତି ସମୟ କେତେଦୂର ଲଗାଇପାରିବି, ଏହା ଘୋର ଚିନ୍ତାର ବିଷୟ । ମୋର ବ୍ୟକ୍ତିଗତ ଦୁଃଖ କାହାଣୀ ଏଠାରେ ଏତେ ଲେଖିଲି କେବଳ ମୋର ଉପସ୍ଥିତ ଅବସ୍ଥା ଜନସାଧାରଣଙ୍କୁ ଜଣାଇବାପାଇଁ । ମୁଁ ଜାଣେ, ଅନେକ ଯୁବକ ପଢ଼ୁଥିବା ବେଳେ ଏବଂ ପଢ଼ା ସାରି ଦେଶ କାର୍ଯ୍ୟରେ ଲାଗିରହିବାକୁ ଏକାନ୍ତ ଇଚ୍ଛୁକ ଏବଂ ଉତ୍ସାହୀ ଥିଲେ ସୁଦ୍ଧା ଘରଲୋକେ ସେମାନଙ୍କୁ ସେ ସୁବିଧା ଦିଅନ୍ତି ନାହିଁ । ବାପ, ଭାଇ, ମା, ମାଇପ ଅର୍ଥ ଉପାର୍ଜ୍ଜନ ଲାଗି ସେମାନଙ୍କୁ କେଳେଇ ଖାଇ ଯାଆନ୍ତି । ସମସ୍ତେ ଯେ ଅଭାବ ହେତୁ ଏପରି କରନ୍ତି ତାହା ନୁହେ; ଅର୍ଥ ତୃଷ୍ଣା, କ୍ଷମତାଲାଳସା ହେତୁ ସେମାନେ ଏପରି କରିଥାନ୍ତି । ଭାଇନା ନାରାୟଣ ଦାସ ମୋତେ ସେହିପରି ବିରକ୍ତ ଓ ବିବ୍ରତ କରିଥିଲେ ମୁଁ ଏକନିଷ୍ଠ ହୋଇ ସ୍ୱଦେଶସେବା କରି ପାରିଥାନ୍ତି କି ନାହିଁ ସନ୍ଦେହ । ବିଦେଶୀ ବର୍ଜ୍ଜନ କରି ଲୋକ ଯେ ଏ ଯୁଗରେ ଚଳିପାରେ ତାହା ଭାଇନାଙ୍କ ଜୀବନରେ ମୁଁ ଦେଖିଛି ଏବଂ

ମୋର ଏହି ଧାରଣା ହୋଇଛି ଯେ, ସହରରେ ରହି ଯେଉଁମାନେ ସ୍ୱଦେଶୀ ବା ବିଲାତି ବର୍ଜ୍ଜନ ଲାଗି ଚିତ୍କାର କରୁଛନ୍ତି, ସେମାନଙ୍କ ଅପେକ୍ଷା ପଲ୍ଲୀବାସୀ ପକ୍ଷରେ ଏହା କାର୍ଯ୍ୟରେ ପରିଣତ କରିବା ଅଧିକତର ସହଜ । ପଲ୍ଲୀ ଉନ୍ନତି, ଗ୍ରାମ ସଂଗଠନ ଆଦି ବଡ଼ ବଡ଼ କଥା ସହରରେ କହିବା ଅପେକ୍ଷା ପଲ୍ଲୀରେ ସ୍ୱାବଲମ୍ବନ ଭାବରେ ଚଳିଲେ ଏବଂ ଅନ୍ୟମାନଙ୍କୁ ସେ ଭାବରେ ପ୍ରବର୍ତ୍ତାଇଲେ ଅଧିକ କାର୍ଯ୍ୟ ହେବ,ମୋର ଏହି ବିଶ୍ୱାସ ଜନ୍ମିଛି । ଭାଇନାଙ୍କୁ ମୁଁ ଜୀବନରେ କିଛି ମାତ୍ର ସାହାଯ୍ୟ ଦେଇ ନାହିଁ । ମୋ ଦେଶ ସେବାରେ ସେ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ଦେଖାଇ ଅଛନ୍ତି; ପଲ୍ଲୀର ଗୃହସ୍ଥ ଜୀବନ ବିଷୟରେ ସେ ମୋ ସମ୍ମୁଖରେ ଆଦର୍ଶ । ତାଙ୍କ ଆଦର୍ଶ ପଲ୍ଲୀଗ୍ରାମବାସୀ ଭାଇମାନଙ୍କ ନିକଟରେ ଦେଖାଇବା ଲାଗି ଆଜି ଏତିକି ଲେଖିଲି । ଜୀବନ କାଳରେ ମୋଠାରେ ତାଙ୍କର କିଛି ଭାର ନ ଥିଲା, ମୃତ୍ୟୁପରେ ସେ ମୋ ଉପରେ ଗୁରୁ ଦାୟିତ୍ୱ ଦେଇ ଚାଲିଗଲେ । ପଲ୍ଲୀରେ ଗୃହସ୍ଥ ଜୀବନର ଆଦର୍ଶ ଜାଗ୍ରତ କରି ରଖିବା ସହଜସାଧ୍ୟ ବ୍ୟାପାର ନୁହେଁ । ମୁଁ ପାରିବାରିକ ବ୍ୟାପାରରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ନିଜର ଜମିଜାଗା ବଗିଚାବାଡ଼ି କେଉଁଠାରେ କିଣ, ତାହା ତ ମୁଁ ଜାଣେ ନାହିଁ । ସବୁ ଘର ମଧ୍ୟ ଦେଖି ନାହିଁ । ମୋର ଘରସଙ୍ଗେ ଏକପ୍ରକାର ସମ୍ପର୍କ ନ ଥିଲା । ଯେ ବୟସରେ ଗୃହୀ ହୋଇଥାନ୍ତି, ସେତେବେଳେ ଗୃହତ୍ୟାଗୀ ହୋଇ ରହିଛି, ଯେ ବୟସରେ ଘର ଛାଡ଼ି ବାନପ୍ରସ୍ଥ ଦୀକ୍ଷା ନିଅନ୍ତି ସେ ବୟସକୁ ଗୃହଭାର ଆସି ମୋ ଉପରେ ପଡ଼ିଛି । ବିଧାତାଙ୍କର ଏଥିରେ କି ଗୂଢ଼ ରହସ୍ୟ ଅଛି ସେ ଜାଣନ୍ତି । ମୁଁ ଏ ଶୋକାଭିଭୂତ ଅବସ୍ଥାରେ କିଛି କର୍ତ୍ତବ୍ୟ ନିରୂପଣ କରିପାରୁ ନାହିଁ । ଭ୍ରାତୃବିୟୋଗ ଫଳରେ ଦେଶସେବାରେ ମୋର ଯଦି କିଛି ତ୍ରୁଟି ଘଟେ,କରୁଣା ପ୍ରକାଶ କରି କ୍ଷମା ଦେବାଲାଗି ଦେଶବାସୀଙ୍କଠାରେ ପ୍ରାର୍ଥନା କରୁଅଛି । ସବୁ ମଙ୍ଗଳମୟଙ୍କ ଇଚ୍ଛା—ମୁଁ ତାଙ୍କର ଶ୍ରୀଚରଣରେ ଆତ୍ମୋତ୍ସର୍ଗ କରିଅଛି । ଯହିଁ ତହିଁ ଯେ ଅବସ୍ଥାରେ ଥାଏଁ, ତାଙ୍କର ଇଚ୍ଛା ଓ ଆଦେଶ ପାଳନ କରି ଜୀବନରେ ଶାନ୍ତି ପାଇବି, ଏହି ଆଶାରେ ଆଜି ଆଶ୍ୱସ୍ତ ହେଉଅଛି । ଭାଇ ନାରାୟଣଙ୍କ ସ୍ନେହ ସୋଦରତାରୁ ଏ ଜୀବନରେ ବଞ୍ଚିତ ହେଲେହେଁ ପରମପିତା ମଙ୍ଗଳନିଦାନ

ବଳାତ ମହଣଛତା ସେ ଗ୍ରହିଥିଲେ । କେବଳ ଏତିକ ନୁହେ, ୧୯୨୧, ୧୯୨୨ ମସିହା ମଧ୍ୟରେ କେତେଗୁଡ଼ାଏ ତମସୁକ ଓ ଡ଼ିଗ୍ରି ତମାଦି ହୋଇ ଥିଲେ ସୁଦ୍ଧା ସେ ମକଦ୍ଦମା କରିବାକୁ ଯାଇ ନ ଥିଲେ । ଦେଶର ଜନସାଧାରଣଙ୍କଠାରେ ମୁଁ ଯେଉଁ ଆର୍ଥିକ ସ୍ୱରାଜ୍ୟ କଥା କହୁଥାଏ ସେ ଅନେକ ପରିମାଣରେ ତାହା ସାଧନ କରିପାରି ଥିଲେ । ପାରିବାରିକ ବ୍ୟବହାର ନିମନ୍ତେ ଲୁଣ, ହଳଦି ଓ ଜିରା ମରିଚ ଛଡ଼ା ଅନ୍ୟକିଛି ତାଙ୍କୁ କିଣିବାକୁ ପଡ଼ୁ ନ ଥିଲା । କୁଟି ମୋଟା ଖାଇବା, କାଟି ମୋଟା ପିନ୍ଧିବା ଦ୍ୱାରା ସେ ଶାନ୍ତ ସୁଖ ସମୃଦ୍ଧିରେ ଦିନ ବିତାଉ ଥିଲେ ଏବଂ ଦେବତା ବ୍ରାହ୍ମଣ ଅତିଥି ଅଭ୍ୟାଗତଙ୍କର ସାଧାନୁସାରେ ଗୃହସ୍ଥୋଚିତ ସେବା କରିପାରୁଥିଲେ । ଆମ ଅଂଚଳରେ ସେ ଜଣେ ପଲ୍ଲୀର କର୍ମୀ ଥିଲେ । ସତ୍ କାର୍ଯ୍ୟରେ ଲୋକଙ୍କୁ ପରାମର୍ଶ ଦେଉଥିଲେ ଏବଂ ବିଶେଷତଃ ଖଦଡ଼ ପ୍ରଚାର ବିଷୟରେ ସମସ୍ତଙ୍କୁ ସାଧ୍ୟମତେ ପ୍ରବର୍ତ୍ତାଉଥିଲେ । ସେ ନିରଳସ, କର୍ମଠ, ତେଜସ୍ୱୀ, ତ୍ୟାଗୀ ଗୃହସ୍ଥ ଥିଲେ । ତାଙ୍କ ବିୟୋଗରେ ମୋର ମେରୁଦଣ୍ଡ ଭାଙ୍ଗିଯାଇଛି ଏବଂ ଜୀବନର କାର୍ଯ୍ୟକ୍ରମରେ ବିଭ୍ରାଟ ଉପସ୍ଥିତ ହୋଇଛି । ସାଧାରଣ କାର୍ଯ୍ୟକ୍ଷେତ୍ରରେ ମୁଁ ଯେ ଏଣିକି ଅବାଧରେ ସମସ୍ତ ଶକ୍ତି ସମୟ କେତେଦୂର ଲଗାଇପାରିବି, ଏହା ଘୋର ଚିନ୍ତାର ବିଷୟ । ମୋର ବ୍ୟକ୍ତିଗତ ଦୁଃଖ କାହାଣୀ ଏଠାରେ ଏତେ ଲେଖିଲି କେବଳ ମୋର ଉପସ୍ଥିତ ଅବସ୍ଥା ଜନସାଧାରଣଙ୍କୁ ଜଣାଇବାପାଇଁ । ମୁଁ ଜାଣେ, ଅନେକ ଯୁବକ ପଢ଼ୁଥିବା ବେଳେ ଏବଂ ପଢ଼ା ସାରି ଦେଶ କାର୍ଯ୍ୟରେ ଲାଗିରହିବାକୁ ଏକାନ୍ତ ଇଚ୍ଛୁକ ଏବଂ ଉତ୍ସାହୀ ଥିଲେ ସୁଦ୍ଧା ଘରଲୋକେ ସେମାନଙ୍କୁ ସେ ସୁବିଧା ଦିଅନ୍ତି ନାହିଁ । ବାପ, ଭାଇ, ମା, ମାଇପ ଅର୍ଥ ଉପାର୍ଜ୍ଜନ ଲାଗି ସେମାନଙ୍କୁ କେଳେଇ ଖାଇ ଯାଆନ୍ତି । ସମସ୍ତେ ଯେ ଅଭାବ ହେତୁ ଏପରି କରନ୍ତି ତାହା ନୁହେ; ଅର୍ଥ ତୃଷ୍ଣା, କ୍ଷମତାଲାଳସା ହେତୁ ସେମାନେ ଏପରି କରିଥାନ୍ତି । ଭାଇନା କାରିସ୍ତୃଣ ଦାଶ ମୋତେ ସେହିପରି ବିରକ୍ତ ଓ ବିବ୍ରତ କରିଥିଲେ ମୁଁ ଏକନିଷ୍ଠ ହୋଇ ସ୍ୱଦେଶସେବା କରି ପାରିଥାନ୍ତି କି ନାହିଁ ସନ୍ଦେହ । ବିଦେଶୀ ବର୍ଜ୍ଜନ କରି ଲୋକ ଯେ ଏ ଯୁଗରେ ଚଳିପାରେ ତାହା ଭାଇନାଙ୍କ ଜୀବନରେ ମୁଁ ଦେଖିଛି ଏବଂ

ମୋର ଏହି ଧାରଣା ହୋଇଛି ଯେ, ସହରରେ ରହି ଯେଉଁମାନେ ସ୍ୱଦେଶୀ ବା ଶିଳ୍ପ ବର୍ଦ୍ଧନ ଲାଗି ପ୍ରଚାର କରୁଛନ୍ତି, ସେମାନଙ୍କ ଅପେକ୍ଷା ପଲ୍ଲୀବାସୀ ପକ୍ଷରେ ଏହା କାର୍ଯ୍ୟରେ ପରିଣତ କରିବା ଅଧିକତର ସହଜ । ପଲ୍ଲୀ ଉନ୍ନତି, ଗ୍ରାମ ସଂଗଠନ ଆଦି ବଡ଼ ବଡ଼ କଥା ସହରରେ କହିବା ଅପେକ୍ଷା ପଲ୍ଲୀରେ ସ୍ୱାବଲମ୍ବନ ଭାବରେ ଚଳିଲେ ଏବଂ ଅନ୍ୟମାନଙ୍କୁ ସେ ଭାବରେ ପ୍ରବର୍ତ୍ତାଇଲେ ଅଧିକ କାର୍ଯ୍ୟ ହେବ, ମୋର ଏହି ବିଶ୍ୱାସ ଜନ୍ମିଛି । ଭାଇକାଙ୍କୁ ମୁଁ ଜୀବନରେ କିଛି ମାତ୍ର ସାହାଯ୍ୟ ଦେଇ ନାହିଁ । ମୋ ଦେଶ ସେବାରେ ସେ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ଦେଖାଇ ଅଛନ୍ତି; ପଲ୍ଲୀର ଗୃହସ୍ଥ ଜୀବନ ବିଷୟରେ ସେ ମୋ ସମ୍ମୁଖରେ ଆଦର୍ଶ । ତାଙ୍କ ଆଦର୍ଶ ପଲ୍ଲୀଗ୍ରାମବାସୀ ଭାଇମାନଙ୍କ ନିକଟରେ ଦେଖାଇବା ଲାଗି ଆଜି ଏତିକି ଲେଖିଲି । ଜୀବନ କାଳରେ ମୋଠାରେ ତାଙ୍କର କିଛି ଭାର ନ ଥିଲା, ମୃତ୍ୟୁପରେ ସେ ମୋ ଉପରେ ଗୁରୁ ଦାୟିତ୍ୱ ଦେଇ ଚାଲିଗଲେ । ପଲ୍ଲୀରେ ଗୃହସ୍ଥ ଜୀବନର ଆଦର୍ଶ ଜାଗ୍ରତ କରି ରଖିବା ସହଜସାଧ୍ୟ ବ୍ୟାପାର ନୁହେଁ । ମୁଁ ପାରିବାରିକ ବ୍ୟାପାରରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ନିଜର ଜମିଜାଗା ବଗିଚା ବାଡ଼ି କେଉଁଠାରେ କଣ, ତାହା ତ ମୁଁ ଜାଣେ ନାହିଁ । ସବୁ ଘର ମଧ୍ୟ ଦେଖି ନାହିଁ । ମୋର ଘରସଙ୍ଗେ ଏକପ୍ରକାର ସମ୍ପର୍କ ନ ଥିଲା । ଯେ ବୟସରେ ଗୃହୀ ହୋଇଥାନ୍ତି, ସେତେବେଳେ ଗୃହତ୍ୟାଗୀ ହୋଇ ରହିଛି, ଯେ ବୟସରେ ଘର ଛାଡ଼ି ବାନପ୍ରସ୍ଥ ଦୀକ୍ଷା ନିଅନ୍ତି ସେ ବୟସକୁ ଗୃହଭାର ଆସି ମୋ ଉପରେ ପଡ଼ିଛି । ବିଧାତାଙ୍କର ଏଥିରେ କି ଗୂଢ ରହସ୍ୟ ଅଛି ସେ ଜାଣନ୍ତି । ମୁଁ ଏ ଶୋକାଭିଭୂତ ଅବସ୍ଥାରେ କିଛି କର୍ତ୍ତବ୍ୟ ନିରୂପଣ କରିପାରୁ ନାହିଁ । ଭ୍ରାତୃବିୟୋଗ ଫଳରେ ଦେଶସେବାରେ ମୋର ଯଦି କିଛି ତ୍ରୁଟି ଘଟେ, କରୁଣା ପ୍ରକାଶ କରି କ୍ଷମା ଦେବାଲାଗି ଦେଶବାସୀଙ୍କଠାରେ ପ୍ରାର୍ଥନା କରୁଅଛି । ସବୁ ମଙ୍ଗଳମୟଙ୍କ ଇଚ୍ଛା—ମୁଁ ତାଙ୍କର ଶ୍ରୀଚରଣରେ ଆତ୍ମୋତ୍ସର୍ଗ କରିଅଛି । ଯହିଁ ତହିଁ ଯେ ଅବସ୍ଥାରେ ଥାଏଁ, ତାଙ୍କର ଇଚ୍ଛା ଓ ଆଦେଶ ପାଳନ କରି ଜୀବନରେ ଶାନ୍ତି ପାଇବି, ଏହି ଆଶାରେ ଆଜି ଆଶ୍ୱସ୍ତ ହେଉଅଛି । ଭାଇ ନାରାୟଣଙ୍କ ସ୍ନେହ ସୋଦରତାରୁ ଏ ଜୀବନରେ ବଞ୍ଚିତ ହେଲେହେଁ ପରମପିତା ମଙ୍ଗଳନିଦାନ

ନାରାୟଣଙ୍କ ଅନନ୍ତ ଉତ୍ସଙ୍ଗରେ ଚରଣତଳ ଲଗି ମୋ ନିମନ୍ତେ ସ୍ନେହସୁଧାମୟ ସ୍ଥାନ ରହିଛି । ଏହି ବିଶ୍ୱାସରେ ମୁଁ ବିମଳ ଧୈର୍ଯ୍ୟ ଧରି ରହିଛି । ଏହି ବିଶ୍ୱାସ ନିରନ୍ତର ଦୃଢ଼ ରହୁ, ପ୍ରଭୁଙ୍କ ଶ୍ରୀପଦ୍ମରେ ମୋର ଏକାନ୍ତ ଭିକ୍ଷା ଏବଂ ଦେଶବାସୀଙ୍କଠାରେ ଏହି ଆଶୀର୍ବାଦ ମୋର କାମନା ।"

( The Samaj, 26 Nov. 1927 )

ବାଲ୍ୟବିବାହ ବ୍ରାହ୍ମଣ ସମାଜରେ ଯେପରି ଧରାବନ୍ଧା, ଅନ୍ୟ ସମାଜରେ ତାହା ପ୍ରାୟ ନାହିଁ । ସେଥିପାଇଁ ବ୍ରାହ୍ମଣମାନେ କୁଣ୍ଠେଇ ବିବାହ ସଦୃଶ ଅତି ଅଳ୍ପ ବୟସରୁ ପୁତ୍ରକନ୍ୟାମାନଙ୍କ ବିବାହ ଦେଇଥାନ୍ତି । ସେତିକି ନୁହେଁ, ଆମ ଓଡ଼ିଶାର ପିତାମାତାମାନେ ପୁତ୍ର କନ୍ୟାମାନଙ୍କୁ ବୈବାହିକ ଅବସ୍ଥାରେ ଅତି ଶୀଘ୍ର ରଖିବାପାଇଁ ଲାଳାୟିତ । ପିତାଙ୍କଠାରୁ ମାତା ଏ ବିଷୟରେ ବେଶି ଉଦ୍‌ବ୍ୟସ୍ତ । ପୁତ୍ରକୁ ବିବାହ ଦେଇ ପାରିଲେ ସେମାନଙ୍କ ମୁଣ୍ଡରୁ ଗୋଟିଏ ବୋଝ ଗଲା ବୋଲି ମନେ କରନ୍ତି । ଗୋପବନ୍ଧୁଙ୍କ ପିତା ଟିକିଏ ଶିକ୍ଷିତ ଥାଇ ଏ ଦୋଷରୁ ଯେ ମୁକ୍ତ ଥିଲେ ଏପରି ନୁହେଁ । ପିଲାଦିନୁଁ ଗୋପବନ୍ଧୁଙ୍କ ମାଆ ମରିଯାଇଥିବାରୁ ଦ୍ୱିତୀୟାର କପାଳ ପୁତ୍ରକୁ ବିବାହ ଦେଇ ନିଶ୍ଚିନ୍ତ ରହିବେ, ସର୍ବଦା ଭାବୁଥାନ୍ତି । ସେଥିପାଇଁ ଗୋପବନ୍ଧୁ ୧୨ବର୍ଷ ବୟସରେ ଗ୍ରାମସ୍ଥ ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସେ ଗ୍ରାମନିକଟସ୍ଥ ବାଙ୍ଗୁରିବା (ଗଦାଧରପୁର) ରେ ତାଙ୍କୁ ବିବାହ ଦେଇଥିଲେ । ଗୋପବନ୍ଧୁଙ୍କ ପତ୍ନୀଙ୍କ ନାମ ମୋତି ଦେଇ ଥିଲା । ଦୁଇ ଭାଇ ଯାକ ଗାଁ ସ୍କୁଲରୁ ପାଠପଢ଼ା ସାରି ବଡ଼ ଭାଇ ନାରାୟଣ ଘର କାମରେ ରହିଲେ, ସାନଭାଇ ଗୋପବନ୍ଧୁ ନିଜ ଗ୍ରାମର ୫ମାଇଲ ଦୂରବର୍ତ୍ତୀ ରୂପଦେଇପୁରରେ ଥିବା ଭଣ୍ଡାରୀକୁଲର ସ୍କୁଲରେ ପଢିବାକୁ ଗଲେ । ଗୋପବନ୍ଧୁଙ୍କର ପିଲାଦିନରୁ ସାହିତ୍ୟ ପ୍ରତି ଯେ ଆଦର ଓ ମମତା ଥିଲା ତାହା ସମସ୍ତେ ଜାଣନ୍ତି । ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟରେ ତାହା ପରିସ୍ଫୁଟ ହୋଇ ନ ଥିଲା । ମଧ୍ୟଭଣ୍ଡାରୀକୁଲର ସ୍କୁଲକୁ ଯାଇ ଗୋପବନ୍ଧୁଙ୍କର ସାହିତ୍ୟ ପ୍ରତି ଆଦର ବଢିଥିଲା । ସେ ବିଦ୍ୟାଳୟରେ ଇଂରେଜୀ ପଢାଯାଏ ନାହିଁ, ସୁତରାଂ ସମସ୍ତଙ୍କର ଅଙ୍କ ଓ ସାହିତ୍ୟ ଉପରେ ବିଶେଷ ନଜର ଥାଏ । ଗୋପବନ୍ଧୁ ସେଠାରେ ସାହିତ୍ୟଚର୍ଚ୍ଚା କରିବାକୁ ଉପଯୁକ୍ତକ୍ଷେତ୍ର ପାଇଥିଲେ ।

ଅବକାଶ ସମୟରେ ଯେତେବେଳେ ଗ୍ରାମକୁ ଆସନ୍ତି, ଗ୍ରାମସୀମାରେ ଥିବା ଭାର୍ଗବୀକୂଳରେ ଯାଗେଶ୍ୱରୀ ଠାକୁରାଣୀଙ୍କ ମନ୍ଦିରରେ ବସି ଅଧିକାଂଶ ସମୟ ଏକାକୀ କଟୁ ଲେଖୁଥାନ୍ତି । ଭାର୍ଗବୀନଦୀର ଜଳକୁ ମା'ର ସ୍ତନ ସ୍ୱରୂପ ପାନକରି ଭାର୍ଗବୀକୂଳରେ ଗାଇଛନ୍ତି:—

× × × × ×

ପଲ୍ଲୀ ପ୍ରାକୃତ ସରଳ କାନ୍ତ
ଉଦ୍‌ବେଗହୀନ ଉଦ୍ୟଶାନ୍ତ
ତୋ'ର-ଜଳଧାର— ଯୋଗେ ସୁଖତର
ହରେ ସହଜେ ସକଳ ଶ୍ରାନ୍ତ—ଲୋ ତଟିନି !

× × ×

ଦେଇ ଆପଣା ଶୁଦ୍ଧ ଜୀବନ
ତୋଷୁ କେତେ କେତେ ଜୀବଗଣ,
ପରହିତେ ଏକା ନିରନ୍ତର ବଂକା
ଧନ୍ୟ ଧନ୍ୟ ତୋ' ମହତ ପଣ—ଲୋ ତଟିନି !

× × ×

ଚନ୍ତାବହୀନ ବାଲ୍ୟ ସମୟେ
ବହୁ ଖେଳିଅଛୁ ତୋ' ହୃଦୟେ
ମୋର କେତେ ଅଳି ଅଛୁ ତୁ ସମ୍ଭାଳି
ମନେ ଥିବ ଜାବ ଯିବା ଯାଏ—ଲୋ ତଟିନି !

ମୋର ପିତୃପିତାମହଗଣ
କରି ତୋ ଘାଟରେ ସ୍ନାନ ତର୍ପଣ,
ଲକ୍ଷ୍ମଣ-ବଇତା ଯାଗେଶ୍ୱରୀ ମାତା
ପଦେ ପୂଜୁଥିଲେ ଅନୁକ୍ଷଣ—ଲୋ ତଟିନି !

ସୁକୋମଳ ବାଲି ଶେଯେ ଶେଷେ
ବିଶ୍ରାମିଲି ତୋ' ପୁଳିନ ଦେଶେ,
ପାପ-ତାପ-ନାଶୀ          ତୋର ବାରିରାଶି
ପୂତ କରେ ପ୍ରତି ଗ୍ରୀଷ୍ମ ଶେଷେ—ଲୋ ତଟିନି !

+          +          +

କେତେ ରୁଚିର ସୁଖ ସ୍ୱପନ
ବିଲୋକଇ ମୋ ମନ ନୟନ,
ସାମାନ୍ୟ ଏ ଭବ          ଦୂଷିତ ବିଭବ
କରେ ନାହିଁ ମୁଁ ତିଳେ ଗଣନ—ଲୋ ତଟିନି ।

+          +          +

ତେଣୁ ତୋ ପଦେ କରେ ମିନତି
ଜୀବ ଥିବାଯାଏ ସ୍ରୋତସ୍ୱତି
ଭବ ଦୁଖ ନାଶି          ଭାବ ରାଶି ରାଶି
ତତ୍ତ୍ୱେ ଜନ୍ମାଇବୁ ଏହି ମତି—ଲୋ ତଟିନି !

+          +          +

ପିଣ୍ଡ ପଡୁ ତୋ ସିକତା ପାଶେ
ଯାଗେଶ୍ୱରୀ ଜନନୀ ସକାଶେ,
ପୁନ୍ନାଗ ବକୁଳ          ନାନାଜାତି ଫୁଲ
ଝଡ଼ି ପଡୁଥାଉ ତଉପାଶେ—ଲୋ ତଟିନି !

+          +          +

ଅବଶେଷେ ମୋ ଜୀବନ-ନଦୀ
ମିଶି ତୋ ସଙ୍ଗତେ ନିରବଧି,
ଲଭି ତବ ଶାନ୍ତି          ହରୁ ସର୍ବ କ୍ଲାନ୍ତି
ଭେଟୁ ଅତଳ-ନୀଳ ଜଳଧି—ଲୋ ତଟିନି !

+          +          +

ସେତେବେଳେ ସେହି ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ସଦାଶିବ ମିଶ୍ରଙ୍କର ସାହିତ୍ୟରେ ବିଶେଷ ପାରଦର୍ଶିତା ଥିଲା । ସେ ସତ୍ୟବାଦୀ ନିକଟ-ବର୍ତ୍ତୀ ଗାରନରସିଂହପୁର ଶାସନନିବାସୀ ବୈଦିକ ବ୍ରାହ୍ମଣ । ସ୍କୁଲର ଶିକ୍ଷକ ଥାଇ ସେ ଗାରନରସିଂହପୁରରୁ ଆସି ରୂପଦେଇପୁରରେ ବାସକରି ରହିଲେ । ତାଙ୍କର ସନ୍ତାନ ସନ୍ତତି ନ ଥିଲା ।

ଗୋପବନ୍ଧୁଙ୍କୁ ଛାତ୍ରରୂପେ ପାଇଥିଲେ ସତ, ମାତ୍ର ତାଙ୍କୁ ପୁତ୍ରଠାରୁ ବଳି ସ୍ନେହ କରୁଥିଲେ । ଗୋପବନ୍ଧୁ ତାଙ୍କ ପାଖରେ ରହି ତାଙ୍କୁ ପିତା ଓ ଗୁରୁ ବୋଲି ମନେ କରି ତାଙ୍କରି କଥା ଅନୁସାରେ ଜୀବନ ଯାପନ କରୁ-ଥିଲେ । ତାଙ୍କର ସେହି ଗୁରୁଭକ୍ତି ଭବିଷ୍ୟତ ଜୀବନରେ ମଧ୍ୟ ସେ ଭୁଲି ନାହାନ୍ତି । ମୟୂରଭଞ୍ଜରେ ଥିଲାବେଳେ ସେ ସେଠାରେ ଗୋଟିଏ ଅନାଥାଶ୍ରମ ସ୍ଥାପନ କରାଇ ଗୁରୁଦେବଙ୍କ ପାଖକୁ ଲେଖିଥିଲେ, "ଆପଣ ମୋତେ କେବଳ ଗୋଟିଏ ପୁତ୍ର କରି ପାଇଥିଲେ, ବର୍ତ୍ତମାନ ଅନେକ ପୁତ୍ରକନ୍ୟାଙ୍କୁ ପାଇ ସେମାନଙ୍କ ସହିତ ସୁଖରେ ରହିବେ ବିଶ୍ୱାସ କରି ଆପଣଙ୍କୁ ଏଠାକୁ ଆସି-ବାକୁ ଅନୁରୋଧ କରୁଅଛି ।" ରୂପଦେଇପୁର ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଆସି ଗୋପବନ୍ଧୁ ପୁରୀ ଜିଲା ସ୍କୁଲରେ ନାମ ଲେଖାଇଲେ । ହାଇ ସ୍କୁଲରେ ନାମ ଲେଖାଇ ଇଂରେଜି ଜାଣି ନ ଥିବାରୁ ତାଙ୍କୁ ଶ୍ରେଣୀରେ ଅନ୍ୟ ସଙ୍ଗୀ ଛାତ୍ରମାନଙ୍କ ସହିତ ସମକକ୍ଷ ହେବାପାଇଁ ବହୁତ ପରିଶ୍ରମ କରିବାକୁ ପଡ଼ି ଥିଲା । ବହୁ କ୍ଳେଶରେ କ୍ରମେ କ୍ରମେ ତାହା ଦୂରୀଭୂତ ହୋଇଥିଲା । ଇଂରେଜି କଥା ଚର୍ଚ୍ଚା ହେଲାବେଳେ ଗୋପବନ୍ଧୁ ଟିକିଏ ଶଙ୍କା କରୁଥାନ୍ତି । ମାତ୍ର ଓଡ଼ିଆ ବେଳକୁ ସେ ଆଗଭର ହେଉଥିଲେ । ଗୋପବନ୍ଧୁ ଜିଲା ସ୍କୁଲର ନିମ୍ନ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଓଡ଼ିଆ ସାହିତ୍ୟର ପୁରସ୍କାରମାନ ଅନାୟାସରେ ଲାଭକରି ପାରୁଥିଲେ । ତଳ ଶ୍ରେଣୀରେ ପଢିଲେ ସୁଦ୍ଧା କେଉଁଠାରେ ସାହିତ୍ୟ ରାଜ୍ୟରେ କି ଘଟଣା ଘଟୁଛି ତହିଁର ଖବର ରଖୁ-ଥିଲେ । ପ୍ରାୟ ୩ୟ ବା ୪ର୍ଥ ଶ୍ରେଣୀରେ ଅଧ୍ୟୟନ କଲାବେଳେ ୧୧ ସଭା ସମିତି ମାନଙ୍କରେ କୁହା ପୋଛା କରି ପାରୁଥିଲେ । ଏହି ସମୟରେ ପୁରାତନ ଓ ନୂତନ ସାହିତ୍ୟ ନେଇ ସାହିତ୍ୟିକମାନଙ୍କ ମଧ୍ୟରେ ଭୟଙ୍କର

ବିବାଦ ଚାଲିଥାଏ । ଦଳେ ପ୍ରାଚୀନ ସାହିତ୍ୟର ପକ୍ଷ ନେଇ ଲାବଣ୍ୟବତୀ ବୈଦେହୀଶ ବିଳାସ ପ୍ରଭୃତି ପୁସ୍ତକ ମାନଙ୍କୁ ପ୍ରଶଂସା କରି "ଇନ୍ଦ୍ରଧନୁ" ନାମକ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କରୁଥିଲେ ଏବଂ ଅନ୍ୟ ଏକଦଳ "ବିଜୁଳି" ନାମକ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କରି "ଇନ୍ଦ୍ର ଧନୁ"ର ପ୍ରତିବାଦରେ ନୂତନ ସାହିତ୍ୟକୁ ଉଚ୍ଚ ସ୍ଥାନ ଦେଉଥିଲେ । ପଣ୍ଡିତ ଗୋପବନ୍ଧୁ କ ଏପରି ସ୍ଥଳେ ସ୍ଥିର ରହିବାର ଲୋକ ? ସେ ପ୍ରାଣ କ ସ୍କୁଲର ଚତୁଃସୀମା ମଧ୍ୟରେ ଆବଦ୍ଧ ରହିପାରେ ? "ବିଜୁଳିର" ତୀବ୍ର ପ୍ରତିବାଦରେ ସେ ସାହିତ୍ୟ ପ୍ରାଣ ଚମକି ଉଠିଲା । ସେ ତହୁଁ ଇନ୍ଦ୍ର ଧନୁରେ ଗୋଟିଏ ବିକୃତ କୌତୁକବ୍ୟଞ୍ଜକ କବିତା (Satirical Poem) ପ୍ରକାଶ କରିଥିଲେ । ସେଥିରେ ନୂତନ ସାହିତ୍ୟ ପ୍ରତି ସେ ସ୍ୱପ୍ନ ରାଜ୍ୟରେ ବିଚରଣକରି କେତେକ ନୂତନ କବିମାନଙ୍କୁ ଆକ୍ଷେପକରି ଲେଖିଥିଲେ । ସେ ସ୍ୱପ୍ନ ଦେଖିଲା ବେଳେ ଦେଖିଲେ ରାଧାନାଥ, ମଧୁସୂଦନ ପ୍ରଭୃତି ଆଧୁନିକ କବିମାନଙ୍କର କବିତା କୀଟଦଂଷ୍ଟ ଓ ବିନଷ୍ଟ ହୋଇ ପଡ଼ିଥିବା ବେଳେ ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତି କବିମାନଙ୍କର କବିତା ଅତି ଆଦରରେ, ଯତ୍ନରେ ସୁସଜ୍ଜିତ ହୋଇ ରଖା ଯାଇଥିଲା ଏବଂ ସେମାନଙ୍କର ସ୍ଥାନ ନୂତନ କବିମାନଙ୍କଠାରୁ ଉଚ୍ଚରେ ଥିଲା । ଏହା ବୋଲି ସେ ରାଧାନାଥ ପ୍ରଭୃତି ନୂତନ କବିମାନଙ୍କୁ ନିନ୍ଦା କରୁ ନ ଥିଲେ । ଗୋପବନ୍ଧୁଙ୍କର "ରେଲ୍ ଉପରେ ଚିଲିକା ଦର୍ଶନ" କବିତାରୁ ପ୍ରତୀୟମାନ ହୁଏ ଯେ, ସେ କିପରି ରାଧାନାଥଙ୍କୁ ପ୍ରଶଂସା କରନ୍ତି ।

* * * * *

"ଦେଖି ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମା ଗ୍ରାହକ,
ଭ୍ରମି ବହୁସ୍ଥାନ ବିଶାଳ ଭାରତେ
ନଦ ନଦୀ ମରୁ କାନନ ପର୍ବତେ,
ଦେଖିଲେ ପ୍ରକୃତି ବିବିଧ ପ୍ରକାଶ,
କିନ୍ତୁ କୋଭିଲ୍ଲିବ ଶୁଦ୍ଧ ଅଭିଳାଷ,

ସୁଖ ଶାନ୍ତି ପ୍ରୀତି କାହିଁ ଏକାଧାରେ
ନ ପାଇଲେ, ଯଥା ମିଳେ ତୋହଠାରେ ।
ଉତ୍କଳର ଶୁଦ୍ଧ ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେଥେ ବାଛୁ ତହୁଁ ମଣି,
ସୁଦକ୍ଷ ବଦାନୀ ରଚ ଯେଉଁ ହାର
ଅର୍ପିଲେ ଉତ୍କଳ–ଭାରତୀ ଗଳାର,
ତର ଧନ ତାହା ଗୌରବ ଭୂଚର
ତା’ ଦେଖି ଭାବୁକେ ଲୋଡ଼ିବେ ତୋ’ ଥର ।
ମୁଁ ଅଧମେ ମୋର ଭାବୁକତା କାହିଁ,
ତଥାପି ଏ ପ୍ରାଣ କେଜାଣି କପାଇଁ
ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ
ତେଣୁ ଭାବିଥିଲି ଆସି ତୋର କୂଳେ,
ଦେଖିବି ତୋ’ ଶୋଭା ଧନେ ନିକାଞ୍ଚନେ
କର୍ମ ବିନ୍ଧେ ଥିଲା ମନ କଥା ମନେ;
ଏତେକାଳ ଅନ୍ତେ ପଡ଼ିଥିଲା ଯୋଗ
ଆହା ସେ ସୁଯୋଗ ହେଲା ନାହିଁ ଭୋଗ ।”

* * * * *

ମାତ୍ର ଗୋପବନ୍ଧୁ କାହାକୁ ଘୃଣା ନ କଲେ ସୁଦ୍ଧା ସେ ସମୟର ସ୍କୁଲ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ରାଧାନାଥ ରାୟଙ୍କ ହସ୍ତରେ ପୂର୍ବୋକ୍ତ ‘ଇନ୍ଦ୍ରଧନୁ’ ଲିଖିତ କବିତାଟି ପଡ଼ିବାରୁ ତାଙ୍କୁ କଠୋର ଦଣ୍ଡ ସହ୍ୟ କରିବାକୁ ପଡ଼ିଥିଲା । ସେ କବିତାର ପ୍ରତିବାଦ କରିବାପାଇଁ ରାଧାନାଥ ଗୋପବନ୍ଧୁଙ୍କୁ ଧମକାଇଥିଲେ । ସେଥିରେ ଗୋପବନ୍ଧୁ ନ ମାନିବାରୁ ରାଧାନାଥଙ୍କ ଇଙ୍ଗିତରେ ତାଙ୍କର ଏକବର୍ଷର ପୁରସ୍କାର କଟି ଯାଇଥିଲା । ଏହିପରି ନାନା ଦଣ୍ଡ ନିର୍ଯାତନା ଭୋଗ କରି ଗୋପବନ୍ଧୁ ସାହିତ୍ୟ ଚର୍ଚ୍ଚାରୁ ନିରୁତ୍ସାହ ହୋଇ ନ ଥିଲେ ।

“ଯତ୍ର ଯେନ ଯୁଜ୍ୟତେ ଲୋକେ ବୁଧସ୍ତତ୍ର ତେନ ଯୋଜୟେତ୍ ।” ପୂର୍ବରେ ଦୁଇତିନି ବର୍ଷ ଅଧ୍ୟୟନ କାଳପରେ ଆମ୍ଭମାନଙ୍କର ସ୍ୱର୍ଗୀୟ ମୁକ୍ତାର

ରାମଚନ୍ଦ୍ର ଦାଶଙ୍କ ସହିତ ଗୋପବନ୍ଧୁଙ୍କର ଆଳାପ ହେଲା । ମୁକ୍ତାର ମହାଶୟ କିପରି ଲୋକ ଥିଲେ, ତାହା ବୋଧ ହୁଏ ଓଡ଼ିଶାବାସୀଙ୍କୁ ବୁଝାଇବାକୁ ହେବ ନାହିଁ । ତାଙ୍କର ଦାନଶୀଳତା ଗରିବ ଦରିଦ୍ରମାନଙ୍କ ହୃଦୟରୁ ଲିଭିବ ନାହିଁ । କାହା ଘରେ ଖାଇବାକୁ ନାହିଁ—ସେ ମୁକ୍ତାରଙ୍କ ଦୁଆରେ । କାର ଔଷଧ କିଣିବାକୁ ପଇସା ନାହିଁ—ସେ ରାମଚନ୍ଦ୍ରଙ୍କ ପାଖରେ । କାର ପିନ୍ଧିବାକୁ ଲୁଗା ନାହିଁ—ସେ ରାମ ବାବୁଙ୍କ ନିକଟରେ ଗୁହାରି କରିବ । ସେତିକି ନୁହେଁ, ତାଙ୍କପରି କର୍ମୀ, ସ୍ୱଦେଶବତ୍ସଳ ବୀର ପୁରୁଷ ଉତ୍କଳରେ ବିରଳ । ଉତ୍କଳ ସମ୍ମିଳନୀ, ଉତ୍କଳ—ବ୍ରାହ୍ମଣ-ସମିତିପ୍ରଭୃତି ଜାତୀୟ ଅନୁଷ୍ଠାନମାନ ମୁକ୍ତାର ମହାଶୟଙ୍କୁ ଯୁଗେ ଯୁଗେ ମନେ ରଖିଥିବ । ଏହି ମହାଶୟଙ୍କର ସଂସର୍ଗରେ ଆସି ଗୋପବନ୍ଧୁ ତାଙ୍କର କର୍ମମୟ ଜୀବନକୁ ବିଭିନ୍ନ କର୍ମରେ ନିୟୋଗ କରିଥିଲେ । ଗୋପବନ୍ଧୁଙ୍କର ବିଶ୍ୱବାହା ଏ ମହାଶୟଙ୍କର ପ୍ରେରଣାରେ ବିଶୁଦ୍ଧତର ହୋଇଥିଲା । ଉଭୟେ ଉଭୟଙ୍କୁ ଭ୍ରାତୃତୁଲ୍ୟ ମଣୁଥିଲେ । ସମ୍ମିଳନୀ କାର୍ଯ୍ୟଠାରୁ ଆରମ୍ଭକରି ନାନା ପ୍ରକାର ଦେଶ ହିତକର କାର୍ଯ୍ୟମାନ ଉଭୟେ ମିଳି ଅତି ସୁନ୍ଦରରୂପେ ସଂପାଦନ କରୁଥିଲେ । କେବଳ ସେତିକି ନୁହେଁ; ଅନେକ ସମୟରେ ଛାତ୍ରମାନଙ୍କର ସଦ୍‌ଗୁଣରେ ସ୍କୁଲର ଶିକ୍ଷକମାନେ ସ୍ୱତଃ ଆକୃଷ୍ଟ ହୋଇଥାନ୍ତି । ସେ ସ୍କୁଲରେ ପଢିଲାବେଳେ ପୁରୀର ଶ୍ରୀଯୁକ୍ତ ଦିବ୍ୟସିଂହ ମିଶ୍ର ବି.ଏ. ତାଙ୍କର ଶିକ୍ଷକ ଥିଲେ । ଦିବ୍ୟସିଂହ ବାବୁ ଗୋପବନ୍ଧୁଙ୍କର ସାହିତ୍ୟ ସେବା, ସ୍ୱଦେଶାନୁରାଗ ଓ ନାନା କର୍ମ କ୍ଷେତ୍ରରେ ତାଙ୍କର ପାରଙ୍ଗମତା ଦେଖି ପ୍ରୀତ ହେଉଥିଲେ । ଗୋପବନ୍ଧୁ ମଧ୍ୟ ତାଙ୍କର ପରାମର୍ଶ ଅନୁସାରେ ପଢ଼ାଶୁଣା କରୁଥିଲେ । ଗୋପବନ୍ଧୁ ତାଙ୍କର ଶିକ୍ଷକ ଓ ସହୃଦୟ ବନ୍ଧୁ ଦିବ୍ୟସିଂହ ବାବୁଙ୍କୁ ଏତେ ଭଲ ପାଉଥିଲେ ଯେ, ପରବର୍ତ୍ତୀ ଜୀବନରେ ଜେଲରେ ଥିବା ସମୟରେ ଦିବ୍ୟସିଂହ ବାବୁଙ୍କ ମୃତ୍ୟୁ ସମ୍ବାଦରେ ଦାରୁଣ ବ୍ୟଥା ପାଇଥିଲେ । ଦିବ୍ୟସିଂହବାବୁ ମଧ୍ୟ ମୃତ୍ୟୁ ଶଯ୍ୟାରେ ପଡ଼ିଥିବାବେଳେ 'ଗୋପବନ୍ଧୁଙ୍କୁ ଟିକିଏ ଦେଖିଥାନ୍ତି' ବୋଲି କହି ଦୁଃଖ ପ୍ରକାଶ କରିଥିଲେ ।

ପୁରୀଜିଲା ସ୍କୁଲର ୪ର୍ଥ ଶ୍ରେଣୀରେ ଅଧ୍ୟୟନ କରୁଥିବା ବେଳେ ୧୬ବର୍ଷ ବୟସରେ ଗୋପବନ୍ଧୁଙ୍କର ଗୃହସ୍ଥାଶ୍ରମ ଆରମ୍ଭ ହୋଇଥିଲା। ଅନେକଙ୍କର ଧାରଣା "ବାହାଯାଏଁ ପାଠ" ଅର୍ଥାତ୍ ବିବାହ ସରିଲେ ଲୋକଙ୍କର ଆଉ ପାଠ ପଢ଼ିବାକୁ ମନ ହୁଏ ନାହିଁ। ସେ ଧାରଣା ଗୋପବନ୍ଧୁଙ୍କ ଜୀବନରେ ଦୃଷ୍ଟିଭୂତ ହୋଇଥିଲା। ବିବାହ ହୋଇଥିଲେ ସୁଦ୍ଧା ଗୋପବନ୍ଧୁ ସେଥିରେ ଲିପ୍ତ ରହିବାକୁ ଭଲ ପାଉ ନ ଥିଲେ। କଲେଜକୁ ଯିବା ପୂର୍ବରୁ ତାଙ୍କୁ ପିତୃବିୟୋଗ ଦୁଃଖ ସହିବାକୁ ପଡ଼ିଥିଲା। ବଡ଼ଭାଇ ନାରାୟଣ ଆଗରୁ ଗୃହ କାର୍ଯ୍ୟର ଭାର ଗ୍ରହଣକରି ଥିବାରୁ ଏହାଙ୍କୁ ଗୃହ-ଧନ୍ଦାରେ ଆଉ ପଶିବାକୁ ହୋଇ ନ ଥିଲା। କଲେଜ ପାଠପଢ଼ା ଖର୍ଚ୍ଚ ଚଳାଇବାକୁ ତାଙ୍କ ଭାଇନା ଅକୁଣ୍ଠିତ ଚିତ୍ତରେ ସମ୍ମତି ଦେଇଥିଲେ।

[୪]

୧୮୯୯ ମସିହାରେ ଗୋପବନ୍ଧୁ ପୁରୀଜିଲାସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ କଟକ ରେଭେନ୍‌ସା କଲେଜରେ ନାମ ଲେଖାଇଲେ। ଛାତ୍ରାବସ୍ଥାରେ ସେ ଦେଶର ନାନା କାର୍ଯ୍ୟରେ ବ୍ୟାପୃତ ଥିଲେ ସୁଦ୍ଧା ନିଜର ପଢ଼ାପଢ଼ିରେ ଅବହେଳା ପ୍ରକାଶ କରୁ ନ ଥିଲେ। ଶ୍ରେଣୀରେ ଅନ୍ୟାନ୍ୟ ସଙ୍ଗୀମାନଙ୍କପରି ସେ ପାଠପଢ଼ାରେ ସମସ୍ତ ସମୟ ବ୍ୟୟ କରୁନଥିଲେ। ତଥାପି ଶ୍ରେଣୀରେ ସର୍ବଦା ଉଚ୍ଚତର ଆସନ ରଖିପାରୁଥିଲେ। ପ୍ରତି ସପ୍ତାହର ଶନିବାର ଦିନ କେତେକ ଯୁବକଙ୍କୁ ଡକାଇ ଏକତ୍ରିତ କରୁଥିଲେ। ସେଥିରେ ବିବିଧ ବିଷୟ-ମାନ ଆଲୋଚନା କରାଯାଉଥିଲା। ତଦ୍ୱାରା ସମସ୍ତେ କହିବୋଲି ପାରିବାକୁ ସୁବିଧା ପାଉଥିଲେ। ଅନେକ ସମୟରେ କଲେଜର ଅଧ୍ୟାପକ ଓ ସ୍କୁଲର ଶିକ୍ଷକ ମାନଙ୍କୁ ସେହି ଆଲୋଚନା ସଭାକୁ ନିମନ୍ତ୍ରଣ କରି ଜଟିଳ ପ୍ରଶ୍ନମାନ ସମାଧାନ କରୁଥିଲେ। ନିଜର ମନୋମତ ସଙ୍ଗୀ ତାଙ୍କ ନିକଟକୁ ଆସିଲେ ସେ ପାଠପଢ଼ା କଥା ଚର୍ଚ୍ଚା ନ କରି ଦେଶର ଦୁଃଖ ଦୁର୍ବିପାକରେ ମର୍ମାହତ ହୋଇ ପ୍ରତିକାରର ଉପାୟ ବିଚାରୁଥିଲେ। କଟକ କଲେଜରେ ପଢ଼ିଲା ବେଳେ ତାଙ୍କର ପ୍ରିୟ ସୁହୃଦ୍ ବ୍ରଜସୁନ୍ଦରବାବୁ ଓ ହରିବାବୁ (ଆଚାର୍ଯ୍ୟ

ହରିହର ) ଙ୍କୁ ସଂଗରେ ନେଇ ରୋଗୀର ସେବା, ଦରିଦ୍ର ଗୃହମାନଙ୍କ ପାଇଁ ପାଣି ଯୋଗାଡ଼ ପ୍ରଭୃତି ଦେଶହିତକର କ୍ରିୟାମାନ ସମ୍ପନ୍ନ କରୁଥିଲେ । ଏହିପରି ନାନା କାର୍ଯ୍ୟରେ ବ୍ୟାପୃତ ରହି ସନ ୧୯୦୬ ମସୀହାରେ ସେ ଏଫ୍: ଏ: ପାସ୍ କଲେ । ତାଙ୍କର ସ୍କୁଲ ସମୟ ମଧ୍ୟରେ ଓ ପ୍ରଥମ କଲେଜ ଜୀବନରେ ସେ ଯେପରି ସାହିତ୍ୟଚର୍ଚ୍ଚା କରୁଥିଲେ, ତାହା କାହାରିକୁ ଅବିଦିତ ନାହିଁ । ସ୍କୁଲ ଓ କଲେଜରେ ଲେଖିଥିବା କବିତାମାନ ଅନେକ ଥର ଦଣ୍ଡ ନର୍ଯ୍ୟାତନା ସହି ନଷ୍ଟ କରି ପକାଇଥିଲେ ସୁଦ୍ଧା ସାହିତ୍ୟ ସେବା ଗ୍ରୁଡ଼ି ପାରି ନ ଥିଲେ । ସ୍କୁଲ ସମୟରେ ଲେଖିଥିବା ସମସ୍ତ ପଦ୍ୟ ତାଙ୍କର 'ଅବକାଶଚନ୍ତା' ବା ଅବକାଶ ସମୟରେ ଲିଖିତ । ଏହିପରି ଖଣ୍ଡିଏ ପୁସ୍ତକ ୧୮୯୯ ମସୀହାରେ ସେ ଲେଖିଥିଲେ । ତାହା 'କର୍ତ୍ତବ୍ୟ ବୋଧିନୀ ସମିତି'ର ପ୍ରଥମ ବାର୍ଷିକ ମହୋତ୍ସବ ଉପଲକ୍ଷେ ପ୍ରକାଶିତ ହୋଇଥିଲା । କଟକରେ ଏହି 'କର୍ତ୍ତବ୍ୟ ବୋଧିନୀ ସମିତି'ର ସେ ପ୍ରଧାନ ପ୍ରତିଷ୍ଠାତା ଓ ପରିଚାଳକ ଥିଲେ । ଏହି ସମିତିର ଆବେଦନ ଫଳରେ ସେ କାଳର କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆଭାଷା କଲେଜ ପରୀକ୍ଷାରେ ଗୃହୀତ ହୋଇଥିଲା । ପୂର୍ବୋକ୍ତ 'ଅବକାଶ ଚନ୍ତା'ରେ ସେ ପ୍ରଥମେ 'କବିତା ଦେବୀ' ନାମକ କବିତାଟି ଲେଖିଛନ୍ତି । ଉକ୍ତ କବିତା ଆଗରୁ ଦୁଇଥର ବିନଷ୍ଟ ହୋଇଥିଲା । ସେହିଯୋଗେ 'ଅବକାଶଚନ୍ତା' ପୁସ୍ତକରେ ଦୁଃଖ ପ୍ରକାଶକରି ଲେଖିଛନ୍ତି;—

* * * * * *

"ରଜୋଗୁଣମୟି ଦେବି ବାଣୀସ୍ୱରୂପିଣି !
ନାନା ଭାବେ ନାନା ସ୍ଥାନେ ହୁଏ ତୋ ପ୍ରକାଶ,
ଏ ମୂଢ଼ ଅଙ୍କାନେ ଦୟା କର ଗୋ ଭାବିନ !
ବହୁବାର ଯହେ ଯେଣୁ ହୋଇଛୁ ନିରାଶ ।"

କଲେଜକୁ ଆସି ମଧ ସେ ବାଣୀପୂଜାରୁ ବିରତ ନ ଥିଲେ । କଲେଜର ପ୍ରଥମ ଶ୍ରେଣୀରେ ଅଧ୍ୟୟନ କଲାବେଳେ କାର୍ତ୍ତିକପୂର୍ଣ୍ଣିମା ଦିନ ମହାନଦୀ

କୂଳରେ 'ବାଲିଯାତ୍ରା' ଦର୍ଶନ କରିବାକୁ ଯାଇ ବାଲିଯାତ୍ରାର ସଙ୍କୀର୍ତ୍ତନ ମଣ୍ଡଳରେ ପ୍ରାଣ ନ ଥିଲାପରି ଜଣା ପଡ଼ିବାରୁ ସେ ମହାନଦୀ କୂଳରେ ବସି ଗାଇଛନ୍ତି;—

* * * * * *

"ଶୁଣି ଏହି ସଙ୍କୀର୍ତ୍ତନ ନାଚେ ନାହିଁ ପ୍ରାଣ,
ଝଙ୍କାରିତ ନୁହେ ହୃଦ ଶୁଣି ଏହି ଗାନ
ଅନ୍ତରେ ଘଟରେ ନାହିଁ ଲବେ ଧର୍ମଭାବ,
କେ କହିବ ଏ ସଂଗୀତେ ଅଛି କି ଅଭାବ ?
ଏହି ତ ସେ ମହାନଦୀ, ଯାହାର ପୁଲିନେ,
ଏହି ତ ସେ ବାରବାଟୀ, ଯହିଁ ଆହା ଦିନେ
ବାଜି ଭେରୀ ତୂରୀ ଶିଙ୍ଗା ଘୋର ଘନ ଘୋଷେ
ଉତ୍ତେଜିଲା ପ୍ରତିପ୍ରାଣ ସାହସେ ସରୋଷେ ?
ବିପୁଳ ବିକ୍ରମ ସ୍ରୋତେ ପ୍ରତି ହୃଦ ସ୍ଥଳୀ
ପ୍ଲାବି ଦେଶହିତେ ଦେଲା କେତେ ଆତ୍ମବଳି ।
ମେ ଦିନର ତେଜଃପୁଞ୍ଜ ଉତ୍ସାହ ଶକତି
ସ୍ୱଦେଶ ସ୍ୱଧର୍ମପ୍ରତି ଅଟଳ ଭକତି
ଭସି ଯାଇଅଛି ସିନା ସମୟ ତରଙ୍ଗେ
ଭସିଯାଏ ଫେନ ଯଥା ମହାନଦୀ ଅଙ୍ଗେ ।

* * * *

ତେବେ କିପାଁ ବାରବାଟୀ ହେବ ଆଶାହୀନ ?
ତେବେ କିପାଁ ବାରବାଟୀ ବଦନ ମଳିନ ?
ଢାଳିଦିଅ ସୁଧାକର ଦିବ୍ୟ ସୁଧାଝର,
ଉଠୁ ମହାନଦୀ ବକ୍ଷେ ଉତ୍ତୁଙ୍ଗ ଲହରି;
ଧୋଇ ବାରବାଟୀ ମୁଖ କରୁ ସମୁଜ୍ଜ୍ୱଳ,
ଶୁଭ ଧର୍ମମଧ୍ୟେ ସର୍ବେ ହୁଅନ୍ତୁ ବିହ୍ୱଳ;

ସତରୁ ଏ ସଂସାର୍ରେ ପତନ ଉଚ୍ଛ୍ୱାସ,
କର୍ମ୍ମବୀର ଧର୍ମ୍ମବୀର ହୁଅନ୍ତୁ ପ୍ରକାଶ ।”

ତାଙ୍କର ନୂତନ କଲେଜ ଜୀବନରେ କଟକର ବିଭିନ୍ନ ସ୍ଥାନ ଦର୍ଶନ କରି ବିଭିନ୍ନ କବିତାମାନ ଲେଖୁଥିଲେ । ବିଂଶ ଶତାବ୍ଦୀର ପ୍ରଥମଦିନ ସେ ବାର-ବାଟୀ ଦର୍ଶନ କରିବାକୁ ଯାଇ “ବିଂଶଶତାବ୍ଦୀର ପ୍ରଥମଦିନ ବାରବାଟୀ ଦର୍ଶନ” ନାମକ କବିତା ଲେଖିଛନ୍ତି । ସେଥିରେ ସେ ଊନବିଂଶ ଶତାବ୍ଦୀରେ ଉତ୍କଳ ତଥା ଭାରତର ଦୁର୍ଦ୍ଦଶା ବର୍ଣ୍ଣନା କରି ଦୁଖ ପ୍ରକାଶ କରିଅଛନ୍ତି ଏବଂ ବିଂଶ ଶତାବ୍ଦୀକୁ ଆହ୍ୱାନ କରି ଭାରତରେ ନବଯୁଗ ଆଣିବାପାଇଁ ବିଭୁପାଶରୁ ସୁଷମାଭର ଆଣି ଏ ସଂସାରରେ ପ୍ରଚୁର କରିବାପାଇଁ ଏବଂ ନନ୍ଦନ ବନରୁ ସ୍ୱର୍ଗୀୟ କୁସୁମ ଆଣି ଭାରତ ମାତାଙ୍କୁ ବିଭୂଷିତ କରିବାପାଇଁ ସାଦର ସମ୍ଭାଷଣ କରି ଅଛନ୍ତି । ସେ ଲେଖିଛନ୍ତି;—

* * * * * *

“ଏହି ଯେ ସମ୍ମୁଖେ ବାରବାଟୀ ପଦା,
ଭାଙ୍ଗିଅଛି ଯହିଁ ଲକ୍ଷ ଲକ୍ଷ ଗଦା,
ଥିଲା ଯେଉଁ ବୀର ବିହାର ପ୍ରାଙ୍ଗଣ,
ଭ୍ରମେ ତହିଁ ଆଜ ଶ୍ୱାନ ଶିବାଗଣ
ଶୁଭ୍ର ଶୈଳସମ ବିଶାଳ ସଉଧ,
ଶିର ଟେକି ଦିନେ ଭେଦଣ ବାରିଦ,
ଗମ୍ଭୀର ଗରବେ ହୋଇଥିଲା ଠିଆ,
ଦେଖି ଯାହା ଥରୁଥିଲା ଶତ୍ରୁ ହିଆ ।
ଆହା ଏବେ ତହିଁ ସ୍ତୂପାକାରେ ମାଟି,
ବିଲୋକି ହୃଦୟ ଯାଏ ସିନା ଫାଟି !
ଥିଲା ଯହିଁ କାଳେ ଗମ୍ଭୀର ପରିଖା,
ଟେକିଛି କୋମଳ ଶସ୍ୟ ତହିଁ ଶିଖା ।
ନାହିଁ ସେ କମାଣ ଅଶନି ଶବଦ

ଶୁଣି ଯାହା ଶତ୍ରୁ ଶ୍ରବଣ ସ୍ତବଧ ।
ଖରମଲ୍ଲାରେକା ବାଜା ନାହିଁ ଆଜ,
କାହିଁ ସେ ଅଦମ୍ୟ କଣ୍ଠ ବାଜରଜ ?
ହେ କାଳ ତୁମ୍ଭର ଗର୍ଭେ ସବୁ ଲୀନ,
ସୁଭଗା ଉତ୍କଳ ଆଜ ଦୀନହୀନ ।
ହେ କାଳ ତୁମ୍ଭର ଅଟଳ ଆଦେଶେ
ଘୋଟିଛି ଦୁର୍ଗତି ଏ ଉତ୍କଳ ଦେଶେ ।

* * * * *

ମହାବଳୀ ଧନ୍ୟ ଧନ୍ୟ ତୁମ୍ଭେ କାଳ
କେ ଲଂଘିବ ତୁମ୍ଭ ତୀକ୍ଷ୍ଣ କରବାଳ ?
ଥିଲା ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ରୋଷ,
ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ଗୁରୁ ଭାର ।
ଏଣିକି କରୁଣା ଅଟଇ ବହିତ
ସାଧ ନବଯୁଗ ଉତ୍କଳର ହିତ ।
ଉତ୍କଳ ତନୟେ ଦିଅ ନବବଳ,
ଉତ୍କଳ ପାଦପେ ରସମୟ ଫଳ,
ଉତ୍କଳ ସରିତେ ପବିତ୍ର ଜୀବନ,
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ,
ଉତ୍କଳ ଆକାଶେ ନବ ଯଶଃରବି,
ଉତ୍କଳ ପ୍ରକୃତି ଧରୁ ନବ ଛବି ।"

ଏହିପରି ଅନେକ କବିତା ସେ ପ୍ରଥମବର୍ଷୀୟ ଶ୍ରେଣୀରେ ପଢୁଥିଲା ବେଳେ ଲେଖିଥିଲେ । ସେ ସମସ୍ତର ପରିଚୟ ଦେବା ଏ ପୁସ୍ତକରେ ଅସମ୍ଭବ । ତେବେ ତାହାଁରୁ କେତୋଟି ହୃଦୟର ଆବେଗରେ ଏଠାରେ ଦ

ଦେଇ ରହିପାରୁ ନାହାନ୍ତି । ଏଫ୍, ଏ, ପରୀକ୍ଷା ଦେଇ କାଠଯୋଡ଼ୀର ପଥର ବନ୍ଧ ଉପରେ ଏକାନ୍ତରେ ବସି "କଟକର ଶିଳାସେତୁ" କବିତାଟି ଯେ ଲେଖିଛନ୍ତି ;—

"ସୁଦୃଢ଼ ସୁନ୍ଦର ଆରେ ଶିଳା ସେତୁ
ରହିଛୁ କଟକ ନଗର ତୋ' ହେତୁ ।
ପ୍ରକୃତ ପ୍ରଭାବେ ଦେଖାଇ ଭ୍ରୂକୁଟି
କାଳବଳେ ଅଙ୍ଗ ଯାଇ ନାହିଁ ତୁଟି ।
ତରଙ୍ଗ ପ୍ରହାର ସହୁ ଅନୁକ୍ଷଣେ,
ଶ୍ରମ ହରୁ ନଦୀ ଶୀତଳ ପବନେ ।
ଉଚ୍ଚା ହୋଇଅଛୁ ସୁଗମ୍ଭୀର ଦମ୍ଭେ
ସାଜେ ବୃଦ୍ଧ ବପୁ ଯୌବନ ପ୍ରାରମ୍ଭେ ।
କୋମଳ ଶୈବାଳ ଦଳେ କି ସୁନ୍ଦର
ତୋର ଶିଳାମୟ ବୃଦ୍ଧ କଳେବର !
ହେ ପ୍ରାଚୀନ ସେତୁ କରୁଛୁ ଦର୍ଶନ
କଟକ ନଗର ଉତ୍ଥାନ ପତନ ।
ତୁ ଅଟୁ କଟକ ଇତିହାସ ଜ୍ଞାତା
ଫେଡ଼ି କହ କିଛି ଅତୀତର ଗାଥା ।
କେଶରୀ ବଂଶର ଶେଷ ରାଜଗଣ
କଲେ ଯେବେ ଏହି ନଗର ସ୍ଥାପନ ।
କି ଉତ୍ସାହେ କହ ଏ ଉତ୍କଳ ଜାତି
ଦେଶହିତ ବ୍ରତେ ଉଠିଥିଲେ ମାତି ।
ମହାପରାକ୍ରମୀ ରାଜା ସ୍ୱୈରଗଙ୍ଗ
ତୋର ତଳପାଶେ କଲେ ଯୁଦ୍ଧ ରଙ୍ଗ ।
ଦେଖିଛୁ ସେଦିନ ଉତ୍କଳ ବିକ୍ରମ
ଉତ୍କଳବାସୀର ପ୍ରାଣାନ୍ତକ ଶ୍ରମ ।
ବାରବାଟୀ ଚଉଦୁଆର ବିନଷ୍ଟ

ଦେଖି ଆଜ ମନେ ନ ପାଅ କ କଷ୍ଟ ?
ଆନ ମିଳେ ଯେବେ ଦୁର୍ଦ୍ଧର୍ଷ ଯବନ
ବର୍ଷିଲ୍ଲ କମାଣ ଗୁଳା ଅଗଣନ ।
ନଜ ବକ୍ଷେ ସବୁ ସହ୍ୟ ଅକାତରେ
ସହଜେ ପଶ୍ଚିଲ ନ ଦେଲ୍ଲ ନଗରେ ।
ସେ ଆଘାତ ଚହ୍ନ ଥିବ ଆଜଯାଏ
ସ୍ଥାନେ ସ୍ଥାନେ ତୋର ସୁବଶାଳ କାୟେ ।
ଆଜଯାଏ ଯେତେ ଏପର ଯନ୍ତ୍ରଣା
ଅନୁଭବେ ସବୁ ଅଛୁ ତୋତେ ଜଣା ।
କହ କହ ସେରୁ, ସମସ୍ତ ବୃତ୍ତାନ୍ତ
ଶୁଣନ୍ତୁ ଉତ୍କଳେ ସର୍ବ ନରନାରୀ ।
ସ୍ଥାନବଳ ଏବେ ଉତ୍କଳ ସନ୍ତାନ
ହୋଇ ଅଛନ୍ତ ଆତ୍ମଶକ୍ତି ହୀନ ।
ଜାଣିବେ ତା'ଶୁଣି ପୂର୍ବବଡ଼ପଣ
ସାଧୁ ଅନୁଷ୍ଠାନେ ଦେବେ ପ୍ରାଣମନ ।

ଆଜନ୍ମରୁ ମାତୃବିୟୋଗ, କଲେଜକୁ ଆସିବା ପୂର୍ବରୁ ପିତୃବିୟୋଗ ଏବଂ କଲେଜରେ ପଢୁଥିବାବେଳେ ସନ୍ତାନମାନଙ୍କ ବିୟୋଗରେ ଏତେଦୂର ବ୍ୟସ୍ତ-ବ୍ୟଥିତଚିତ୍ତ ହୋଇଥିଲେ ଯେ ବି, ଏ, ପଢିବାପାଇଁ ତାଙ୍କର ଆଦୌ ଇଚ୍ଛା ନଥିଲା । ମାତ୍ର ବଡ଼ଭାଇଙ୍କର ଓ ସଙ୍ଗୀମାନଙ୍କର ଅନୁରୋଧ କ୍ରମେ ବି, ଏ, ଶ୍ରେଣୀରେ ନାମ ଲେଖାଇଲେ । ନାନାପ୍ରକାର ଦେଶଚନ୍ତା ସଙ୍ଗେ ସଙ୍ଗେ ଏହିପରି ଶୋକାତୁର ହୋଇ ସେ ନାମ ଲେଖାଇଥିଲେ ସୁଦ୍ଧା ପାଠପଢ଼ା ଗ୍ରନ୍ଥ ଅନ୍ୟମନସ୍କ ହେଉଥିଲେ । ସେଥିଯୋଗୁଁ ପ୍ରଥମବର୍ଷ ବି. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ । କୃତକାର୍ଯ୍ୟ ହୋଇ ନ ପାରିଲେ ବୋଲି ଗୋପବନ୍ଧୁଙ୍କ ମନରେ ଟିକିଏମାତ୍ର କଷ୍ଟ ନ ଥିଲା । ଦେଶର ଦୁଃଖ ଦୁର୍ବିପାକ ତାଙ୍କ ଆଖିଆଗରେ ସର୍ବଦା ନାଚୁଥାଏ । କେଉଁଠାରେ କିଏ ଖାଇବାକୁ ପାଉ ନାହିଁ, କେଉଁଠାରେ କିଏ ଟିକିଏ ଔଷଧ ନପାଇ ରୋଗରେ ମରୁଚ, ଏହି ଚନ୍ତା,

ଏହି ଯନ୍ତ୍ରଣା ତାଙ୍କ ମନକୁ ସର୍ବଦା ଆଲୋଡ଼ିତ କରୁଥାଏ । ଫେଲ୍ ହେଲା-ବେଳେ କିଏ କେତେ ପ୍ରକାର ଦୋଷାରୋପ କରେ । କିଏ କହିଲା—"ପଢ଼ିଲା ନାହିଁ ।" କିଏ କହିଲା—"ଦେଶକୁ ଏଇ ଠେକ ଧରିବ" ଇତ୍ୟାଦି । ଏହିପରି ଦୁଃଖରେ ଥାନ୍ତି । ଜୀବିତ ଥିବା ଏକମାତ୍ର ପୁତ୍ରର ବିୟୋଗ ବାର୍ତ୍ତା ବି: ଏ: ପରୀକ୍ଷା ଦେବା ପୂର୍ବରୁ ସେ ପାଇଥିଲେ । ସେ ଦୁଃଖ ଉପରେ ଦାରୁଣ ଦୁଃଖ ଭୋଗକରି ପରୀକ୍ଷା ପାଇଁ ଯେ କିପରି ପ୍ରସ୍ତୁତ ହୋଇଥିବେ, ତାହା ସହଜରେ ଅନୁମେୟ । କଲେଜ ଛାଡ଼ିବା ପୂର୍ବରୁ ସେ 'ରେଭିନ୍‌ସା କଲେଜରୁ ବିଦାୟ' ନାମକ କବିତାରେ ପୁତ୍ରଶୋକରେ ବ୍ୟଥିତ ହୋଇ ଲେଖିଛନ୍ତି ;—

" ସତେ ଆଜ ଜନନି, ଏ ଅଧମ ତନୟ
ସଂସାର ଯନ୍ତ୍ରଣା ବଳେ
ଭାସି ଶୋକ ଦୁଃଖଜଳେ
ଛାଡ଼ିଲା ରୁମ୍ଭର ସ୍ନେହ ଅଙ୍କ ମଧୁମୟ
ନିଃସହାୟେ ଲୋଡ଼େ ଏବେ ସଂସାରେ ଆଶ୍ରୟ ।

ଆହୁରି ମଧ୍ୟ ତାଙ୍କର "ଛବିଶ ବର୍ଷ ପ୍ରବେଶେ" ନାମକ କବିତାରେ ନିଜକୁ ସାନ୍ତ୍ୱନା ଦେଇ ସାଧନାରେ ଶକ୍ତି ପାଇବା ଲାଗି ଦୟାମୟଙ୍କୁ ଡ଼ାକିଛନ୍ତି ;—

"ଅଲକ୍ଷିତେ ନିଶିଦିବେ ଆହା କି ବେଗରେ
ବହି ଯାଉଅଛି କାଳ ନିରପେକ୍ଷ ନଦୀ,
ଅସଂଖ୍ୟ କଳ୍ପନା-କଳା ରହିଛି ଅନ୍ତରେ
ବିକଶିତ ହୋଇନାହିଁ ଗୋଟିଏ ଅବଧି,
ପଚିଶ ଛବିଶ ବର୍ଷ ହେଲା ଏବେ ଗତ
ପଛକୁ ଚାହିଁଲେ ହୃଦ ଆହା କି ବିକଳ,
ଅତୀତ କେବଳ ମୋର ରୁକ୍ଷ ସଇକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ,
ଏ ବିଦରି ନାବି ଆଜି ଜୀବନ ସରିତେ

ବହିବ ବା କେତେଦିନ ବହିଣୀ ବକ୍ଷରେ ?
ମଧ୍ୟାହ୍ନେ ପ୍ରଦୋଷ ତନ୍ଦ୍ରା ପଡ଼ଇ ମୋ ଚକ୍ଷେ
ମୋ' ଆଶା ମୁକୁଳ ଗୁଚ୍ଛ ବସନ୍ତେ ମଳିନ,
ଧର୍ମ୍ମ ଅନୁକୂଳ ଯେବେ ମୋ' କାମନାଚୟ
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।"

ଏତେଦୂର ଶୋକାଭିଭୂତ ହୋଇଥିଲେ ସୁଦ୍ଧା ସେ ବିଚଳିତ ହୋଇ ନଥିଲେ । ଧୀର ସ୍ଥିର ଭାବରେ ରହି ୧୯୦୪ ମସିହାରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ବି:ଏ: ପାସ୍‌କରି ଗୋପବନ୍ଧୁଙ୍କର ଉପରକୁ ପଢିବାକୁ ଆଉ ମନ ବଳିଲା ନାହିଁ । ପରଦ୍ୱାରରେ ଚାକିରି କରିବା ମଧ୍ୟ ତାଙ୍କର ଉଦ୍ଦେଶ୍ୟ ନ ଥିଲା । ତେଣୁ ସେ ସ୍ୱାଧୀନ ଜୀବନ କଟାଇବେ ବୋଲି ଭାବି କଲିକତାରେ ଓକାଲତି (ବି.ଏଲ୍.) ପଢିବାର ସ୍ଥିର କଲେ । ଇତି ମଧ୍ୟରେ କଟକ ଅବସ୍ଥାନ କାଳରେ ସେ ନିଜର ସହାଧ୍ୟାୟୀମାନଙ୍କ ସହିତ ନାନା ଇତିହାସ-ପ୍ରସିଦ୍ଧ ସ୍ଥାନମାନ ଦର୍ଶନ କରିଥିଲେ । "ଖଣ୍ଡଗିରି ଶିଖରେ" ନାମକ କବିତାରେ ଖଣ୍ଡଗିରିର ଶୋଭା ବର୍ଣ୍ଣନା କରି ବୌଦ୍ଧତାପସମାନଙ୍କର ବିହାର କନ୍ଦରମାନ ସନ୍ଦର୍ଶନ କରି ସେ ଲେଖିଛନ୍ତି ;—

* * * *

"ଅହୋ ! ବୃଦ୍ଧ ଖଣ୍ଡଗିରି ପୁରାଣ ପ୍ରବୀଣ
ଦେଖିଅଛ ଉତ୍କଳର କେତେ ଶୁଭଦିନ ।
ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା, ବିଭବ,
ସାହସ, ବିକ୍ରମ, ଧୈର୍ଯ୍ୟ, ଜାତୀୟ ଗରବ,
ଉତ୍କଳର କେତେ ଗୌରବ କାହାଣୀ
ଅତୀତ ଘଟଣା ଦେଖି ସବୁଅଛ ଜାଣି,

* * * *

ବୌଦ୍ଧ ମହାଧର୍ମ୍ମ ଏଥି ସାମ୍ୟ ମୈତ୍ରୀଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ

ଧର୍ମେ ଧର୍ମେ କପାଁ ଦ୍ୱେଷ ବାଦ ଅହଙ୍କାର
ଅଗତ ଉତ୍କଳ ଆହା କ ମହା ଉଦାର ।

ଧନ୍ୟ ଲଲାଟେନ୍ଦୁ ଧନ୍ୟ କେଶରୀପୁଙ୍ଗବ
ଉତ୍କଳର ପୁଣ୍ୟଶ୍ଳୋକ ଅମର ଗୌରବ

ଶୌର୍ଯ୍ୟ, ବୀର୍ଯ୍ୟ, କଳା, କାବ୍ୟ, ଧନ, ଜ୍ଞାନ, ମାନ
ଥିଲା ଯାହା ସୁଶାସନ ପବିତ୍ର ବିଧାନ

କହୁ ତାଙ୍କ କଥା ତାଙ୍କ ରାଜ୍ୟ ସମାଚାର
ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।”

ଏବଂ “ନଗର ଦର୍ଶନ” ନାମକ ପଦ୍ୟରେ ‘ନଗର’ ପାହାଡର ଶୋଭା ବର୍ଣ୍ଣନା କରି ନଗର ବନ୍ଧୁମାନଙ୍କୁ ସମ୍ବୋଧନ କରି ଲେଖିଛନ୍ତି;—

ସତ୍ୟ ଶାନ୍ତି ସୁଖ ସଦା ମାନବ ଜୀବନ
ଖୋଜଇ ବ୍ୟାକୁଳେ ବ୍ୟସ୍ତ ସଂସାର ଗହନେ
ମିଳିଲେ ଏପରି ସ୍ଥାନ କେବେ ଭାଗ୍ୟ ବଳେ
ଅପସରେ କ୍ଷଣେ ଭବ ଦାରୁଣ କଷଣ ।
ସଦ୍ୟସ୍ନାତ ଏହୁ ଛବି ଶୁଦ୍ଧ ଘନ ଜଳେ
ଅସ୍ତମିତ ରବିକରେ ଦ୍ୱିଗୁଣ ଉଲ୍ଲାସେ
ହରିତେ ଶ୍ୟାମଳ ଶସ୍ୟ କ୍ଷେତ୍ର ଚଉପାଶେ,
ହରଷେ ସକଳ ନଗାବକ୍ଷେ ପ୍ରତିଫଳେ ।
ଶଇଳ ଶିଖରେ ଶୋଭେ ଶୁଭ୍ର ସିଦ୍ଧାଳୟ
ସମଗ୍ର ଶ୍ୟାମଳ ଦୃଶ୍ୟ ମଧ୍ୟେ କି ରୁଚିର
ନୀଳ ମେଘେ ଯଥା ପୂର୍ଣ୍ଣ ଚନ୍ଦ୍ରମା ଉଦୟ ।
ଶିବ ସଙ୍ଗ ବଶେ ଶାନ୍ତି ଅଧିକ ଗମ୍ଭୀର
ଦେଖି ଦେଖି ବନ୍ଧୁଗଣ ପୂରିଇ ନୟନ
ଏ ଯୋଗ ଜୀବନେ ଘଟେ ଅତି ଅଳ୍ପକ୍ଷଣ ।

୧୯୦୫ ମସିହାରେ ସେ ଆଇନ(Law) ପଢ଼ିବାପାଇଁ କଲିକତା ଗମନ କଲେ । କଲିକତା ଅବସ୍ଥାନ ସମୟରେ ସେ ସର୍ବଦା ଓଡ଼ିଶାର ଉନ୍ନତି ଚିନ୍ତା କରୁଥାନ୍ତି । ଓଡ଼ିଶାରୁ ଦୂରରେ ରହି ନିଜ ଆଖିରେ ସବୁ ଦେଖି ନ ପାରିଲେ ସୁଦ୍ଧା ସଙ୍ଗୀମାନଙ୍କଠାରୁ ନିୟମିତ ପତ୍ର ଏବଂ ଓଡ଼ିଶାର ନାନା ସମ୍ବାଦପତ୍ରରୁ ଓଡ଼ିଶାର ଖବର ସଂଗ୍ରହ କରୁଥିଲେ । ସେତେବେଳେ କଲିକତାରେ ରହି ଓଡ଼ିଆ କୁଲି ଓ ଓଡ଼ିଆ ବ୍ରାହ୍ମଣ ପାଚକଙ୍କ ଅବସ୍ଥା ଦେଖି ତାଙ୍କ ଆଖିରୁ ଲୁହ ଗଡ଼ୁଥିଲା । ସେ ସର୍ବଦା ବିଚାର କରୁଥିଲେ, ସେମାନଙ୍କୁ କପରି କଷ୍ଟରୁ ରକ୍ଷା କରିବେ । ସେଠା ଓଡ଼ିଆ କୁଲିମାନଙ୍କ ମଧ୍ୟରେ ଏକତା କପରି ଆସିବ ଏବଂ ସେମାନେ ସଂଘବଦ୍ଧ ଉଦ୍ୟମରେ କାର୍ଯ୍ୟ କରି କପରି ଅନ୍ୟମାନଙ୍କ ଦ୍ୱାରା ବିଦେଶରେ ଲାଂଛିତ, ଘୃଣିତ ଓ ଅପମାନିତ ନ ହେବେ, ଏଥିପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ଏହି ସମୟରେ ତାଙ୍କ ଜୀବନର ସଖା ଓ ପ୍ରେରକ ଅଭେଦାତ୍ମା ବନ୍ଧୁ ରାମଚନ୍ଦ୍ର ଦାଶ ମୁକ୍ତାରଙ୍କର ପରଲୋକ ହେଲା । ସେଥିରେ ସେ ଅତିଶୟ ମର୍ମାହତ ହୋଇଥିଲେ । ତାଙ୍କଠାରୁ ଉପଦେଶ ପାଇବାପାଇଁ ଓ ତାଙ୍କସଙ୍ଗରେ ଭବିଷ୍ୟତ ଜୀବନରେ ଆଉ କିଛିଦିନ କଟାଇବାପାଇଁ ଯେଉଁ ଆଶା ସେ ପୋଷିଥିଲେ ତହିଁରେ ବ୍ୟାଘାତ ପଡ଼ିଲା । ଏହିପରି ସୁଖେ ଦୁଃଖେ କଲିକତାରେ ଦୁଇବର୍ଷ କାଳ କାଟି ୧୯୦୭ ମସିହାରେ ବି. ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏହିଠାରେ ତାଙ୍କର ଦୁଇଗୋଟି ଜୀବନର ସମାପ୍ତି—ଛାତ୍ରଜୀବନ ଓ ଗାର୍ହସ୍ଥ୍ୟ ଜୀବନ । ଜନ୍ମସମୟରୁ ତାଙ୍କର ପରପାଇଁ ଜନ୍ମ, ଏହା ସମସ୍ତେ ଜାଣନ୍ତି । ବର୍ତ୍ତମାନ ଛାତ୍ରଜୀବନ ସଙ୍ଗେ ସଙ୍ଗେ ଗାର୍ହସ୍ଥ୍ୟ ଜୀବନ ଶେଷ କରି କପରି ଦେଶପାଇଁ ଆତ୍ମୋତ୍ସର୍ଗ କରିବେ, ଏହି ବିଧିପ୍ରେରଣା ବି.ଏଲ୍. ପରୀକ୍ଷା ପାସ୍ ଖବର ପାଇଲାଦିନ ସେ ପାଇଥିଲେ । ପରୀକ୍ଷା ପରେ କଟକରେ ରହି ପରୀକ୍ଷାଫଳ ଅପେକ୍ଷାରେ ଥାନ୍ତି; ଦିନେ ଏକ ମୁହୂର୍ତ୍ତରେ ବି. ଏଲ୍. ପରୀକ୍ଷା ପାସ୍ ଖବର ଓ ପତ୍ନୀବିୟୋଗ ବାର୍ତ୍ତା ପାଇଥିଲେ । ସେ ମୁହୂର୍ତ୍ତ ତାଙ୍କ ପ୍ରତି କି ଭାବ ଜନ୍ମାଇଥିବ ଠିକ୍ କରି କହି ହେଉ ନାହିଁ । "ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି" ମଧ୍ୟରୁ ତାଙ୍କ ମନର ଭାବ ଜଣାପଡ଼େ;—

"ପ୍ରଣୟର ସୁହାସ ଲୋଚକ
ସୁଖ ଦୁଃଖ ଆହ୍ଲାଦ ଯାତନା
ଜୀବନେ ମୁଁ ଭୋଗିଛୁ ଅନେକ
ନାହିଁ ଆଉ ଅଧିକ କାମନା ।
ମୋ' ଜୀବନ ବୀଣାଯନ୍ତ୍ର-ତାର
ସ୍ୱରହୀନ ହଇତମ ଅତ
ଏବେ କ୍ରମେ ହେଉଛୁ ଅସାର
ତେଜ ଆଦ୍ୟ ମୋହନୀ ଶକତ ।
ମଧୁକାଳ ଆଶା-ଫୁଲବ୍ରଜ
ନିଦାଘର ତପନ କରଣେ
ଝାଉଁଳିଛୁ କି ବିଷାଦେ ଆଜ
ଗନ୍ଧହୀନ ଜୀବନ-କାନନେ ।
ପ୍ରଭାତର ମୃଦୁ ଗନ୍ଧବହ
ହରାଇଛୁ ନିଜ ଶୀତଳତା
ଗ୍ରୀଷ୍ମଝଞ୍ଜା ପବନ ପ୍ରବାହ
ନାଶେ ଏବେ ହୃଦ-ସରସତା ।
ଭ୍ରମି ଭ୍ରମି ଅବସନ୍ନ କାୟା
ବିଷମ ଏ ବନ୍ଧୁର ବାଟେ
ଦେଖିବଇଁ ଯେବେ ସ୍ନିଗ୍ଧଛାୟା
ବିଶ୍ରମିବ ତହିଁ ଜଳ ଘାଟେ ।
ଶୁଣି ଖଗ ମଧୁର କାକଳୀ
ଜୀର୍ଣ୍ଣ ବୀଣା ରଖିବ ସପାଦ
ପକ୍ଷିଗୀତେ ଦେବ କରତାଳି
କେହି ମୋର ନ ଥିବେ ବିବାଦ ।
ତରୁଲତା ନବ କିଶଳୟେ
ବିରଚଣ କୋମଳ ଆସନ

ଶୋଇବ ମୁଁ ବିତାନ ହୃଦୟେ
ଶୁଣିବାକୁ ବାୟୁ ସନସନ ।”

ଆହୁରି ମଧ୍ୟ “ଅନାଥ କଳିକା” ନାମକ ପଦ୍ୟରେ ସେ ଅତି ଶୈଶବରୁ ବିବାହିତ ହୋଇ କପଟ ସଂସାରରେ ପଡ଼ିଛନ୍ତି ତାହାଁର ଆଭାସ ଦେଇଅଛନ୍ତି;—

❊ ❊ ❊

“ଶୈଶବ ସମୟ ତା’ର ଅଜ୍ଞାନ ସମୟ
ଏକାଳେ ଭ୍ରମର ସଙ୍ଗେ ହେଲା ପରିଣୟ ।
ପରପୁତ୍ରେ ପରକନ୍ୟା ହୁଏ କିପାଁ ବନ୍ଦୀ
ସାମାନ୍ୟ ବାଳିକା ସେହୁ ଜାଣିବ ସେ ସନ୍ଧି ?
ଯୌବନ-ସରସେ ନାହିଁ ଲାବଣ୍ୟ-ତରଙ୍ଗ
ସରସ ବସନ୍ତ ସ୍ଫୁଟେ ହୋଇ ନାହିଁ ଅଙ୍ଗ ।
ଅନ୍ତର ନୟନ ମଧ୍ୟ ଦେଇ ନାହିଁ ଦେଖା
ଯୁବତୀ ପଦରେ ଧନୀ ହୋଇ ନାହିଁ ଲେଖା ।
ପ୍ରଣୟୀ ଭ୍ରମର ତେଣୁ କେବେ କେବେ ଆସେ
ଭ୍ରମଇ ଏକାନ୍ତେ ବାଳ କଳିକା ସକାଶେ ।
ଗୁଣୁ ଗୁଣୁ ସ୍ୱରେ ଅତି ଅପ୍ରକଟ ତାନେ
କହେ ମାତ୍ର ଉପଦେଶ କହଇ ତା କାନେ !

❊ ❊ ❊ ❊ ❊

ପ୍ରଣୟର ସ୍ଥାନ ନୁହେ ଏ ସଂସାର ଏକା
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।

ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସେ ଣ ମନ
କ୍ଷଣେ ଏଥି ରହି ଚଳ ଅମର ଭୁବନ ।''

ପତ୍ନୀବିୟୋଗ ପରେ ଇଚ୍ଛା କରିଥିଲେ ଗୋପବନ୍ଧୁ ଅନାୟାସରେ ଦ୍ୱିତୀୟ ପତ୍ନୀ ଗ୍ରହଣ କରିପାରିଥାନ୍ତେ; ମାତ୍ର ତାଙ୍କ ସହଧର୍ମିଣୀଙ୍କର ସ୍ମୃତି ରକ୍ଷାକରି ଗୋପବନ୍ଧୁ ଦ୍ୱିତୀୟ ଦାର ଗ୍ରହଣରେ ଇଚ୍ଛା କଲାଇଲେ ନାହିଁ । ତାଙ୍କର ବଡଭାଇ ବହୁତ ପ୍ରବର୍ତ୍ତାଇ ଥିଲେ । ବହୁତ ଲୋକ ବହୁତ ପ୍ରକାର ଚେଷ୍ଟା କରିଥିଲେ, ମାତ୍ର ତାଙ୍କ ମନ କାହିଁରେ ମାନିଲା ନାହିଁ । ସେ ଧୀର ସ୍ଥିର ଭାବରେ ଅଷ୍ଟାବିଂଶତି ବର୍ଷ ବୟସରୁ ସଂଯତ ରହି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ମାନବ ଜାତିର କଲ୍ୟାଣରେ ଆତ୍ମୋତ୍ସର୍ଗ କରିଥିଲେ । ଏତେ ଅଳ୍ପ ବୟସରୁ ସଂଯତ ରହି ତାପସବ୍ରତ ଆଚରଣ କରିବା ଲୋକ ଜଗତରେ ଅତି ଅଳ୍ପ ଦେଖାଯାନ୍ତି । ଏହି ୧୨ ବର୍ଷ ଗୃହସ୍ଥାଶ୍ରମ ମଧ୍ୟରେ ତାଙ୍କର ଦୁଇଗୋଟି କନ୍ୟା ଓ ତିନିଗୋଟି ପୁତ୍ର ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରୁ କନ୍ୟା ଦୁଇଟି ମାତ୍ର ଜୀବିତ ଅଛନ୍ତି । ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ସାରଙ୍ଗିଣୀ କଟକ ରେଭେନ୍‌ସା କଲେଜର ସୁଯୋଗ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ରତ୍ନାକର ପତି ଏମ୍, ଏ, (ଶାରବାଟି)ଙ୍କୁ ବିବାହ କରିଛନ୍ତି । କନିଷ୍ଠା ଶ୍ରୀମତୀ କେତକୀକୁ ସତ୍ୟବାଦୀର ଅନତିଦୂରସ୍ଥ ବୀରପ୍ରତାପପୁର ଶାସନରେ ବିବାହ ଦେଇଛନ୍ତି । ସେ ଦିଓଟି ତାଙ୍କ ଜୀବନର ସ୍ନେହମନ୍ଦାକିନୀ ଥିଲେ । ସେ ଦୁହିଙ୍କୁ ଦେଖି ତାଙ୍କର ପତ୍ନୀ ଓ ପୁତ୍ରବିୟୋଗ ଦୁଃଖ ଭୁଲିଯାଇଥିଲେ ।

[୭]

୧୯୦୨ ମସିହାରେ କଲେଜ ଛାତ୍ର ଥିଲାବେଳେ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଓ ପ୍ରଚାରକ ଅନନ୍ତ ମିଶ୍ରଙ୍କୁ ଘେନି ଭାଗବତ ସପ୍ତାହର ପାରାୟଣ ବେଳେ ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବାପାଇଁ ବଦ୍ଧପରିକର ହୋଇଥିଲେ । ଓକିଲାତି ପରୀକ୍ଷା ଦେଇ କଲିକତାରୁ ଆସି

କେତେକ ଯୁବକଙ୍କ ସହିତ ସନ୍ନ୍ୟାସୀ ବେଶରେ ପୁରୀ ଜିଲ୍ଲାର ମଫସଲ-ମାନଙ୍କରେ ବୁଲି ଲୋକଙ୍କ ଭିତରେ ସ୍ୱଦେଶୀଭାବ ପ୍ରଚାର କରିବାରେ ଲାଗିଗଲେ । ଏହି ସମୟରେ ୧୯୦୭ ମସିହା ଅଗଷ୍ଟ ମାସରେ କଟକ ଜିଲ୍ଲାର ବ୍ରାହ୍ମଣୀ ଓ ଖରସୁଆଁ ନଦୀର ପ୍ରବଳ ବନ୍ୟାରେ ଯାଜପୁର ଓ କେନ୍ଦ୍ରାପଡ଼ାର କେତେକ ଅଂଶ ବୁଡ଼ି ଯାଇଥିଲା । ସେତେବେଳେ ସେ କଟକରେ **The Central Young Utkal Association** "ଉତ୍କଳ ଯୁବକ କେନ୍ଦ୍ର ସମିତି" ନାମକ ସଂଘ ସ୍ଥାପନ କରିଥିଲେ । ତହିଁର କାର୍ଯ୍ୟକାରୀ ସଭାରେ ୧୪ ଜଣ ସଭ୍ୟ ଥିଲେ । କଟକ ରେଭେନ୍ସା କଲେଜର ଅଧ୍ୟକ୍ଷ **Mr. R. Shaw. M. A.** ସେହି ଦଳଗତ ଅନୁଷ୍ଠାନର ସଭାପତି ଓ ଆମ୍ଭମାନଙ୍କର ଗୋପବନ୍ଧୁ ବାବୁ ସାଧାରଣ ସଂପାଦକ [General Secretary] ଥିଲେ । ସେ ସମିତିର ଉଦ୍ଦେଶ୍ୟ ବିଭିନ୍ନ ପ୍ରକାର ଥିଲା ! ସାହିତ୍ୟ, ବ୍ୟାୟାମ, ନୈତିକ ଓ ଆର୍ଥିକ ଉନ୍ନତି ନିମିତ୍ତ ପ୍ରତ୍ୟେକ ବିଷୟ ବିଭାଗରେ ଜଣେ ଜଣେ ସଂପାଦକ ନିଯୁକ୍ତ ଥିଲେ । ସମିତିର ଶାନ୍ତିରକ୍ଷା ଭାର ଜଣକ ଉପରେ ମଧ୍ୟ ନିର୍ଭର ଥିଲା । ଏହି ସମିତି ଗଠନର ପ୍ରଥମ ବର୍ଷରେ ବ୍ରାହ୍ମଣୀ ଓ ଖରସୁଆଁର ପ୍ରବଳ ବନ୍ୟାରେ ଯେତେବେଳେ କେନ୍ଦ୍ରାପଡ଼ା ଓ ଯାଜପୁରର କେତେକ ଅଂଶ ବୁଡ଼ିଗଲା, ଏମାନେ ଚୂଡ଼ା ଗୁଡ଼ଳ ନେଇ ମାସ ମାସ ଧରି ସେମାନଙ୍କର ପ୍ରାଣ ରକ୍ଷା କଲେ । ବନ୍ୟା ପରେ ମଧ୍ୟ ସେଠାରେ ଦୁର୍ଭିକ୍ଷ ପଡ଼ିଲା । ସେଠାରୁ ଗୋପବନ୍ଧୁ ସମିତିର ସଭ୍ୟମାନଙ୍କ ସାହାଯ୍ୟରେ ଅର୍ଥ ସଂଗ୍ରହ କରି ବନ୍ୟାକ୍ଲିଷ୍ଟ ଲୋକମାନଙ୍କୁ ସାହାଯ୍ୟ ଦେଇଥିଲେ । ସେତେବେଳେ ସରକାର ଦୁର୍ଭିକ୍ଷ ଘୋଷଣା ନ କରିବାରୁ ଗୋପବନ୍ଧୁ କଲିକତାର ବିଖ୍ୟାତ **Statesman** ଖବରକାଗଜର ପ୍ରତିନିଧିଙ୍କୁ ଅଣାଇ ଲୋକମାନଙ୍କର ଅବସ୍ଥା ଦେଖାଇଥିଲେ ଏବଂ ଦେଶରେ ଏହି ଦୁର୍ଭିକ୍ଷ-ପୀଡ଼ିତ ଲୋକଙ୍କର ଦୁରବସ୍ଥା ପ୍ରସଙ୍ଗରେ ପ୍ରଚାର କରିବାପାଇଁ ତାଙ୍କୁ ବିଶେଷ ଅନୁରୋଧ କରିଥିଲେ । ସେଥିପାଇଁ ଗୋପବନ୍ଧୁ ସରକାରଙ୍କର ବିରାଗଭାଜନ ହୋଇଥିଲେ । କେନ୍ଦ୍ରାପଡ଼ା ଓ ଯାଜପୁର ଅଂଚଳରୁ ଆସି ୧୯୦୮ ମସିହା ଅପ୍ରେଲମାସ ତା ୧୮ ରିଖ ଉତ୍କଳ ସମ୍ମିଳନୀର ପୁରୀ ଅଧିବେଶନରେ ନିମ୍ନଲିଖିତ ପ୍ରସ୍ତାବ ଆଗତ କରିଥିଲେ ।

ପ୍ରସ୍ତାବଟି ଏହି—"ଉତ୍କଳର ଚତୁର୍ଦ୍ଦିଗରେ ଭୟଙ୍କର ଦୁର୍ଭିକ୍ଷ ହୋଇଥିବାରୁ ତହିଁର ପ୍ରତୀକାର ନିମିତ୍ତ ପ୍ରସ୍ତାବିତ ଦଶଜଣଙ୍କୁ ନେଇ ସଭ୍ୟସଂଖ୍ୟା ବୃଦ୍ଧି କରିବା କ୍ଷମତା ସହିତ ଗୋଟିଏ ସମିତି ଗଠନ କରାଯାଉ ।" ଏହି ପ୍ରସ୍ତାବଟି ଆଗତ କରି ସେ କହିଥିଲେ ;—

"ସଭାପତି ମହୋଦୟ ଓ ଭାଇମାନେ, ଦୁଃଖର କହିବ ନା ସୁଖର କହିବ, ନା ଯାହା ଅଙ୍ଗେ ନିଭାଇଛୁ ତାହା କହିବ । ମୁଁ ନିଜେ ଦୁର୍ଭିକ୍ଷାକ୍ରାନ୍ତ ସ୍ଥାନକୁ ଯାଇ ଲୋକମାନଙ୍କ ଦୁର୍ଗତି ନିଜ ଆଖିରେ ଦେଖି ଆସିଅଛି । ଘରବୁଡ଼ ପାଣି କାଟେ ଲେଖାଏଁ ଛିଡ଼ା ହୋଇଅଛି । କେଉଁଠାରେ ଘର ନାହିଁ, କେଉଁଠାରେ ଲୋକ ଗଛ ଉପରେ ଚଢ଼ି ବସି ରହିଅଛନ୍ତି । କେଉଁଠି ଘର ଉପରେ ମନୁଷ୍ୟ ବସି ଅଛନ୍ତି—ଘର ଭାସିଯାଉଛି, କେଉଁଠାରେ ଗଛ ଉପରେ ମନୁଷ୍ୟ ବସିଅଛନ୍ତି—ଗଛ ଭାସି ଯାଉଛି, କେଉଁଠାରେ ମାଆ ପୁଅକୁ କାଖରେ ଧରି ଭାସି ଯାଉଛି । ମୁଁ ଯେ ସବୁ ଖାଉଦ୍ର କାରଖାନା ଦେଖିଅଛି, ତାହା ସମସ୍ତ ବର୍ଣ୍ଣନା କରି ପାରିବି ନାହିଁ । ମୋର ହୃଦୟରେ ଯେଉଁ ଭାବର ଉଦ୍ରେକ ହୋଇଅଛି, ତାହା ପ୍ରକାଶ କରି ପାରିବି ନାହିଁ । ପ୍ରକାଶ କରିବାର ମଧ୍ୟ ଏ ସ୍ଥାନ ନୁହେ । ଲୋକମାନଙ୍କୁ ଦାନା ମିଳୁ ନାହିଁ, କନା ମିଳୁ ନାହିଁ । ପାଣି ପିଇବାକୁ ମିଳୁ ନାହିଁ । ଦୁର୍ଭିକ୍ଷ-ପୀଡ଼ିତ ଲୋକମାନେ ଆମ୍ଭର ଭାଇ କି ନା, ପରୀକ୍ଷା କରିବାର ବର୍ତ୍ତମାନ ସମୟ ଉପସ୍ଥିତ । ସେମାନଙ୍କ ପ୍ରତି ଆମ୍ଭମାନଙ୍କର ଦୃଢ଼ କର୍ତ୍ତବ୍ୟ ରହିଅଛି । ସେ କର୍ତ୍ତବ୍ୟ ସାଧନ କଲେ ଲୋକମାନଙ୍କର ସମ୍ମିଳନୀ ପ୍ରତି ମାୟା ମମତା ଲାଗିବ । ଆମ୍ଭମାନଙ୍କର ମାତା ଛିନ୍ନମସ୍ତା ନୃମୁଣ୍ଡମାଳିନୀ ହୋଇ ଆମ ଆଗରେ ଛିଡ଼ା ହୋଇ ଅଛନ୍ତି । ସେ ଛିନ୍ନ-ମସ୍ତାଙ୍କର ପୂଜା କରିବା ଦରକାର ।"

ତାଙ୍କ ଜୀବନରେ ଲୋକ ସେବାର ପ୍ରଥମ ସ୍ଥାନ କେନ୍ଦ୍ରାପଡ଼ା ଓ

ଯାଜପୁର ପ୍ରତି ସେ "ବନ୍ଦୀର ଆତ୍ମକଥା"ରେ ଲେଖିଛନ୍ତି;—

* * * *

"ଏହି ଯେ ପଡ଼ିଲା କେନାପୁର ସେରୁ
ବ୍ରାହ୍ମଣୀ ବିଶାଳବକ୍ଷେ ଧୂମକେରୁ ।

ଆଅ ଗୋ ବ୍ରାହ୍ମଣି ପୀନପୟୋଧର,
ହେଉ ତୁମ୍ଭ ଯୋଗେ ଉକ୍ରଳ ଉର୍ବର ।

ଖରସ୍ରୋତା ସଙ୍ଗେ କର କୁମନ୍ତ୍ରଣା
ତଟବାସୀ ଜନେ ନ ଦିଅ ଯନ୍ତ୍ରଣା,

କେନ୍ଦ୍ରାପଡ଼ା ଯାଜପୁର ପ୍ରଜାକୁଳ
କର ନାହିଁ ବନ୍ୟା ବିତ୍ପାତେ ବ୍ୟାକୁଳ ।

ସେ ଭାଇ ସକଳ ମୋର ପ୍ରିୟତମ
ତାଙ୍କ ସେବା ମୋର ଜୀବନେ ପ୍ରଥମ ।

ଖରସ୍ରୋତା ତୁମ୍ଭ ଚିର ସହଚରୀ
ମାଗୁଛି ବେନଙ୍କି ନମସ୍କାର କରି ।

ତରଙ୍ଗ ହିଲ୍ଲୋଳେ କଳକଳ ତାନେ
କହ ମୋ ସନ୍ଦେଶ ସେ ଭାଇଙ୍କ କାନେ ।

ଗ୍ରାମୁଁ ଗ୍ରାମାନ୍ତରେ ପବନ ଲହରେ ।
ଉଚ୍ଚଳେ ଏ ବାର୍ତ୍ତା ଖେଳୁ ଘରେ ଘରେ

ଆଅ ଯାଜପୁର କେନ୍ଦ୍ରାପଡ଼ା ଭାଇ
ଦେଖା ହେବ କେବେ ଲେଉଟିଲେ ଯାଇ ।

ବନ୍ୟାରୁ ବରତ ନ ପାଇ ଶକତ
ଜାଣେ ମୁଁ ଭେଟିଛ ବିଷମ ବିପତ୍ତି ।

କାରାଗାରେ ମୋତେ ପଡୋଶୀ ଭ୍ରମର
ଦେଇଛନ୍ତି ଅଗ୍ନି ଉତ୍ପାତ ଖବର ।"

※ ※ ※

ଏହାପରେ ଉତ୍କଳ ଯୁବକ ସମିତିର ତତ୍ତ୍ୱାବଧାରକ ରୂପେ ସେ ପ୍ରତି ସପ୍ତାହର ରବିବାର ଦିନ କଟକ ଟାଉନ୍ ହଲରେ ଅଧିବେଶନମାନ କରାଉଥିଲେ । ସେଥିରେ ଅନ୍ୟାନ୍ୟ ପଦସ୍ଥ ବ୍ୟକ୍ତିମାନଙ୍କୁ ସଭାପତି କରାଇ ବିଭିନ୍ନ ବିଷୟରେ ସାରଗର୍ଭିକ ବକ୍ତୃତାମାନ ଶୁଣୁଥିଲେ । ପ୍ରବେଶିକା ପରୀକ୍ଷାର ଛାତ୍ରମାନଙ୍କୁ ଏକାଠି କରାଇ ପରୀକ୍ଷା ପରେ କିପରି ସେମାନଙ୍କର ସମୟ ଅତିବାହିତ କରିବାକୁ ହେବ, ତତ୍ ସମ୍ବନ୍ଧେ ଉପଦେଶ ଦେଉଥିଲେ । ସମଗ୍ର ଉତ୍କଳର ଛାତ୍ର ସମାଜ ଏହା ପ୍ରତି ଏକାନ୍ତ ଆକୃଷ୍ଟ ଥିଲେ । ଏହି ସମିତିର ଯତ୍ନରେ କେତେକ ହିତକର କାର୍ଯ୍ୟ ମଧ୍ୟ ସାଧିତ ହୋଇଥିଲା । ପ୍ରତି ବିଦ୍ୟାଳୟରେ ବିଶେଷତଃ ସତ୍ୟବାଦୀ, ପ୍ୟାରୀମୋହନ ଏକାଡେମୀ, ଭଦ୍ରକ, ବଉଦପୁର, ବାରିପଦା ଓ ବହାଳଦା ପ୍ରଭୃତି ସ୍ଥାନମାନଙ୍କରେ ଏହାର ଶାଖା-ପ୍ରଶାଖାମାନ ସ୍ଥାପିତ ହୋଇଥିଲା । ଅଧିକାଂଶ ସମୟରେ ସେ ନିଜେ ସମିତିର ସାଧାରଣ ସମ୍ପାଦକ ଭାବରେ ଉକ୍ତ ଶାଖା ସମିତିମାନ ପରିଦର୍ଶନ କରି ସେମାନଙ୍କୁ ଉତ୍ସାହବାଣୀ ଶୁଣାଉଥିଲେ । ସ୍ୱାଭାବିକ ପ୍ରକ୍ରିୟାରେ ଏହା ଉତ୍କଳୀୟ ଛାତ୍ରମାନଙ୍କର ଏକ ବିରାଟ ଶୃଙ୍ଖଳାବଦ୍ଧ ଶକ୍ତିରେ ପରିଣତ ହୋଇଥିଲା ।

ଶୈଶବରୁ ଗୋପବନ୍ଧୁ ଉତ୍କଳର ଦରିଦ୍ର ବ୍ରାହ୍ମଣମାନଙ୍କ ଶିକ୍ଷାର ଅଭାବ ଅନୁଭବ କରିଥିଲେ । ସେଥିପାଇଁ ସେ ସଭା ସମିତି ମାନଙ୍କରେ ଅନେକ ଥର ଉକ୍ତ ଅଭାବ ବିଷୟରେ ଲୋକମାନଙ୍କୁ ବୁଝାଉଥିଲେ । ଉତ୍କଳ ସାହିତ୍ୟର ଉନ୍ନତି ନିମନ୍ତେ ସେ ଗ୍ରାମ ପ୍ରାଥମିକ ବିଦ୍ୟାଳୟରୁ ଚେଷ୍ଟିତ ହୋଇଥିଲେ । ୧୯୦୬ ମସିହାରେ ଆଗ୍ରହ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଓ ପ୍ରଚାରକ ଅନନ୍ତ ମିଶ୍ରଙ୍କ ସହିତ କିପରି ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବେ ବୋଲି ପ୍ରତିଜ୍ଞା କରିଥିଲେ, ତାହା ସମସ୍ତେ ଜାଣନ୍ତି ।

ସ୍ୱାଧୀନଚେତା ଗୋପବନ୍ଧୁ ସ୍ୱାଧୀନଭାବରେ ଜୀବନ କଟାଇବେ ବୋଲି ଓକିଲାତି ପାସ୍ କରିଥିଲେ ସୁଦ୍ଧା ସେଥିରେ ଲିପ୍ତ ନ ରହିବାକୁ ଚେଷ୍ଟା କରୁଥିଲେ । ଏପରି ସମୟରେ ନୀଳଗିରିର ନୂତନ ପ୍ରତିଷ୍ଠିତ ହାଇ ସ୍କୁଲରେ ପ୍ରଧାନ ଅଧ୍ୟାପକ ପଦରେ ରହିବାପାଇଁ ତାଙ୍କ ନିକଟକୁ ଆହ୍ୱାନ ଆସିଲା । ସେ ସ୍କୁଲର ଶିକ୍ଷକ ହୋଇ ଦେଶହିତକର କାର୍ଯ୍ୟମାନ କରି ପାରିବେ ଭାବି ସମ୍ମତି ଦେଇଥିଲେ । ସେଠାରେ ୬ମାସ କାଳ ପ୍ରଧାନ ଅଧ୍ୟାପକ ପଦରେ ରହି ସେ ସ୍କୁଲକୁ ସ୍ଥାୟୀ କରିବାର ବନ୍ଦୋବସ୍ତ କରିଥିଲେ । ପରହାତରେ ଚାକିରି କରିବା ସ୍ୱାଧୀନବ୍ୟକ୍ତି ପକ୍ଷରେ ଅସମ୍ଭବ;ତାଙ୍କପରି ଲୋକ ସେଠାରେ ରହନ୍ତେ କିଆଁ ? ଉକ୍ତ ସ୍କୁଲରୁ ଅଳ୍ପ ସମୟପରେ ବିଦାୟ ନେଇ ସ୍ୱାଧୀନ ଜୀବନ ଯାପନ କରିବା ପାଇଁ ପୁରୀ ଓ କଟକରେ ଓକିଲାତି ଆରମ୍ଭ କଲେ । ଏହି ଓକିଲାତି ସମୟରେ ସେ ତାଙ୍କର ସୁଦକ୍ଷ କର୍ମପଟୁତା ଯୋଗେ ସର୍ବତ୍ର ଖ୍ୟାତି ଲଭିଥିଲେ । ଇତିପୂର୍ବରୁ ଓଡ଼ିଶାର ଏକପ୍ରାନ୍ତରେ ଅବସ୍ଥିତ ମୟୂରଭଞ୍ଜ ରାଜ୍ୟରେ ବଙ୍ଗାଳି ଯୁବକମାନେ ରାଜକର୍ମ ସ୍ୱୀକାର ହେଉଥିଲେ । ସେ ସମୟର ରାଜା ରାମଚନ୍ଦ୍ରଭଞ୍ଜ ଦେଓ । ସେ ରାଜା ହୋଇ ଦେଶପ୍ରତି ଯାହା କରିଥିଲେ ତାହା କାହାରିକୁ ଅବିଦିତ ନାହିଁ । ସେ କେତେ ସାହିତ୍ୟରସିକ ଥିଲେ ତାହା କବିବର ରାଧାନାଥଙ୍କ ଚିଲିକା କାବ୍ୟରୁ ପରିଚୟ ମିଳେ । ଓଡ଼ିଶାରେ ରାଜକର୍ମ ଚଳାଇବା ଯୋଗ୍ୟ ଲୋକଙ୍କର ଅଭାବ ବୋଲି ସେ ଅନେକ ସ୍ଥାନରେ ବ୍ୟକ୍ତ କରିଥାନ୍ତି ଏବଂ କଥା ପ୍ରସଙ୍ଗରେ କୁଳବୃଦ୍ଧ ମଧୁସୂଦନଙ୍କୁ ତାଙ୍କ ମନୋନୀତ ଗୋଟିଏ ଯୁବକ ତାଙ୍କ ନିକଟକୁ ପଠାଇବା ପାଇଁ ଅନୁରୋଧ କରିଥିଲେ ଏବଂ ଗୋପବନ୍ଧୁ ବାବୁଙ୍କ ମଧ୍ୟ ଲକ୍ଷ୍ୟ ରଖିଥିଲେ । ମଧୁବାବୁଙ୍କ ଅନୁରୋଧରେ ଗୋପବନ୍ଧୁ ମୟୂରଭଞ୍ଜରେ ସ୍ୱର୍ଗୀୟ ରାମଚନ୍ଦ୍ରଭଞ୍ଜଙ୍କର ନିମନ୍ତ୍ରଣକ୍ରମେ ରାଜସରକାରର ଓକିଲ ହେଲେ । ସେଠାରେ ଗୋପବନ୍ଧୁ ରାମଚନ୍ଦ୍ରଙ୍କର ଦକ୍ଷିଣହସ୍ତ ଥିଲେ । ଗୋପବନ୍ଧୁଙ୍କର ବିନାପରାମର୍ଶରେ ରାମଚନ୍ଦ୍ର ରାଜକୀୟ ବିଷୟରେ ଅଗ୍ରସର ହେଉ ନ ଥିଲେ । ମୟୂରଭଞ୍ଜରେ ଅନାଥାଶ୍ରମ ଠାରୁ ଆରମ୍ଭକରି ଯେତେକ State Council ପର୍ଯ୍ୟନ୍ତ ସ୍ଥାପନରେ ସାହାଯ୍ୟ କରିଥିଲେ । ସେ ଯେ ରାଜାଙ୍କର କେବଳ ପ୍ରିୟପାତ୍ର ଥିଲେ ତାହା

ନୁହେଁ, ପ୍ରଜାମାନଙ୍କ ସହିତ ତାଙ୍କର ସଦ୍‌ଭାବ ଥିଲା । ମୋଟ ଉପରେ କହିବାକୁ ଗଲେ ରାମଚନ୍ଦ୍ରଙ୍କର ପ୍ରଜାରଞ୍ଜନ ଖ୍ୟାତିରେ ଗୋପବନ୍ଧୁଙ୍କର ବିଶେଷ ସହାୟତା ଥିଲା । ରାମଚନ୍ଦ୍ର ଗୋପବନ୍ଧୁଙ୍କୁ ଯେପରି ଦେଖୁଥିଲେ ଗୋପବନ୍ଧୁ ମଧ୍ୟ ସେହିପରି ରାମଚନ୍ଦ୍ରଙ୍କୁ ଭଲପାଉଥିଲେ । ମହାରାଜା ରାମଚନ୍ଦ୍ର ଯେତେବେଳେ ପୃଥିବୀ ଭ୍ରମଣରେ ବାହାରିଲେ ସେତେବେଳେ ଗୋପବନ୍ଧୁଙ୍କ ମନରେ କି ଦାରୁଣ ଦୁଃଖ ହୋଇଥିଲା, ସେ ତାଙ୍କର ଅନୁପସ୍ଥିତ କପରି-ଭାବରେ ଅନୁଭବ କରିଥିଲେ ତାହା ଗୋପବନ୍ଧୁଙ୍କ ରଚିତ "ବିଦାୟ ସଭାରେ ପଠିତ" କବିତାର ପଂକ୍ତିରୁ ଭଲରୂପେ ଜଣାପଡେ;—

"ରାମଚନ୍ଦ୍ର ମହାରାଜା ପରଜା ପରାଣଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜକଞ୍ଜ ତପନ !
ମହାରାଜା ତୁମ୍ଭେ ଆନ ନ ଜାଣୁ ବିଧି ବିଧାନ
ବନ୍ଧୁବୁ କପରି କହ ବିରହେ ଏ କେତେ ଦିନ ?
ଗ୍ରତକ ପରାଏ ହୋଇ ବାଟ ରହିଲୁ ଅନାଇ
ଫେରି ଦେଖିଲେ ଏ ପିଣ୍ଡେ ପଶିବ ପିନା ଜୀବନ ?
ଭୁଲିବ ନାହିଁ ଭୂପାଳ ସରାଳ ଶୁଭ୍ର ସଲିଳ
ମେଘାସନ ସ୍ତୁରୁକୁଞ୍ଜ ବୁଢା ବଳଙ୍ଗ ପୁଳିନ ।
ସ୍ନେହାଡ଼ ପାହାଡ଼ ଦେଶ ଭୁଲିବ ନାହିଁ ନରେଶ
ଘେନ ଦିବ୍ୟ ଅବଧାନେ ଏ ବିନୀତ ନିବେଦନ ।"

ନାନା ବିଷୟରେ ଲିପ୍ତଥାଇ ସୁଦ୍ଧା ସେ ସାହିତ୍ୟଚର୍ଚ୍ଚା ଛାଡ଼ି ନ ଥିଲେ । ପ୍ରତି ସପ୍ତାହର ଶନିବାର ଦିନ ବାରିପଦା ଉଚ୍ଚଇଂରେଜୀ ବିଦ୍ୟାଳୟର ଆଲୋଚନା ସଭା (Debating Club) ରେ ନିୟମିତରୂପେ ଉପସ୍ଥିତ ରହି ନାନା ବିଷୟ ଆଲୋଚନା କରୁଥିଲେ । ରାମଚନ୍ଦ୍ରଭଞ୍ଜଦେଓଙ୍କର ମୃତ୍ୟୁପରେ ମୟୂର-ଭଞ୍ଜରାଜ୍ୟ Court of wards ହେବାରୁ ଗୋପବନ୍ଧୁ ସ୍ୱୀୟ ମାନ ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବାପାଇଁ ସେଠାରେ ଆଉ ରହିବାକୁ ଇଚ୍ଛା କଲେ ନାହିଁ । ତତ୍-

କାଳୀନ ପଲିଟିକାଲ୍ ଏଜେଣ୍ଟ ତାଙ୍କୁ ମୁନସଫ୍ ପଦ ଯାଚିଥିଲେ ସୁଦ୍ଧା ତାହା ତ୍ୟାଗ କରି "ଏଠାରେ ଆଉ ରହିବି ନାହିଁ" କହି ସନ ୧୯୧୨ ମସିହାରେ ମୟୂରଭଞ୍ଜ ପରିତ୍ୟାଗ କଲେ ।

ସେଠାରୁ ଆସି କଟକରେ ଏବଂ ଅଳ୍ପଦିନପରେ ପୁରୀରେ ଓକିଲାତି ଆରମ୍ଭ କଲେ । ଓକିଲାତିରେ ମଧ୍ୟ ତାଙ୍କର ଖୁବ୍ ପ୍ରବେଶ ଓ ପ୍ରତିପତ୍ତି ହୋଇଥିଲା । ମୋକଦ୍ଦମାମାନଙ୍କରେ ପକ୍ଷମାନଙ୍କୁ ଡାକି ସେ ଆଗ ବରାବର ମିଳାମିଶାର ଯୋଗାଡ଼ କରୁଥିଲେ । ମିଥ୍ୟା ବୋଲି ଜାଣିଲେ ମୋକଦ୍ଦମା ଗ୍ରହଣ କରୁ ନ ଥିଲେ । ଏହିପରି ନାନାପ୍ରକାର ସାଧୁତା ଓ ନିଷ୍ଠା ଦେଖି ମଫସଲର ଶିକ୍ଷିତ ଲୋକଙ୍କ ମଧ୍ୟରେ ତାଙ୍କର ବିଶେଷ ପ୍ରତିପତ୍ତି ହୋଇଥିଲା । ମାମଲାଖୋର ଲୋକମାନେ ଦୂରରେ ରହି ତାଙ୍କୁ ଖୁବ୍ ଖାତିର କରୁଥିଲେ ।

ଓକିଲାତିରେ ଥାଇ ସାହିତ୍ୟସେବା ସଙ୍ଗେ ସଙ୍ଗେ ଦେଶସେବା ନାନା ପ୍ରକାରରେ କରୁଥିଲେ । ଓକିଲାତିରେ ଅର୍ଜ୍ଜିତଧନ ନିଜର କିମ୍ବା ପରିବାର-ବର୍ଗଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟରେ ନ ଲଗାଇ ଦୀନ ଦରିଦ୍ରଙ୍କ ସେବାରେ ଲଗାଉଥିଲେ, ଗରିବ ପିଲାମାନଙ୍କର ଶିକ୍ଷାରେ ସାହାଯ୍ୟ କରୁଥିଲେ ଏବଂ ଏତାଦୃଶ ଦେଶହିତକର କାର୍ଯ୍ୟପାଇଁ ବ୍ୟୟ କରୁଥିଲେ । ସମ୍ମିଳନୀ ମାନଙ୍କରେ ଦେଶର ଦୁଃଖ ଦୁର୍ବିପାକ କେଉଁ କଣ କରିବାକୁ ହେବ—ଦେଶଲୋକଙ୍କ ଆଗରେ ଆଲୋଚନା କରୁଥିଲେ । ସେ ସମୟରେ "ଆଶା" ଖବରକାଗଜରେ ସେ ଲେଖୁଥିଲେ ଏବଂ "ମୁକୁର"ମାସିକ ପତ୍ରିକାରେ କବିତା ଓ ପ୍ରବନ୍ଧମାନ ପ୍ରକାଶ କରୁଥିଲେ । ପୁରୀରେ ଓକିଲାତି କରିବା ସମୟରେ ତାଙ୍କର ପୂର୍ବ କଳ୍ପିତ ଅନୁଷ୍ଠାନ ପାଇଁ ସତ୍ୟବାଦୀରେ ସୁଯୋଗ ଓ ସୁବିଧା ଦେଖି ସେ ପରେ ମାଇନର୍ ସ୍କୁଲ ସ୍ଥାପନ କରି ତହିଁର ସମ୍ପାଦକ ହେଲେ ।

ଉପରେ ଯେଉଁ ସହକର୍ମ୍ମୀମାନଙ୍କ ସେବନ ଦେଶପାଇଁ ପ୍ରାଣ ଉତ୍ସର୍ଗ କରିବେ ବୋଲି ଦୃଢ଼ ସଂକଳ୍ପ କରିଥିଲେ ତାହା ପାଠକମାନେ ଜାଣନ୍ତି ।

ମାତ୍ର କିପ୍ରକାରେ କାର୍ଯ୍ୟ ଆରମ୍ଭ କରିବାକୁ ହେବ, ତାହା ସେତେବେଳେ ଠିକ୍ କରାଯାଇ ନ ଥିଲା । କ୍ରମେ ଦୁର୍ଭିକ୍ଷରେ ଲୋକସେବା, ମେଲେରିୟା କଲେରାରେ ଔଷଧ ବିତରଣ, ରୋଗୀର ସେବା ଓ ତୃଷାର୍ତ୍ତଙ୍କୁ ଜଳଦାନାଦି କାର୍ଯ୍ୟ ଆରମ୍ଭ କରାଯାଇଥିଲା । ଏହା ତ ଜୀବନବ୍ୟାପୀ ଲାଗି-ଥିବ, ମାତ୍ର କି ଉପାୟ ଅବଲମ୍ବନ କଲେ ସେ ସମୁଦାୟ ମାନବ ଜଗତର ସମୂହ କଲ୍ୟାଣ ସାଧନ କରିବେ, ଏଥିପାଇଁ ସର୍ବଦା ବ୍ୟାକୁଳ ଥାନ୍ତି । ସ୍କୁଲ କଲେଜରେ ଅଧ୍ୟୟନ କରୁଥିବା ତାଙ୍କର ମନୋମତ ଯୁବକଗଣଙ୍କୁ ମନର କଥା କହି ତାଙ୍କ କାର୍ଯ୍ୟରେ ସହଯୋଗ କରିବାପାଇଁ ଆହ୍ୱାନ କରୁଥିଲେ । ସେମାନଙ୍କ ଆଗରେ ନିଜର ଚିରପୋଷିତ ଆକାଙ୍କ୍ଷା ଜଣାଇ କହୁଥିଲେ;— ଶିକ୍ଷା ମାନବର ଜୀବନ । ଶିକ୍ଷାବ୍ୟତୀତ ମାନବ ମାନବ ନୁହେ — ପଶୁ ; ଶିକ୍ଷା ଚକ୍ଷୁହୀନର ଚକ୍ଷୁ, ଦରିଦ୍ରର ସମ୍ବଳ ଏବଂ ଅସହାୟର ସହାୟ । ଶିକ୍ଷା ବ୍ୟତୀତ ମନୁଷ୍ୟ କୌଣସି ସମୟରେ କିଛି କରି ପାରିବ ନାହିଁ । ଧନ ମାନ ଯଶ, ସମସ୍ତ ଶିକ୍ଷାର ମୂଳରେ । ଦେଶବାସୀ ଶିକ୍ଷିତ ନହେଲେ ଚିରକାଳ ଦୁର୍ଭିକ୍ଷ ଯନ୍ତ୍ରଣା ଭୋଗୁଥିବେ, ପରପଦଦଳିତ ହୋଇ ଲାଂଛିତ ହେଉଥିବେ ଏବଂ ସମସ୍ତଙ୍କ ସହିତ ସମାନ ଆସନରେ ବସିପାରୁ ନ ଥିବେ । ବର୍ତ୍ତମାନ ଭାରତର ବିଶେଷତଃ ଓଡ଼ିଶାର ଅବସ୍ଥା ଯେପରି, ସେଥିରେ ଶିକ୍ଷାରୂପ ମେରୁଦଣ୍ଡକୁ ସୁଦୃଢ଼ ନକଲେ ଆଉ ରକ୍ଷା ନାହିଁ । ମାତ୍ର ଯେଉଁ ଦେଶରେ 'ହା ଅନ୍ନ' 'ହା ଅନ୍ନ' ବୋଲି ସର୍ବଦା ଚିତ୍କାର ଲାଗି ରହିଅଛି, ଯେଉଁ ଦେଶର ଲୋକେ ଘରେ ପୁଞ୍ଜେ ଖାଇବାକୁ ନପାଇ କଲିକତା, ଆସାମ ଓ ରେଙ୍ଗୁନ ପ୍ରଭୃତି ଦୂରବିଦେଶକୁ ପେଟ ବିକଳରେ ପଳାଇ ଯାଉଅଛନ୍ତି, ସେଠାରେ ସେ କି ପ୍ରକାର ଶିକ୍ଷା ପ୍ରଚାର କରିବେ ଏହା ତାଙ୍କ ପ୍ରାଣକୁ ସର୍ବଦା ଆଲୋଡ଼ିତ କରୁଥାଏ । ଲୋକେ ଦିଓଳି ପେଟ ପୂରାଇ ଖାଇବାକୁ ପାଉ ନାହାନ୍ତି, ଏଣେ ଦେଶରେ ଯେପରି ଶିକ୍ଷାର ପ୍ରଚାର ହେଉଅଛି ତାହା ପୁଷ୍ଟାଙ୍ଗ ନ ହେଲେ ସୁଦ୍ଧା ଅଧିକ ବ୍ୟୟସାଧ୍ୟ, ଏପରି ଅବସ୍ଥାରେ ଦେଶବାସୀ ଶିକ୍ଷିତ ହେବେ ବା କିପରି ? ସେତିକି ନୁହେ, ବଡ଼ ବଡ଼ କୋଠାଘର ଏବଂ ବହୁମୂଲ୍ୟ ବେଞ୍ଚ ଚୌକି ଅଭାବରେ ଆଧୁନିକ ଶିକ୍ଷା ଦିଆ ଯାଇ ନ ପାରେ ।

ଛାତ୍ରମାନେ ଆଧୁନିକ ଶିକ୍ଷାଦ୍ୱାରା କୌଣସି ପ୍ରକାରେ ଶାରୀରିକ ପରିଶ୍ରମ ନ କରି କେବଳ ପାଠ ପଢ଼ି ପଢ଼ି ପୁସ୍ତକକୀଟ ହେଉଛନ୍ତି । ପୁରାକାଳର ଗୁରୁ ଶିଷ୍ୟ ସମ୍ବନ୍ଧ ଲୋପପାଇ ଆଜକାଲି କେବଳ ୩।୪ ଘଣ୍ଟା ସ୍କୁଲ ଗୃହ ମଧ୍ୟରେ ଅବସ୍ଥାନ ବ୍ୟତୀତ ଆଉ କୌଣସି ସମୟରେ ଶିକ୍ଷକ ଛାତ୍ରଙ୍କର ସାକ୍ଷାତ ସୁଦ୍ଧା ନାହିଁ । ଆହୁରି ପୁଣି ବଡ଼ ବଡ଼ ସ୍କୁଲମାନ ସହରରେ କେବଳ ପ୍ରତିଷ୍ଠିତ ହେବା ଦ୍ୱାରା ମଫସଲବାସୀଙ୍କ ପ୍ରତି ନାନା ଅସୁବିଧା ଘଟୁଅଛି । ଆଧୁନିକ ଶିକ୍ଷାରେ ନୈତିକ ଓ ବ୍ୟବସାୟ ଶିକ୍ଷାର ସୁବିଧା ନାହିଁ । ଏହି ସବୁ ଚିନ୍ତାରେ ଗୋପବନ୍ଧୁ ସର୍ବଦା ଚିନ୍ତିତ ହୋଇ ପ୍ରତିକାର ଖୋଜି ବୁଲିଲେ ।

ତାଙ୍କ ପ୍ରାଣ ଦେଶବାସୀଙ୍କର ଶିକ୍ଷା ପାଇଁ କାନ୍ଦିଲା । ସେ ବୁଝିଲେ, ଦେଶର ପ୍ରତ୍ୟେକ ଲୋକର ଶିକ୍ଷିତ ହେବାର ଦାବି ଅଛି । ଚନ୍ଦ୍ର ସୂର୍ଯ୍ୟ ସମସ୍ତଙ୍କୁ ସମାନ ଭାବରେ କିରଣ ବିକିରଣ କରୁଅଛନ୍ତି । ବାୟୁ ସମସ୍ତଙ୍କ ପାଇଁ ବହୁଅଛି । ଏପରି ଦେଖିବାକୁଗଲେ ସୃଷ୍ଟିର ଆଦ୍ୟରୁ ପ୍ରତ୍ୟେକ ମାନବ ବିଶ୍ୱ-ସ୍ରଷ୍ଟାଙ୍କର ଆଲୋକ ଯୁଗେ ଯୁଗେ ପାଇ ଆସୁଅଛନ୍ତି । ତେବେ ଯେଉଁ-ମାନଙ୍କର ଶିକ୍ଷାର ଅଭାବ ଅଛି, ସେମାନେ ଅବାଧରେ ଯେପରି ଶିକ୍ଷା ପାଇ ପାରିବେ ସେଥିପାଇଁ ପୂର୍ବ ଗୁରୁକୁଳକୁ ଆଦର୍ଶ ରଖି ଗୋଟିଏ ବିଦ୍ୟାଳୟ ସ୍ଥାପନ କରିବାର ଉଦ୍ୟମ କଲେ; ମାତ୍ର ଆମ୍ଭମାନଙ୍କ ଦେଶରେ ଧନର ଅଭାବ ଯେପରି ଅଧିକ, ସେଥିରେ ଅବୈତନିକ ଶିକ୍ଷା କଦାପି ସମ୍ଭବପର ନୁହେ । ସେଥିପାଇଁ କେବଳ ସାମାନ୍ୟ ବେତନ ନେଇ କାର୍ଯ୍ୟ କରିବାପାଇଁ ତାଙ୍କର ସହକର୍ମୀମାନଙ୍କୁ ପ୍ରବର୍ତ୍ତାଇଲେ । ବଡ଼ ବଡ଼ କୋଠାଘର ନାନା ପ୍ରକାର ବେଞ୍ଚ ଟେବୁଲରେ ବିଭୂଷିତ ନହେଲେ ଯେ ସ୍କୁଲ ନ ହେବ, ତାହା ନୁହେ । ସେଥିପାଇଁ ଉପଯୁକ୍ତ ଶିକ୍ଷକ ଆବଶ୍ୟକ । ଉନ୍ମୁକ୍ତ ପ୍ରାଙ୍ଗଣରେ ଯେଉଁଠାରେ ଗୁରୁଶିଷ୍ୟ ଉଭୟଙ୍କର ଶିକ୍ଷାର ଆଦାନ ପ୍ରଦାନ ହୋଇପାରେ, ତାହାହିଁ ପ୍ରକୃତ ବିଦ୍ୟାଳୟ । କେବଳ ଉପାଧି ଧାରଣ କରି ମୋଟା ମୋଟା ବେତନ ପାଇଲେ ଶିକ୍ଷକ ହୁଅନ୍ତିନାହିଁ । ନିଷ୍ଠା ଓ କର୍ତ୍ତବ୍ୟପରାୟଣତାଉପରେ ଶିକ୍ଷକତା ବହୁପରିମାଣରେ ନିର୍ଭର କରେ । ଶିକ୍ଷକର ଏକନିଷ୍ଠତା ତାହାର ସମସ୍ତ

ଅଭାବ ପୂରଣ କରି ପାରିଲେ କିମ୍ବା ଆଜୀବନ ଦାରିଦ୍ର୍ୟବ୍ରତ ଅବଲମ୍ବନ କରି ଚାଲିଲେ ସମ୍ଭବପର ହୋଇପାରେ । ଦେଶରେ ଶିକ୍ଷା ପ୍ରଚାର କରିବାପାଇଁ ତାଙ୍କର ସହକର୍ମୀମାନେ ଦାରିଦ୍ର୍ୟବ୍ରତ ଅବଲମ୍ବନ କରିଥିଲେ । ଯଦି ଶିକ୍ଷାର ଲକ୍ଷ୍ୟ ହୁଏ—ଉପଯୁକ୍ତ ଲୋକ ପ୍ରସ୍ତୁତ କରି ସଂସାରକ୍ଷେତ୍ରକୁ ପଠାଇବା ପାଇଁ, ତେବେ ବର୍ତ୍ତମାନ ଶିକ୍ଷା ଅନୁପଯୁକ୍ତ । ଆଜିକାଲି ଯୁବକମାନେ ଶିକ୍ଷିତ ହୋଇ କେବଳ ଦୁଇଧାଡ଼ି ଲେଖିବା ଛଡ଼ା ଅନ୍ୟାନ୍ୟ କାର୍ଯ୍ୟପାଇଁ ଅନୁପଯୁକ୍ତ, ଏହା ସେ ହୃଦୟଙ୍ଗମ କରିଥିଲେ । ସେଥିପାଇଁ ପୁସ୍ତକଗତ ଶିକ୍ଷା ସଙ୍ଗେସଙ୍ଗେ ବୈଷୟିକ ଶିକ୍ଷାରେ ଯୁବକମାନଙ୍କୁ ଶିକ୍ଷିତ କରାଇ ସଂସାର କ୍ଷେତ୍ରକୁ ପଠାଇବା ତାଙ୍କର ଉଦ୍ଦେଶ୍ୟ ରହିଲା । ଆଜିକାଲିର ବିଦ୍ୟାଳୟ ମାନଙ୍କରେ ଗୁରୁଶିଷ୍ୟର ଘନିଷ୍ଠ ସମ୍ବନ୍ଧ ବିନା ପରସ୍ପର ମଧ୍ୟରେ ବିଶ୍ୱାସ ରହୁ ନାହିଁ । ଉଭୟଙ୍କ ମଧ୍ୟରେ ଉକ୍ତ ସମ୍ବନ୍ଧ ରହିବା ପାଇଁ ଶିଷ୍ୟ ଖାଇବା ବେଳେ, ଖେଳିବା ବେଳେ, ବିଶ୍ରାମ ବେଳେ ଶିକ୍ଷକକୁ ଆଦର୍ଶରୂପେ ପାଇବା ଆବଶ୍ୟକ । ସେଥିପାଇଁ ଗୁରୁଶିଷ୍ୟ ସମସ୍ତେ ବିଦ୍ୟାଳୟ ସଂଲଗ୍ନ ଗୃହାବାସରେ ଏକତ୍ର ରହିବାପାଇଁ ସେ ଲକ୍ଷ୍ୟ ରଖିଥିଲେ । ସହରରେ ପାଠପଢ଼ା ଶେଷ କରିବା ସଙ୍ଗେ ସଙ୍ଗେ ଦେଶର ଯୁବକମାନେ ପଲ୍ଲୀ ଜୀବନକୁ ତୁଚ୍ଛ ମନେ କରି ଶିକ୍ଷିତ ଓ ଅଶିକ୍ଷିତଙ୍କ ମଧ୍ୟରେ ଭେଦଭାବ ଜନ୍ମାଉଥିବାରୁ, ଆଧୁନିକ ସ୍କୁଲମାନଙ୍କ ପରି ସହରର ନାନାପ୍ରକାର ଗଣ୍ଡଗୋଳ ମଧ୍ୟରେ ସ୍କୁଲ ନ ବସାଇ ସହରଠାରୁ ଦୂରରେ ମଫସଲର ନିଭୃତ ଓ ସ୍ୱାସ୍ଥ୍ୟକର ଚତୁଃସୀମା ମଧ୍ୟରେ ସ୍କୁଲ ବସାଇବା ଇଚ୍ଛା ତାଙ୍କର ଥିଲା । ଆଧୁନିକ ଶିକ୍ଷା ସଙ୍ଗେ ସଙ୍ଗେ ଧର୍ମ ଓ ନୀତିଶିକ୍ଷା ଲୋପ ପାଉଥିବାରୁ ଶିକ୍ଷାନିର୍ଘଣ୍ଟରେ ସେ ଧର୍ମ ଓ ନୀତିଶିକ୍ଷା ପାଇଁ ସ୍ଥାନ ଦେଇଥିଲେ ।

ତାଙ୍କର ସହକର୍ମୀମାନଙ୍କ ମଧ୍ୟରୁ କେତେକ ସେତେବେଳେ କଲେଜରେ ଥିଲେ । ଏହି ସହକର୍ମୀମାନେ ଦୁଇ ଶ୍ରେଣୀରେ ବିଭକ୍ତ ଥିଲେ । ଏକ ଶ୍ରେଣୀର ସଭ୍ୟମାନେ କୌଣସି ସଦୁପାୟରେ ଅର୍ଥ ଉପାର୍ଜ୍ଜନ କରି ବିଦ୍ୟାଳୟକୁ ଯଥାସାଧ ସାହାଯ୍ୟ କରିବେ; ଅନ୍ୟ ଶ୍ରେଣୀର ସଭ୍ୟମାନେ

ନିଜ ନିଜର ପାରିବାରିକ ଖର୍ଚ୍ଚ ନିମନ୍ତେ ଆବଶ୍ୟକ ପରିମାଣରେ ଖର୍ଚ୍ଚ ନେଇ ବିଦ୍ୟାଳୟରେ କାର୍ଯ୍ୟ କରିବେ । ସେତେବେଳେ ଗୋପବନ୍ଧୁ ଓକିଲାତି ବ୍ୟବସାୟରୁ ଲବ୍ଧ ଧନ ସ୍କୁଲକୁ ଦାନ କରି ପ୍ରଥମୋକ୍ତ ଶ୍ରେଣୀର ସଭ୍ୟ ଥିଲେ । ବିଦ୍ୟାଳୟଟି କେଉଁ ସ୍ଥାନରେ ପ୍ରତିଷ୍ଠିତ ହେବ, ସ୍ଥାନ ନିରୂପିତ ହୋଇପାରିଲା ନାହିଁ । ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ବୁଲି ଶେଷରେ ସତ୍ୟବାଦୀର ବକୁଳବନରେ ସମସ୍ତଙ୍କର ଦୃଷ୍ଟି ପଡ଼ିଲା । ସତ୍ୟବାଦୀ ପୁରୀର ନିକଟରେ ଅବସ୍ଥିତ ଏବଂ ସାକ୍ଷିଗୋପାଳ ରେଲଷ୍ଟେସନ ଠାରୁ ୧୦ ମିନିଟର ବାଟରେ ଥିବାରୁ ସ୍କୁଲଆଡ଼ୁ ସମସ୍ତଙ୍କର ଯିବା ଆସିବା ସୁବିଧା ଥିଲା । ଏଠାରେ ଗୋଟିଏ ପୋଷ୍ଟଅଫିସ ଏବଂ ଟେଲିଗ୍ରାଫ୍ ଅଫିସ୍ ଅଛି । ଗୋଟିଏ ଡାକ୍ତରଖାନା ଏବଂ ପୁଲିସ ଷ୍ଟେସନ ଅଛି । ସହର ନ ହୋଇ ସୁଦ୍ଧା ସହରର ସମସ୍ତ ସୁବିଧା ଏଠାରେ ମିଳିପାରେ ଏବଂ ସହରର ସୁବିଧା ମିଳିବା ସଙ୍ଗେ ସଙ୍ଗେ ପ୍ରକୃତିର ସ୍ୱଚ୍ଛନ୍ଦରେ ଏଠାରେ ଚିରଶାନ୍ତି ବିରାଜମାନ । ସ୍ଥାନଟି ରମଣୀୟ ଓ ସ୍ୱାସ୍ଥ୍ୟକର । ଜୀବିକାନିର୍ବାହ ସେପରି ବ୍ୟୟସାଧ୍ୟ ନୁହେ । ସାକ୍ଷିଗୋପାଳଙ୍କର ମନ୍ଦିର ଥିବାରୁ ଦେଶର ନାନା ସ୍ଥାନରୁ ବର୍ଷର ପ୍ରତ୍ୟେକ ସମୟରେ ଯାତ୍ରୀମାନଙ୍କର ଗମନାଗମନ ଅଛି;ସୁତରାଂ ଦେଶର ବିଭିନ୍ନ ରୁଚିର ଲୋକମାନଙ୍କ ସଙ୍ଗରେ ମିଶିବାପାଇଁ ଏଠାରେ ସୁବିଧା ଅଛି । ଆହୁରି ମଧ୍ୟ ବହୁଜନାକୀର୍ଣ୍ଣ ରକ୍ଷଣଶୀଳ ବ୍ରାହ୍ମଣ ଶାସନ ମାନଙ୍କର ଏହା କେନ୍ଦ୍ରସ୍ଥଳ । ଏହି ସାକ୍ଷିଗୋପାଳ ମୂର୍ତ୍ତି ଲୋକସମ୍ମୁଖରେ ଦଣ୍ଡାୟମାନ ହୋଇ ଓଡ଼ିଶାର ପୂର୍ବ ଗୌରବ , ପୂର୍ବ ଶିରଦ୍ଧ ସର୍ବଦା ଜାଗରୂକ କରୁଅଛି । ଏହି ସମସ୍ତ ବିଚାର କରି ଗୋପବନ୍ଧୁ ଏହି ସତ୍ୟବାଦୀକୁ ତାଙ୍କ ଜୀବନର ପ୍ରଧାନ କର୍ମକେନ୍ଦ୍ର ରୂପେ ନିର୍ଦ୍ଦିଷ୍ଟ କରି ସେଠାରେ ବିଦ୍ୟାଳୟଟି ସ୍ଥାପନ କରିବାର ମନଃସ୍ଥ କଲେ ।

୧୯୦୯ ମସିହା ଅଗଷ୍ଟ ତାଂ୧୨ରିଖରେ ୧୯ଗୋଟି ପିଲାଙ୍କୁ ନେଇ ସତ୍ୟବାଦୀରେ ମାଇନରସ୍କୁଲ ସ୍ଥାପିତ ହେଲା । ତାଂକର ସହକର୍ମୀମାନେ କଲେଜରେ ଥିବାରୁ ସ୍କୁଲ ଖୋଲିବା କାର୍ଯ୍ୟ ବର୍ଷେ ଦୁଇବର୍ଷ ସ୍ଥଗିତ

ରଖାଯାଇ ଥାନ୍ତା; ମାତ୍ର ଯୁବପ୍ରାଣର ନୂତନ ଉନ୍ମାଦନାରେ ସେ ସମୟରେ ସୁବିଧା ଦେଖି ତାହା ଆରମ୍ଭ କରାଯାଇଥିଲା । ସତ୍ୟବାଦୀରୁ ଏକମାଇଲ ଦୂରବର୍ତ୍ତୀ ସ୍ଥାନ ମାନଙ୍କରୁ ଦୁଇଟି ଭର୍ଣ୍ଣାକ୍ୟୁଲର ସ୍କୁଲ ଉଠି ଯାଇଥିବାରୁ ଗୋଟିଏ ମାଇନରସ୍କୁଲର ଅଭାବ ଆଶୁ ପରିଲକ୍ଷିତ ହୋଇଥିଲା । ସତ୍ୟବାଦୀର ଅନତିଦୂରରେ ଶ୍ରୀରାମଚନ୍ଦ୍ରପୁର ଶାସନନିବାସୀ ଶ୍ରୀଯୁକ୍ତ ଗୋପୀନାଥଦାସ ବି.ଏ. (ଡେପୁଟୀ ମାଜିଷ୍ଟ୍ରେଟ) ବହୁଅର୍ଥ ବ୍ୟୟ କରି ତାଙ୍କ ଗ୍ରାମରୁ ଉଠି ଯାଇଥିବା ଭର୍ଣ୍ଣାକ୍ୟୁଲର ସ୍କୁଲ ସ୍ଥାନରେ ଗୋଟିଏ ମାଇନର ସ୍କୁଲ ସ୍ଥାପନର ଯତ୍ନ କରୁଥିଲେ । ଗୋପବନ୍ଧୁଙ୍କର ଅନୁରୋଧକ୍ରମେ ସେ ସେଠାରେ ମାଇନରସ୍କୁଲ ସ୍ଥାପନ ଉଦ୍ୟମ ଗ୍ରୁଡି ସତ୍ୟବାଦୀର ନୂତନ ପ୍ରତିଷ୍ଠିତ ମାଇନରସ୍କୁଲକୁ ସାହାଯ୍ୟ ଦେଇଥିଲେ । ପ୍ରଥମେ ସ୍କୁଲ କାର୍ଯ୍ୟ ସତ୍ୟବାଦୀ ମଠରର ବଙ୍ଗଳା ଘରେ ଆରମ୍ଭ ହୋଇଥିଲା । ତହିଁ ଉତ୍ତାରୁ ମଠର କମିଟିର ପରାମର୍ଶରେ ମଠର ବଗିଚାରୁ ଦୁଇ ଏକର ଜମି ସ୍କୁଲପାଇଁ ପଟ୍ଟା ନିଆଗଲା । ବନ ବିଦ୍ୟାଳୟ, ଉନ୍ମୁକ୍ତ ବାୟୁରେ ଶିକ୍ଷାର ବ୍ୟବସ୍ଥା ଗୋପବନ୍ଧୁଙ୍କର ପ୍ରଥମ ଆଦର୍ଶ ଥିଲା । ସେଥିଯୋଗେ ଗୃହ ନିର୍ମିତ ନ ହୋଇ ଥିଲେ ଚଳିଥାନ୍ତା; ମାତ୍ର ବର୍ଷାକାଳ ହୋଇଥିବାରୁ ଗୃହ ନିର୍ମାଣ କରିବାପାଇଁ ବାଧ୍ୟ ହେଲେ । ସନ ୧୯୧୦ ମସିହାରେ ମାଇନରସ୍କୁଲ ଶିକ୍ଷା ବିଭାଗ ମଂଜୁର କଲେ । ସ୍କୁଲଟି ଗୋପବନ୍ଧୁ ବାବୁଙ୍କର ସମ୍ପାଦକତ୍ୱରେ ଗୋଟିଏ କାର୍ଯ୍ୟକାରୀ ସମିତିଦ୍ୱାରା ପରିଚାଳିତ ହେଉଥିଲା । ଛାତ୍ରମାନଙ୍କର ଅବସ୍ଥା ଦେଖି ଯଥାସମ୍ଭବ ବେତନ ଆଦାୟ କରାଯାଉଥିଲା । ସେଥିପାଇଁ ସ୍କୁଲର ସମସ୍ତ ଖର୍ଚ୍ଚ ସ୍ଥାନୀୟ ଚାନ୍ଦା ଦ୍ୱାରା ନିର୍ବାହିତ ହେଉଥିଲା । ବର୍ଷାଦିନ ବ୍ୟତୀତ ଅନ୍ୟ ଋତୁରେ ଶିକ୍ଷା ଉନ୍ମୁକ୍ତ ପ୍ରାଙ୍ଗଣରେ ବୃକ୍ଷଛାୟାରେ ଦିଆ ଯାଉଥିଲା ।

ଏହିପରି ଦୁଇବର୍ଷ ସ୍କୁଲ ଚଳିବା ପରେ ୧୯୧୧ ମସିହା ଅକ୍ଟୋବରମାସ ତା୧୧ରିଖରେ ଶ୍ରୀଯୁକ୍ତ ପଣ୍ଡିତ ନୀଳକଣ୍ଠ ଦାସ ଏମ.ଏ. ପାସ୍ କରି ଆସି କର୍ମରେ ଯୋଗ ଦେଲେ । ୧୯୧୨ ମସିହା ଜାନୁଆରି ମାସରେ ଉଚ୍ଚଇଂରାଜି ବିଦ୍ୟାଳୟର ୪ର୍ଥ ଶ୍ରେଣୀ ଖୋଲା ଯାଇଥିଲା । ସେହି ବର୍ଷ ଶ୍ରୀଯୁକ୍ତ

ରାମଚନ୍ଦ୍ର ରଥ ସ୍କୁଲ କାର୍ଯ୍ୟରେ ଯୋଗ ଦେଲେ । କ୍ରମେ ସ୍କୁଲର ସୁଖ୍ୟାତି ଚତୁରାଡ଼େ ବ୍ୟାପିବାକୁ ଲାଗିଲା । ଦେଶର ନାନାସ୍ଥାନରୁ ଛାତ୍ରମାନେ ଆଗ୍ରହ-ସହକାରେ ଆସିବାକୁ ଲାଗିଲେ । ନିକଟବର୍ତ୍ତୀ କେତେକ ସ୍ୱାର୍ଥପର ବ୍ୟକ୍ତି ଙ୍କ ଲୋକ ସମାଜ ଏବଂ ଧର୍ମ ନାମରେ ଦ୍ୱାହି ଦେଇ ଉକ୍ତ ଅନୁଷ୍ଠାନଟିର ଅନିଷ୍ଟ ଚିନ୍ତା କରିବାକୁ ଲାଗିଲେ । ୧୯୧୨ ମସିହା ମାର୍ଚ୍ଚ୧୨ତାରିଖ ଦିନ ସ୍କୁଲରେ ହଠାତ୍ ନିଆଁ ଲାଗି ସ୍କୁଲର ସମସ୍ତ ବ୍ୟବହାର୍ଯ୍ୟ ଜିନିଷ ସଙ୍ଗେ ସଙ୍ଗେ ଏହାର ବହୁମୂଲ୍ୟ ପୁସ୍ତକାଗାର ମଧ୍ୟ ବିନଷ୍ଟ ହୋଇଗଲା । ଏହି ଘରପୋଡ଼ିରେ ପ୍ରାୟ ପାଞ୍ଚହଜାର ଟଙ୍କା ମୂଲ୍ୟର ପଦାର୍ଥ ନଷ୍ଟ ହୋଇଗଲା । ବିଧାତା! ଏମାନଙ୍କୁ କର୍ମକ୍ଷେତ୍ରରେ ପରୀକ୍ଷା କରୁଥିବାର କର୍ମୀମାନେ ବୁଝିପାରିଲେ । ଈଶ୍ୱରଙ୍କର ଇଚ୍ଛା ନାନାପ୍ରକାରେ ପୂର୍ଣ୍ଣ ହୁଏ । କର୍ମୀମାନଙ୍କର କର୍ମରେ ଏ ଦୁର୍ଘଟଣା ବିଶେଷ ସାହାଯ୍ୟ କରିଥିଲା । ସେମାନେ ଦେଶର ଚତୁରାଡ଼ୁ ବିପୁଳ ଅର୍ଥ ଓ ସହାନୁଭୂତି ଲାଭକଲେ । କର୍ମରେ ଏମାନଙ୍କର ବିଶ୍ୱାସ ବଦ୍ଧମୂଳ ହେଲା । କିଛିଦିନପରେ ଆଚାର୍ଯ୍ୟ ହରିହର ଦାସ ପ୍ୟାରିମୋହନ ଏକାଡେମୀରୁ ବିଦାୟ ନେଇ ଏହି କର୍ମକେନ୍ଦ୍ରରେ ଯୋଗଦେଲେ । ୧୯୧୩ ମସିହାରେ ସ୍କୁଲର ୨ୟ ଓ ୩ୟ ଶ୍ରେଣୀ ଖୋଲାଗଲା । ଦେଶର ବିଭିନ୍ନ ସ୍ଥାନରୁ ଛାତ୍ରମାନେ ବହୁସଂଖ୍ୟାରେ ଆସିବାରୁ ସେମାନଙ୍କର ଅବସ୍ଥାନ ପାଇଁ ଛାତ୍ରାବାସ ନିର୍ମିତ ହେଲା ଏବଂ ବର୍ଷାସମୟରେ ସ୍କୁଲକାର୍ଯ୍ୟ ଚଳିବା ପାଇଁ ଯେ ଘର ପ୍ରସ୍ତୁତ ହୋଇଥିଲା ତାହା ପ୍ରବଳ ଝଡ଼କାରେ ବିନଷ୍ଟ ହୋଇଥିଲା । ଏହିପରି ବାରଂବାର ବିପଦ ଭୋଗକରି କର୍ମୀମାନଙ୍କର ଉତ୍ସାହ ଦ୍ୱିଗୁଣିତ ଓ ଆଶା ଉଜ୍ଜ୍ୱଳତର ହୋଇଥିଲା । ଏହି ସମୟରେ ପଣ୍ଡିତ ଗୋଦାବରୀଶ ମିଶ୍ର ଏମ୍. ଏ. ଆସି ୧୯୧୩ ମସିହା ମଇମାସ ପହିଲା ତାରିଖରେ ଯୋଗଦେଲେ । ସେତେବେଳେ ଉଚ୍ଚଇଂରାଜୀ ବିଦ୍ୟାଳୟର କାର୍ଯ୍ୟ ଚଳିବାପାଇଁ ଶିକ୍ଷକଙ୍କର ଅଭାବ ରହିଲା ନାହିଁ । ବିଶ୍ୱବିଦ୍ୟାଳୟର ନିୟମ ଅନୁସାରେ କୋଠାଘର ବ୍ୟତୀତ ଉଚ୍ଚଇଂରାଜୀ ବିଦ୍ୟାଳୟ ମଂଜୁର ହୋଇ ନ ପାରେ । ସେତେବେଳେ ଉନ୍ମୁକ୍ତ ବାୟୁରେ ଶିକ୍ଷାଦାନ (Open air system) ର ଆବଶ୍ୟକତା ବୁଝାଇବା ଅସଂଭବ ।

ବିଶ୍ୱବିଦ୍ୟାଳୟର ସାମିଲ ନକରି ସ୍କୁଲଟି ସ୍ୱତନ୍ତ୍ର ଭାବରେ ରଖି ହାଇସ୍କୁଲର ପାଠପଢ଼ା ସଙ୍ଗେ ସଙ୍ଗେ କୃଷି, ଶିଳ୍ପ ଓ ବାଣିଜ୍ୟ ବିଷୟକ ଶିକ୍ଷାମାନ ଦିଆଯାଇପାରିଥାନ୍ତା, ମାତ୍ର ଓଡ଼ିଶା ଭଳି ଦେଶରେ ଏତାଦୃଶ ବିଦ୍ୟାଳୟରେ ଛାତ୍ରସଂଖ୍ୟାର ଅଭାବ ମନେ କରି ଉଚ୍ଚ ଇଂରାଜୀ ବିଦ୍ୟାଳୟ ପାଇଁ ଗୋଟିଏ କୋଠାଘର ପ୍ରସ୍ତୁତ କରାଇଲେ। ୧୯୧୪ ମସିହାରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଏମ୍, ଏ, ପାସ କରିବା ସଙ୍ଗେ ସଙ୍ଗେ କର୍ମକ୍ଷେତ୍ରରେ ଆସି ପହଞ୍ଚିଗଲେ। ସେ ସତ୍ୟବାଦୀକୁ ଆସିବା ପାଇଁ ବହୁଦିନରୁ ପ୍ରସ୍ତୁତ ହେଉଥିଲେ । ଇତି ମଧ୍ୟରେ ଆଉ କେତେଗୁଡ଼ିଏ କର୍ମୀ ଆସି ଏଠାରେ ଯୋଗ ଦେଇଥିଲେ। ୧୯୧୪ ମସିହାରେ ସ୍କୁଲର ପ୍ରଥମଶ୍ରେଣୀ ଖୋଲିଗଲା । ଏତେଗୁଡ଼ିଏ ଉଚ୍ଚ ଶିକ୍ଷିତ, ତ୍ୟାଗୀ, ଉପଯୁକ୍ତ, ନିଷ୍ଠାପର ଦେଶସେବକଙ୍କର ଏକତ୍ର ସମାଗମରେ ସ୍କୁଲର ଭବିଷ୍ୟତ ଯେ ସ୍ଥାୟୀ ଏବଂ ଦୃଢ଼ ହେବ ଏଥିରେ କାହାରି ସନ୍ଦେହ ରହିଲା ନାହିଁ । ସତ୍ୟବାଦୀଙ୍କ ବକୁଳ ବନରୁ ପ୍ରାପ୍ତ ଏ ୧୦ ଏକର ଜମି ଛାତ୍ରାବାସ ଏବଂ ସ୍କୁଲ ବ୍ୟବହାର ପାଇଁ ନିଆଗଲା । ସ୍କୁଲକୁ କଲିକତା ବିଶ୍ୱବିଦ୍ୟାଳୟ ସଙ୍ଗେ ସାମିଲ କରିବା ନିମନ୍ତେ ଗୋପବନ୍ଧୁ ୧୯୧୪ ମସିହା ଜାନୁଆରୀ ମାସରେ ଦରଖାସ୍ତ କରିଥିଲେ। ସେଥିରେ ବିଶ୍ୱବିଦ୍ୟାଳୟର କର୍ତ୍ତୃମାନେ ଏମାନଙ୍କୁ ଆର୍ଥିକ ସାହାଯ୍ୟ ଗ୍ରହଣ କରିବାପାଇଁ ବାଧ୍ୟ କଲେ। ବିଶ୍ୱବିଦ୍ୟାଳୟର ସାହାଯ୍ୟ ଏମାନଙ୍କର ସ୍ୱାଧୀନତା ନଷ୍ଟ କରିବ, ଏମାନେ ଦରିଦ୍ର ନିଃସ୍ୱ ଛାତ୍ରମାନଙ୍କ ଶିକ୍ଷାପାଇଁ ତେତେ ଯତ୍ନବାନ୍ ହୋଇପାରିବେ ନାହିଁ, ଅବୈତନିକ ଭାବରେ ଛାତ୍ରମାନଙ୍କୁ ସେମାନଙ୍କର ଅବସ୍ଥା ଜାଣି ଶିକ୍ଷା ଦିଆଯାଇ ପାରିବ ନାହିଁ, ସୁତରାଂ ପଲ୍ଲୀର ସାଧାରଣ ଲୋକଙ୍କ ମଧ୍ୟରେ ଶିକ୍ଷା ବିସ୍ତାର ଯେ ତାଙ୍କର ମୂଳ ଲକ୍ଷ୍ୟ,ତହିଁର ଏହା ଏକ ପ୍ରଧାନ ଅନ୍ତରାୟ ହେବ। କର୍ମୀମାନେ ଯେ ସ୍ୱଳ୍ପ ପାରିଶ୍ରମିକ ନେଇ କାର୍ଯ୍ୟ କରିବାପାଇଁ ଦୃଢ଼ପ୍ରତିଜ୍ଞ ହୋଇ ଅଛନ୍ତି, ବିଶ୍ୱବିଦ୍ୟାଳୟରୁ ସାହାଯ୍ୟ ଗ୍ରହଣ କଲେ ସେ ସ୍ୱାର୍ଥତ୍ୟାଗ କେଉଁଠାରେ ରହିବ, ଏହିସବୁ ଚିନ୍ତା କରି ପଣ୍ଡିତ ଗୋପବନ୍ଧୁ ଓ ତାଙ୍କର ସହକର୍ମୀମାନେ ତହିଁରେ ଅସ୍ୱୀକୃତ ହେବାରୁ ବିଶ୍ୱବିଦ୍ୟାଳୟ ସଙ୍ଗେ ସାମିଲ ହେବା କିଛିଦିନ ଛିଡ଼ିଯାଇଥିଲା। ମଂକୁରି ଆସୁ ଆସୁ ସେହିବର୍ଷ

ନଭେମ୍ବର ତା ୨୫ ରଖ ହୋଇଗଲା ଏବଂ ମଂଜୁର କେବଳ ବର୍ଷକ ପାଇଁ ମିଳିଥିଲା । ସେହି ବର୍ଷର ପିଲାମାନେ ଅନ୍ୟ ସ୍କୁଲରେ ବାହାର ଛାତ୍ର ଭାବରେ ପରୀକ୍ଷା ଦେଇ ସମସ୍ତେ କୃତକାର୍ଯ୍ୟ ହୋଇଥିଲେ । ଏହିପରି ପ୍ରତିବର୍ଷ ମଂଜୁରି ଆସୁଥାଏ । ଶେଷରେ ୧୯୧୭ ମସିହାରେ ବିଶ୍ୱବିଦ୍ୟାଳୟ ଏକାବେଳକେ ମଂଜୁର କଲେ । ୧୯୧୮ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ସଙ୍ଗେ ସାମିଲ ହେଲା । ୧୯୧୯ ଓ ୧୯୨୦ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ରହି ସନ୍ତୋଷଜନକ ଫଳ ଦେଖାଇଥିଲା । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉନ୍ନତଫଳ ଦେଖାଇବାକୁ ଯାଇ ବିଦ୍ୟାଳୟର ଆନୁସଙ୍ଗିକ କୃଷି, ବୟନ ଓ ବଢ଼େଇକାମ ଇତ୍ୟାଦିରେ କ୍ରମେ ଶିଥିଳତା ପ୍ରକାଶ ପାଇଥିଲା । ଏହା ବୋଲି ଯେ ସେ ସମସ୍ତ ଲୋପ ପାଇଥିଲା ତାହା ନୁହେ । ଏହି ଦଶବର୍ଷ ମଧ୍ୟରେ ସେ ସବୁ ବିଷୟରେ କେତେକ ଛାତ୍ର ବିଶେଷ ଅଭିଜ୍ଞତା ଲାଭ କରିଥିଲେ ।

ଅନେକେ ପଶ୍ନ କରି ପାରନ୍ତି, ସତ୍ୟବାଦୀ ଇସ୍କୁଲର ଏହି ପନ୍ଦର ବର୍ଷ ଜୀବନ ମଧ୍ୟରେ ସେ ଦେଶରେ କି କାର୍ଯ୍ୟ କରିଛି ? କେବଳ ବିଶ୍ୱବିଦ୍ୟାଳୟର ସମ୍ପର୍କରେ ଆସି କେତୋଟି ସରକାରୀ ଚାକରିଆ ଗଢ଼ିବା ବ୍ୟତୀତ ତାହାର ଆଉ କାର୍ଯ୍ୟ କଣ ? ଓଡ଼ିଶାର ଅନ୍ୟାନ୍ୟ ସ୍କୁଲ ତୁଳନାରେ ସେ ସ୍କୁଲର ବିଶେଷତ୍ୱ ବା କେଉଁଠାରେ ? ଏହାଁର ଉତ୍ତର ଦେବାକୁ ହେଲେ ଆମ୍ଭମାନଙ୍କୁ ବହୁଦୂର ଯିବା ଆବଶ୍ୟକ ହେବ ନାହିଁ । ସତ୍ୟବାଦୀ ଇସ୍କୁଲ ଯେ ଗତ ୧୫ବର୍ଷ ମଧ୍ୟରେ ନାନା ଅବସ୍ଥା ଦେଇ ନାନା ଘଟଣାଚକ୍ରରେ ବହୁବିଧ ସୁଖ ଦୁଃଖ ଭୋଗି କାର୍ଯ୍ୟ କରିଅଛି ତାହା ବୃଥା ହୋଇ ନାହିଁ । ସତ୍ୟବାଦୀର ଉନ୍ମୁକ୍ତ ବିଦ୍ୟାଳୟ ସମଗ୍ର ଦେଶରେ ଶିକ୍ଷା ଦେଇଛି– ବହୁମଲ୍ୟ ଉପକରଣ ଓ ବହୁବ୍ୟୟସାଧ୍ୟ ସୁବୃହତ୍ ଅଟ୍ଟାଳିକା ବ୍ୟତୀତ ବିଶ୍ୱବିଦ୍ୟାଳୟର ଶିକ୍ଷା ଦିଆ ଯାଇପାରେ । ଭୂମି ଉପରେ ସ୍ୱଚ୍ଛନ୍ଦରେ ବିଛଣାରେ ବସି ସମ୍ମୁଖରେ କ୍ଷୁଦ୍ର କ୍ଷୁଦ୍ର ଡେସ୍କ ମାନ ରଖି ପାଠ ପଢ଼ିବା ରୀତି ସତ୍ୟବାଦୀ ଇସ୍କୁଲ ଶିକ୍ଷା ଦେଇଛି । ସ୍କୁଲର ଏହି ଅଳ୍ପକାଳ

ମଧ୍ୟରେ ଯେଉଁ ଯୁବକମାନେ ସତ୍ୟବାଦୀରୁ ପାସ୍ କରିଯାଇଛନ୍ତି, ସେମାନେ ଅନ୍ୟାନ୍ୟ ସ୍କୁଲର ଛାତ୍ରମାନଙ୍କ ପରି ଯେ କେବଳ ପାସ୍ କରି ସ୍କୁଲରୁ ଯାଇଛନ୍ତି ତାହା ନୁହେ—ସେମାନେ ଜାତୀୟ ଭାବରେ, ଜାତୀୟ ଉନ୍ମାଦନାରେ, ଜାତୀୟ ପ୍ରାଣରେ ଅନୁପ୍ରାଣିତ ହୋଇ ସଂସାରରେ ପ୍ରବେଶ କରିଅଛନ୍ତି । ଭବିଷ୍ୟତ ଜୀବନ ଲାଗି ସେମାନେ ବିଶେଷ ଯୋଗ୍ୟତା ଅର୍ଜନ କରିଅଛନ୍ତି । ଅନ୍ୟାନ୍ୟ ସ୍କୁଲ କଲେଜରୁ ବୈଜ୍ଞାନିକ, ଦାର୍ଶନିକ, କବି, ଜ୍ୟୋତିଷୀ ଏବଂ ଗାଣିତିକ ବାହାରି ପାରନ୍ତି; ମାତ୍ର ସତ୍ୟବାଦୀ ବିଦ୍ୟାଳୟରୁ ତା ସଙ୍ଗେ ସଙ୍ଗେ କେତେଜଣ ମନୁଷ୍ୟ ବାହାରି ଅଛନ୍ତି । ବିଶେଷତଃ ସେମାନଙ୍କ ମଧ୍ୟରୁ କେତେକ ଓଡ଼ିଶାର ଜାତୀୟ ଜୀବନର ମୂଳଭିତ୍ତି ସ୍ୱରୂପ । ଏକ କଥାରେ କହିବାକୁ ଗଲେ ଓଡ଼ିଶାର ଜାତୀୟ ଜୀବନର ମୂଳରେ ସତ୍ୟବାଦୀ ଇସ୍କୁଲ ବିଦ୍ୟମାନ । ସେତିକି ନୁହେ, ଭାରତର ପୁରାଣ ଯୁଗର ଗୁରୁ ଶିଷ୍ୟ ସମ୍ବନ୍ଧ ଯେ ଏ ଯୁଗରେ ସମ୍ଭବପର, ଏହାର ଜ୍ୱଳନ୍ତ ଆଦର୍ଶ ସତ୍ୟବାଦୀ ଇସ୍କୁଲ । ମୋଟ ଉପରେ ଭାରତରେ ଉନ୍ମୁକ୍ତ ଗଗନ, ଉନ୍ମୁକ୍ତ ପବନ, ମଞ୍ଜୁକୁଞ୍ଜ ବିଦ୍ୟାଳୟ ନିମନ୍ତେ ଉପଯୋଗୀ ସ୍ଥାନ, ସତ୍ୟବାଦୀ ଏହା ପ୍ରମାଣ କରିଅଛି । ବହୁ ବେତନଭୋଗୀ ଶିକ୍ଷକ ଆବଶ୍ୟକ ନୁହନ୍ତି, ହୃଦୟବାନ୍ ତ୍ୟାଗୀ ଶିକ୍ଷିତ ଯୁବକ ଇଚ୍ଛାକଲେ ଦେଶରେ ସହଜରେ ବହୁ ବିଦ୍ୟାଳୟ ହୋଇପାରେ, ସତ୍ୟବାଦୀ ଏହା କାର୍ଯ୍ୟରେ ଦେଖାଇଅଛି । ଗୋପବନ୍ଧୁଙ୍କ କଠୋର ତପସ୍ୟାର ଏହା ଏକ ସାଧନାକ୍ଷେତ୍ର ଥିଲା । ଏଠାରେ ଶିକ୍ଷକମାନେ ବିଧିରକ୍ଷା କରି ଯେ ଧର୍ମ ଓ ନୀତି ଉପଦେଶମାନ ଦେଉଥିଲେ ତାହା ନୁହେ;ସେ ଉପଦେଶ ଗୁଡ଼ିକ କାର୍ଯ୍ୟରେ କିପରି ପରିଣତ ହେବ, ସେ ସକଳ ବିଷୟରେ ଛାତ୍ରମାନଙ୍କର କିପରି ଅଭ୍ୟାସ ଜନ୍ମିବ ତହିଁ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ଲୋକସେବାର ସହସ୍ର ପନ୍ଥା ଥିବା ସ୍ଥଳେ ଭବିଷ୍ୟତରେ ଏହି ଲୋକସେବା ନିମନ୍ତେ ପ୍ରତ୍ୟେକ ଛାତ୍ରର ଜୀବନ ସେଠାରେ ଗଢ଼ାଯାଉଥିଲା । ଛାତ୍ରମାନେ ନିଜ ଆଖିରେ ଦେଶର ଦୁର୍ଦ୍ଦଶା ଦେଖିବା, ନିଜ କାନରେ ବିପନ୍ନ ପ୍ରତିବେଶୀର କାତରୋକ୍ତି ଶୁଣିବା, ନିଜ ହସ୍ତ ପଦାଦିକୁ ସେମାନଙ୍କ ସେବାରେ ଲଗାଇବା, ହୃଦୟରେ

ସେମାନଙ୍କ ଲାଗି ସ୍ନେହ ସହାନୁଭୂତି ଅନୁଭବ କରି ପ୍ରକୃତ ମନୁଷ୍ୟତା ଲାଭ କରିବା ନିମନ୍ତେ ସତ୍ୟବାଦୀ ବିଦ୍ୟାଳୟରେ ସୁବିଧା କରାଯାଇଥିଲା । ଏଠାରେ ଚରିତ୍ରର ଏ ସଂଯମ, ଶୃଙ୍ଖଳା ଓ ଶାସନା ଦେଖିଲେ ଓଡ଼ିଆଜାତିର ଭବିଷ୍ୟତ ସମ୍ବନ୍ଧରେ ନୈରାଶ୍ୟର କୌଣସି ଲେଶ କାରଣ ନାହିଁବୋଲି ଜଣା ଯାଉଥିଲା । ଉତ୍କଳରେ ତଥା ଭାରତରେ ଏହା ଯେ ଏକ ଆଦର୍ଶ ବିଦ୍ୟାପୀଠ ଥିଲା, ତାହାର ପ୍ରତ୍ୟେକ ଶୃଙ୍ଖଳାବଦ୍ଧ ବିଭାଗରୁ ପରିଚୟ ମିଳେ ।

ସତ୍ୟବାଦୀ କୁଳଗୃହ ବିଦ୍ୟାଳୟର ସଂଲଗ୍ନ ଥିଲା ( Boarding School )। ତାହା ଏପରି ଭାବରେ ନିର୍ମିତ ହୋଇଥିଲା ଯେ ଆଚାର୍ଯ୍ୟ ମହାଶୟ ଏକସ୍ଥାନରେ ବସି ସମସ୍ତ ଛାତ୍ରାବାସ ପ୍ରତି ଦୃଷ୍ଟି ରଖିପାରୁଥିଲେ । ଛାତ୍ରାବାସ ଘୃରେଟି ବିଭାଗ (Block) ରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ବିଭାଗର ଅଧ୍ୟକ୍ଷ ( Block teacher ) ରୂପେ ଉଭୟ ପ୍ରାନ୍ତରେ ଦୁଇଜଣ ଶିକ୍ଷକ ଅବସ୍ଥାନ କରୁଥିଲେ । ଏମାନଙ୍କ ଶାସନ ବ୍ୟତୀତ ପ୍ରତ୍ୟେକ କୋଠରିର ପିଲାମାନଙ୍କ ଶାସନ କରିବା ପାଇଁ ସେହି କୋଠରିସ୍ଥ ଛାତ୍ରମାନଙ୍କ ଦ୍ୱାରା ନିର୍ବାଚିତ ଏକ ଛାତ୍ର 'ମନିଟର୍' ନିଯୁକ୍ତ ହେଉଥିଲେ । ଏକ ବିଭାଗସ୍ଥ ସମସ୍ତ ମନିଟର୍‌ଙ୍କ ଦ୍ୱାରା ନିର୍ବାଚିତ ହୋଇ ଜଣେ 'ବ୍ଲକ୍ ମନିଟର୍' ରୂପେ କାର୍ଯ୍ୟ କରୁଥିଲେ । ପ୍ରତ୍ୟେକ ପ୍ରକୋଷ୍ଠର ମନିଟର୍ ତାଙ୍କ ଅଧୀନରେ ଥିବା ଛାତ୍ରମାନଙ୍କର ଦୈନିକ ହିସାବ ଦେଖୁଥିଲେ । ଏପରି କି କୌଣସି ଛାତ୍ର ଅଳ୍ପବୟସ୍କ ହେବାରୁ ହିସାବ ରଖିପାରୁ ନ ଥିଲେ କିମ୍ବା କେହି ଅନୁଚିତ ଖର୍ଚ୍ଚ କଲେ ସେହି ପ୍ରକୋଷ୍ଠର ମନିଟର୍ ନିଜ ପାଖରେ ଉକ୍ତ ପିଲାମାନଙ୍କର ଟଙ୍କା ପଇସା ରଖି ସେମାନଙ୍କର ପ୍ରତିଦିନର ଖର୍ଚ୍ଚ ଚଳାଉଥିଲେ, ସେହି ପ୍ରକୋଷ୍ଠରେ କାହାରି ଶରୀର ଅସୁସ୍ଥ ହେଲେ କୁଳପତି ( ଆଚାର୍ଯ୍ୟ ) ଙ୍କୁ ଖବର ଦେଉଥିଲେ । ପ୍ରକୋଷ୍ଠସ୍ଥ ଛାତ୍ରମାନେ ନିୟମିତରୂପେ ପଢ଼ାଶୁଣା କରୁଛନ୍ତି କି ନାହିଁ ମନିଟର ତାହା ବୁଝୁଥିଲେ । ଦୋଷାଦୋଷ ବ୍ଲକ୍ ମନିଟର୍‌ଙ୍କୁ ଜଣାଉଥିଲେ । ବ୍ଲକ୍ ମନିଟର୍ ବ୍ଲକ୍ ଶିକ୍ଷକଙ୍କୁ ଜଣାଉଥିଲେ, ଏବଂ ରୋଗୀ-

ମାନଙ୍କର ଉପଯୁକ୍ତ ସେବା ଶୁଶ୍ରୂଷା ହେଉଛି କି ନାହିଁ, ତାହାଁର ନଜର ରଖୁଥିଲେ । ମୋଟ ଉପରେ ଗୁରୁଶିଷ୍ୟ ସମ୍ବନ୍ଧ ଦୃଢ଼ କରିବାପାଇଁ,ଛାତ୍ରମାନେ ନିଜ ନିଜ ଦ୍ୱାରା ଶାସିତ ହେବାପାଇଁ ଏବଂ ମିତବ୍ୟୟୀ ହେବାପାଇଁ ଏସବୁ ନିୟମ କରାଯାଇଥିଲା । ଆୟୁର୍ବେଦୀୟଙ୍କ ଚିକିତ୍ସା ବ୍ୟତୀତ ସ୍ଥାନୀୟ ଡାକ୍ତର ପ୍ରତ୍ୟହ ଆସି ଛାତ୍ରାବାସରେ ଚିକିତ୍ସା କରୁଥିଲେ । ମଝେ ମଝେ ପୁରୀରୁ କବିରାଜ ଅଣାଇ ଚିକିତ୍ସା କରାଯାଉଥିଲା । ଛାତ୍ରମାନେ ଛାତ୍ରାବାସରେ ସେମାନଙ୍କ ଦ୍ୱାରା ଗଠିତ ନିୟମ ଅନୁଯାୟୀ ଚାଳିତ ହେଉଥିଲେ । ସେଥିଯୋଗେ ସକାଳ ୫ଟା ଠାରୁ ସନ୍ଧ୍ୟା ୯ ୧୦ ଘଣ୍ଟା ପର୍ଯ୍ୟନ୍ତ ସେମାନଙ୍କୁ କୌଣସି ସମୟରେ କର୍ତ୍ତବ୍ୟରୁ ଅବସର ମିଳୁ ନ ଥିଲା । ପ୍ରାତଃସ୍ନାନ ସେମାନଙ୍କ ଦୈନିକ କାର୍ଯ୍ୟ-ନିର୍ଘଣ୍ଟର ଅନ୍ତର୍ଭୁକ୍ତ ଥିଲା । ଖରା ବର୍ଷା ଶୀତ, କୌଣସି ଋତୁରେ କେହି ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପ୍ରାତଃସ୍ନାନ ନକଲେ ପ୍ରକୋଷ୍ଠର ମନିଟରଙ୍କ ଦ୍ୱାରା ଶାସିତ ହେଉଥିଲା । ଛାତ୍ରମାନଙ୍କ ମନରେ ଧର୍ମଭାବ ଜାଗ୍ରତ କରିବା ଲାଗି ସ୍ନାନପରେ ୧୫ମିନଟ୍ କାଳ ଈଶ୍ୱର ଆରାଧନା ପାଇଁ ନିର୍ଦ୍ଦିଷ୍ଟ ଥିଲା । ସେଥିପାଇଁ ଗୋପବନ୍ଧୁ ଓ ନୀଳକଣ୍ଠ 'ଉପାସନା' ନାମକ ଖଣ୍ଡିଏ ପୁସ୍ତିକା ପ୍ରଣୟନ କରିଥିଲେ । ଉପାସନା ପରେ ଅର୍ଦ୍ଧ ଘଣ୍ଟାରୁ ଅଧିକ ସମୟ ବ୍ୟାୟାମ ସକାଶେ ନିର୍ଦ୍ଦିଷ୍ଟ ଥିଲା । ବିଭିନ୍ନପ୍ରକାରର ବ୍ୟାୟାମ ବିଭିନ୍ନ ରୁଚି ଅନୁମୋଦିତ ହୋଇ ଅଭ୍ୟାସ କରାଯାଉଥିଲା । ବ୍ୟାୟାମପରେ ଏକତ୍ର କିଛି ଲଘୁ ଆହାର କରି ସମସ୍ତେ ନିଜ ନିଜ ସ୍ଥାନରେ(seat)ଅଧ୍ୟୟନରେ ଲାଗୁଥିଲେ । ୯ ୧।୩୦ ସମୟରେ ସମସ୍ତେ ଏକତ୍ର ଏକସମୟରେ ଭୋଜନ କରି କିଛି ସମୟ ବିଶ୍ରାମାନ୍ତେ ବିଦ୍ୟାଳୟକୁ ଗମନ କରୁଥିଲେ । ସେଠାରୁ ଅପରାହ୍ନ ୪ଟାବେଳେ ଫେରି ନିଜ ନିଜର ନିତ୍ୟକର୍ମ ସମାପନାନ୍ତେ କେହି କେହି ଅବା ବ୍ୟାୟାମ କରୁଥିଲେ । ତତ୍ପରେ ସାଂଧ୍ୟ ଉପାସନାପରେ ଭୋଜନ-ଘଣ୍ଟା ବାଜୁଥିଲା । ଭୋଜନ ସାରି ଦଶମିନିଟ ବିଶ୍ରାମ ନେଇ ଛାତ୍ରମାନେ ଦୈନିକ ପାଠରେ ଲାଗି ରହୁଥିଲେ । ଏ ସମସ୍ତ କାର୍ଯ୍ୟ ନିୟନ୍ତ୍ରିତ ହେବାପାଇଁ ଘଣ୍ଟା ବାଜିବାର ବ୍ୟବସ୍ଥା ଥିଲା । ଛାତ୍ରାବାସର ଖାଦ୍ୟ ବିଭାଗର ପରିଚାଳନା ପାଇଁ ଗୋଟିଏ ସଭା (Mess Board) ଗଠିତ ହୋଇଥିଲା;

ସେଥିରୁ ପ୍ରତ୍ୟେକ ମାସରେ ଜଣେ ଜଣେ ସେକ୍ରେଟେରୀ ହୋଇ ସେ ବିଭାଗର କାର୍ଯ୍ୟ ଚଳାଉଥିଲେ । ପ୍ରତ୍ୟେକ ଦିନର କର୍ମ ଚଳାଇବା ପାଇଁ ନିର୍ଦ୍ଦିଷ୍ଟ ତାଲିକା ଅନୁସାରେ ମନିଟର ମାନେ ନିଯୁକ୍ତ ହେଉଥିଲେ । ଉକ୍ତ ବିଭାଗରେ ଜଣେ ବେତନଭୋଗୀ ମେନେଜର ଥିଲେ । ଛାତ୍ରମାନଙ୍କୁ ସାଂସାରିକ କାର୍ଯ୍ୟରେ ପ୍ରବେଶ କରାଇବା ପାଇଁ ଉକ୍ତ ମେନେଜର ସେମାନଙ୍କୁ ସଙ୍ଗରେ ନେଇ ବଜାରରୁ ହାଟରୁ ସଉଦାମାନ କଣାଉ ଥିଲେ । ଶିକ୍ଷକମାନଙ୍କ ମଧ୍ୟରୁ ଜଣେ ଜଣେ ଏହି ସମସ୍ତ କାର୍ଯ୍ୟ ବୁଝିବା ପାଇଁ ତତ୍ତ୍ୱାବଧାରକ ନିଯୁକ୍ତ ହେଉଥିଲେ । ଛାତ୍ରାବାସସ୍ଥ ଛାତ୍ର ଓ ଶିକ୍ଷକ ମାନଙ୍କର ରନ୍ଧନକାର୍ଯ୍ୟ ଏକତ୍ର ସମାହିତ ହେଉଥିଲା । ଛାତ୍ର ଶିକ୍ଷକଙ୍କ ମଧ୍ୟରେ କିଛି ଭେଦ ନ ରଖି ଶିକ୍ଷକମାନେ ଛାତ୍ରମାନଙ୍କ ସହିତ ଏକ ଖାଦ୍ୟ ଏକ ପଂକ୍ତିରେ ବସି ଭୋଜନ କରୁଥିଲେ । ଛାତ୍ରମାନେ ନିଜହାତରେ ଫସଲ ତିଆରକରି ମେସ୍ (Mess)କୁ ବିକି କରୁଥିଲେ ଏବଂ ତଜ୍ଜନ୍ୟ ଲବ୍ଧ ଧନ ସ୍କୁଲର ସାଧାରଣ ପାଣ୍ଠିର ଅନ୍ତର୍ଭୁକ୍ତ ହେଉଥିଲା । ସ୍କୁଲ କିଂବା ଛାତ୍ରାବାସରେ କାହାର ଦେହ ଅସୁସ୍ଥ ହେଲେ ଛାତ୍ରମାନେ ନିଜେ ନିଜେ ସେମାନଙ୍କର ସେବା ଶୁଶ୍ରୂଷା କରୁଥିଲେ । ସେଥିପାଇଁ କେତେଗୁଡ଼ିଏ ନିୟମ ବନ୍ଧା ଯାଇଥିଲା । ପ୍ରତ୍ୟେକ ପ୍ରକୋଷ୍ଠର ଛାତ୍ରମାନେ ଦିନେ ଦିନେ ରୋଗୀମାନଙ୍କର ସେବା କରିବା ପାଇଁ ବାଧ୍ୟ ଥିଲା । ରୋଗୀର ସେବା କଲା ବେଳେ ସେମାନଙ୍କ ମଧ୍ୟରେ ଜାତିଭେଦ କିଂବା ଉଚ୍ଚନୀଚ ଭାବ ନଥିଲା । ଏପରି କି କେହି ପୂଜାରି ଗୃହର ରୋଗରେ ପଡ଼ିଲେ ପିଲାମାନେ ଆନନ୍ଦରେ ସେମାନଙ୍କର ସେବା କରିଥାନ୍ତି । ଏହି ରୋଗିସେବା ଯେ କେବଳ ଛାତ୍ରାବାସମଧ୍ୟରେ ଆବଦ୍ଧ ଥିଲା ତାହା ନୁହେଁ । ସତ୍ୟବାଦୀର ନିକଟସ୍ଥ ଗ୍ରାମମାନଙ୍କରେ ପିଲାମାନେ ରୋଗସମୟରେ ବୁଲି ଲୋକମାନଙ୍କୁ ସାହାଯ୍ୟ କରୁଥିଲେ ଏବଂ କୌଣସି ଗ୍ରାମରେ ଘରପୋଡ଼ି ହେଲେ କିଂବା କୌଣସି ବିପଦ ପଡୁଥିଲେ ସ୍କୁଲର ଶିକ୍ଷକ ଓ ଛାତ୍ରମାନେ ହଠାତ୍ ସେଠାକୁ ଯାଇ ସେମାନଙ୍କୁ ବିପଦରୁ ରକ୍ଷା କରୁଥିଲେ । ସାକ୍ଷିଗୋପାଳଙ୍କ ଦର୍ଶନ ଲାଭ ପାଇଁ ଯାତ୍ରୀମାନେ ଆସି ଅସହାୟ ଅବସ୍ଥାରେ ପଡ଼ିଲେ ଛାତ୍ରମାନେ ସେମାନଙ୍କର ସେବା ଶୁଶ୍ରୂଷା କରୁଥିଲେ ।

ଏପରି କି ସେମାନଙ୍କ ମଧ୍ୟରୁ କେହି କେହି ମରିଗଲେ ଛାତ୍ରମାନେ ଶବସତ୍କାର କରୁଥିଲେ । କେବଳ ସତ୍ୟବାଦୀରେ ନୁହେଁ, ଦୂର ପୁରୀ କଟକ ପ୍ରଭୃତିରେ ମହାମାରୀ ଉପସ୍ଥିତ ହେଲେ ଔଷଧପତ୍ର ସଙ୍ଗରେ ଘେନି ସେବା କରିବାକୁ ଯାଉଥିଲେ । ପୁରୀ ରଥଯାତ୍ରା ସମୟରେ ଛାତ୍ରମାନେ ସେଠାରେ ସ୍ୱେଚ୍ଛାସେବକ ହୋଇ ପାଣି ବାଣ୍ଟିବାଠାରୁ ଆରମ୍ଭ କରି ଶବସତ୍କାର ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଆଗ୍ରହର ସହିତ ସମ୍ପନ୍ନ କରୁଥିଲେ । ଓଡ଼ିଶା ସର୍ବଦା ବନ୍ୟା ଦୁର୍ଭିକ୍ଷ କ୍ଳିଷ୍ଟ । ଯେଉଁଠାରେ ବନ୍ୟା ହେଲା ପିଲମାନେ ଜୀବନକୁ ଭୟ ନ କରି ଚୂଙ୍ଗା ଗୃଡ଼ିକ ଡ଼ଙ୍ଗାରେ ବୋଝାଇ କରି ସେଠାକୁ ଯାଇ ଲୋକଙ୍କର ପ୍ରାଣରକ୍ଷା କରୁଥିଲେ । ଯେଉଁଠାରେ ଦୁର୍ଭିକ୍ଷ ପଡ଼ିଲା ସେଠାରେ ମାସ ମାସ ଧରି ରହି ଦିନରାତି ପରିଶ୍ରମ କରି ଲୋକଙ୍କୁ ବଞ୍ଚାଉଥିଲେ । ବିଦ୍ୟାଳୟରେ ଧୂମ୍ରପାନ ନିଷେଧ ଥିଲା, ଏପରି କି ପାନଗୁଆ ପର୍ଯ୍ୟନ୍ତ ଶିକ୍ଷକ ଓ ଛାତ୍ରମାନେ ବ୍ୟବହାର କରୁ ନ ଥିଲେ । ଛାତ୍ରମାନଙ୍କ ସୁବିଧା ନିମନ୍ତେ ଗୋଟିଏ ବ୍ୟାଙ୍କ(Bank) ଖୋଲା ଯାଇଥିଲା । ସେଥିରେ ଛାତ୍ରମାନେ ଅଂଶୀଦାର ଥାଇ ସୁବିଧା ଅନୁସାରେ ଟଙ୍କା ଋଣ କରିପାରୁଥିଲେ; ପ୍ରତି ମାସରେ ଛାତ୍ରମାନଙ୍କ ମଧ୍ୟରୁ ଦୁଇଜଣ ଲେଖାଏଁ ସେକ୍ରେଟେରୀ ହୋଇ କାର୍ଯ୍ୟ ଚଳାଉଥିଲେ । ସେହି ବ୍ୟାଙ୍କର ଗୋଟିଏ ଦୋକାନ ମଧ୍ୟ ଥିଲା । ସେଇଟି ସତ୍ୟବାଦୀ ନାମାନୁସାରେ 'ସତ୍ୟବାଦୀ ଷ୍ଟୋର୍' ନାମରେ ପରିଚିତ ଥିଲା । ତହିଁର ଲାଭରେ ବ୍ୟାଙ୍କର ଅଂଶୀଦାରମାନଙ୍କୁ ସୁଧ ଦିଆ ଯାଉଥିଲା । ପ୍ରାଥମିକ ବ୍ୟବସାୟ ଶିକ୍ଷା ଲାଭ ପାଇଁ ଏବଂ ଏହା ସାଂସାରିକ ଭବିଷ୍ୟତ୍ ଜୀବନରେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଛାତ୍ରମାନେ ଉକ୍ତ ଦୋକାନରେ କ୍ରୟ ବିକ୍ରୟ କରୁଥିଲେ ଏବଂ କାଇଦାମତେ ହିସାବପତ୍ର ଲେଖି ରଖୁଥିଲେ । ବ୍ୟାଙ୍କ ଓ ଷ୍ଟୋରର କାର୍ଯ୍ୟ ତତ୍ତ୍ୱାବଧାନ ପାଇଁ ଶିକ୍ଷକ-ମାନଙ୍କ ମଧ୍ୟରୁ ଜଣେ ଜଣେ ନିଯୁକ୍ତ ହେଉଥିଲେ । ସ୍କୁଲର ପାଣ୍ଠିଦାଗରେ ସାହାଯ୍ୟ କରିବା ପାଇଁ ଏବଂ ସ୍କୁଲରେ ପାଠ୍ୟ ପୁସ୍ତକର ଅଭାବ ଅନୁଭବ କରି ଶିକ୍ଷକମାନେ ପୁସ୍ତକସବୁ (School publications) ମୁଦ୍ରଣ କରାଇଥିଲେ । ସ୍କୁଲରେ କୃଷିଶିକ୍ଷା ଦେବାପାଇଁ ସ୍କୁଲ ପାଣ୍ଠିରୁ ଅନ୍ଦାଜ

ଏ ୫ କର ଜମି ଖରଦ ହୋଇଥିଲା ଏବଂ ତାହାର ଆୟରୁ ସ୍କୁଲ ଭବିଷ୍ୟତରେ ଚଳିବାର ଆଶା ପୋଷଣ କରାଯାଇଥିଲା ।

ଗରିବ ପିଲାମାନଙ୍କର ପଢିବାର ସୁବିଧା ପାଇଁ Mess ରେ ଏପରି ସୁବନ୍ଦୋବସ୍ତ ଥିଲା ଯେ ପ୍ରତି ଦଶଜଣରେ ଗୋଟିଏ ଗରିବପିଲା ଖାଇବାଖର୍ଚ୍ଚ ନ ଦେଇ ଚଳିପାରିବ । ତାହା ସଙ୍ଗେ ସଙ୍ଗେ ସ୍କୁଲର ଛାତ୍ରାବାସରେ ଗୋଟିଏ ଗରିବ ପାଣ୍ଠି ( Poor fund ) ସ୍ଥାପିତ ହୋଇଥିଲା । ପିଲାମାନେ ସ୍ୱତଃପ୍ରବୃତ୍ତ ହୋଇ ଅବକାଶ ସମୟରେ ଶିକ୍ଷକମାନଙ୍କ ସଂଗରେ ମୋଗଲବନ୍ଦୀରୁ ହେଉ ବା ଗଡ଼ଜାତ ରାଜାମାନଙ୍କଠାରୁ ହେଉ ଭିକ୍ଷା ସଂଗ୍ରହ କରି ଉକ୍ତ ପାଣ୍ଠି ବଢ଼ାଉଥିଲେ । ପୂର୍ବ ବ୍ରହ୍ମଚର୍ଯ୍ୟ ଆଶ୍ରମ ବିଧାନକୁ ଲକ୍ଷ୍ୟରଖି ବିବାହିତ ଛାତ୍ରମାନଙ୍କୁ କୌଣସି ପ୍ରକାରେ ବୃତ୍ତି ବା ସାହାଯ୍ୟ ଦିଆଯାଉ ନଥିଲା । ଉପରନ୍ତୁ ଆମେରିକା ପ୍ରଭୃତି ଦେଶରେ ଦରିଦ୍ର ଛାତ୍ରମାନଙ୍କର ଶିକ୍ଷା ନିମନ୍ତେ ଯେପରି ବ୍ୟବସ୍ଥାମାନ ଅଛି ସତ୍ୟବାଦୀ ବିଦ୍ୟାଳୟରେ ଏକବର୍ଷ କାଳ କେତେକ ଦରିଦ୍ର ଛାତ୍ରଙ୍କ ପାଇଁ ସେପରି ସୁବିଧା କରାଯାଇଥିଲା । ଦିନରେ କେତେକ ସମୟ ସେମାନେ ବିଲରେ ଓ ବଗିଚାରେ, କେହି ବା ବଢ଼େଇଶାଳରେ କାମ କରୁଥିଲେ । ଅନ୍ୟ ସମୟରେ ପଢୁଥିଲେ । ସେମାନଙ୍କୁ ସ୍ୱତନ୍ତ୍ର ଭାବରେ ରାତିରେ ପଢ଼ାଇବା ନିମନ୍ତେ ବ୍ୟବସ୍ଥା ହୋଇଥିଲା । ମାତ୍ର ଆଶାନୁରୂପ ଫଳ ତାହାରେ ହେଲା ନାହିଁ । କାରଣ ଛାତ୍ରମାନଙ୍କର ମାଟ୍ରି-କ୍ୟୁଲେଶନ ପାସ କରିବା ମୁଖ୍ୟ ଉଦ୍ଦେଶ୍ୟ,ସେଥିନିମନ୍ତେ ସାଧାରଣ କ୍ଲାସରେ ନିୟମିତ ଶିକ୍ଷାରୁ ଛାତ୍ରମାନେ ବଞ୍ଚିତ ହେଲେ । ଦିନରେ ଶାରୀରିକ ପରିଶ୍ରମ କରି ରାତିରେ ଟିକିଏ ଅବସନ୍ନ ହୋଇ ପଡୁଥିଲେ; ପୁଣି ରାତିରେ ସେମାନଙ୍କ ପଢ଼ାଇବାନିମନ୍ତେ ଅଧିକସଂଖ୍ୟକ ଶିକ୍ଷକ ବନ୍ଦୋବସ୍ତ କରିବା ଅଧିକବ୍ୟୟସାଧ୍ୟ; ଯେପରି ଦେଖାଗଲା, ଶିକ୍ଷାର ପଦ୍ଧତି, ପାଠର ବିଷୟ, ଅଧାପନାର ସମୟ, ପରୀକ୍ଷାର ପ୍ରକୃତି ନ ବଦଳିଲେ ଏ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇପାରିବ ନାହିଁ । ପ୍ରତ୍ୟେକ ବର୍ଷ ସ୍କୁଲର ବିଭିନ୍ନ ଶ୍ରେଣୀମାନଙ୍କ ମଧ୍ୟରେ ଶ୍ଳୋକାନ୍ତ୍ରର ପ୍ରତିଯୋଗିତା ହେଉଥିଲା । ସେଥିରେ ଛାତ୍ରମାନେ ସଂସ୍କୃତ ଶ୍ଳୋକ ମୁଖସ୍ଥ

କରିବାର ସୁବିଧା ପାଉଥିଲେ । ସଂସ୍କୃତ ଶ୍ଳୋକାବୃତ୍ତିରେ ପ୍ରତିଦ୍ୱନ୍ଦ୍ୱିତାକୁ ଓଡ଼ିଶାରେ ସାଧାରଣତଃ ଶ୍ଳୋକାନ୍ତ ବୋଲି କହୁଥାନ୍ତି । କୌଣସି କୌଣସିଠାରେ ଆହୁରି ସୂକ୍ଷ୍ମରେ ଏହାକୁ 'କାଣ୍ଡ' ବୋଲି କହନ୍ତି । ବିହାର ଉତ୍ତରାଂଚଳରେ ଏହାର ନାମ 'ଶେଷାକ୍ଷରୀ' । ଏଥିରେ ଏକପକ୍ଷର ଶ୍ଳୋକ ଯେଉଁ ଅକ୍ଷରରେ ଶେଷହୁଏ ପ୍ରତିପକ୍ଷ ସେହି ଅକ୍ଷରରେ ଆରମ୍ଭ କରନ୍ତି । ଗୋପବନ୍ଧୁଙ୍କର ପରି 'ଉତ୍କଳ ଯୁବକ କେନ୍ଦ୍ର ସମିତି' ର ଶାଖା ଏହି ସ୍କୁଲରେ ସ୍ଥାପିତ ହୋଇ ନାନା ବିଷୟରେ ଆଲୋଚନାମାନ କରୁଥିଲେ । ଏହି ଶାଖା ସମିତି ପକ୍ଷରୁ 'ବାଣୀ' ନାମରେ ଗୋଟିଏ ତ୍ରୈମାସିକ ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା । ଏହି ସମିତି ବ୍ୟତୀତ "ଇତିହାସ ସମିତି" ନାମରେ ଏକ ସମିତି ସ୍ଥାପନ କରି ଇତିହାସ ଚର୍ଚ୍ଚା କରୁଥିଲେ, 'କୁଳସମ୍ମିଳନୀ' ନାମରେ ଏକ ସଭା ସ୍ଥାପିତ ହୋଇଥିଲା ଏବଂ ପ୍ରତି ଶନିବାର ରାତିରେ କୁଳ ସମ୍ମିଳନୀର ଅଧିବେଶନରେ ଶିକ୍ଷକମାନେ ସାରଗର୍ଭକ ବକ୍ତୃତାମାନ ଦେଉଥିଲେ । ବକ୍ତୃତାମାନ ଶୁଣି ସମସ୍ତେ ଚମତ୍କୃତ ହେଉଥିଲେ । ଦେଶର ପଦସ୍ଥ ଲୋକମାନଙ୍କୁ ସେଠାକୁ ଆମନ୍ତ୍ରଣ କରି ଉପଦେଶମାନ ଶୁଣୁଥିଲେ । ଆହୁରି ମଧ୍ୟ ଆଖି ଆଗରେ ଦେଖି ଶିଖିବା ପାଇଁ ବର୍ଷର କେତେକ ନିର୍ଦ୍ଦିଷ୍ଟ ସମୟ ନାନା ଇତିହାସ-ପ୍ରସିଦ୍ଧ ସ୍ଥାନମାନ ଦର୍ଶନ କରିବାରେ ବ୍ୟୟିତ ହେଉଥିଲା । ଏହି ସ୍କୁଲରୁ ଯେଉଁମାନେ ଶିକ୍ଷା ସମାପ୍ତ କରି ଯାଉଥିଲେ ସେମାନଙ୍କର ଗୋଟିଏ ତାଲିକା ରହି ସେମାନଙ୍କ ଭାବୀ ଜୀବନର ଉନ୍ନତି ଲେଖାହୋଇ ରହୁଥିଲା । ଏହାଛଡ଼ା ବିଦ୍ୟାଳୟରେ ଏକ ସୁବୃହତ୍ ମୂଲ୍ୟବାନ ପୁସ୍ତକାଗାର ଥିଲା । ଏହି ପୁସ୍ତକାଗାରର ନାମ 'ହରିହର ପୁସ୍ତକାଗାର' ଥିଲା । ପୁରୀର ସୁବିଖ୍ୟାତ ପଣ୍ଡିତ ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରତିଷ୍ଠାତା ହରିହର ଦାସଙ୍କ ନାମାନୁସାରେ ଏହାର ନାମକରଣ ହୋଇଥିଲା । ଗୋପବନ୍ଧୁ ପିଲାଦିନେ ପଣ୍ଡିତ ହରିହରଙ୍କୁ ମାନ୍ୟ ଓ ଭକ୍ତି କରୁଥିଲେ । ସେ ସ୍କୁଲରେ ପଢିବା ସମୟରେ 'ପଣ୍ଡିତ ହରିହର' ବୋଲି ଗୋଟିଏ ପଦ୍ୟ ଲେଖିଥିଲେ । 'ତାହା ଅବକାଶ ଚିନ୍ତା' ରେ ପ୍ରକାଶିତ ହୋଇଅଛି ;—

*　　*　　*　　*　　*

"ନବ୍ୟ ପୁରାତନ　　　　ରୂଢ଼ ସମ୍ମିଳନ
　　କରିବ ଏବେ କିଏ ସେ
ଉତ୍ସାହ ଉଦ୍ୟମ　　　　ସାହସ ଅଦମ୍ୟ
　　କାହିଁ ଏ ଉତ୍କଳ ଦେଶେ ?
ପାଂଚଥିଲ ମନେ　　　　ତେଜବେ ବ୍ରାହ୍ମଣେ
　　ଯେବେ ଚିର କୁସଂସ୍କାର
ଅନ୍ୟ ଯେତେ ଜାତି　　　　ଉଠିବେ ଝଟତି
　　ହେବ ଉନ୍ନତ ପ୍ରଚାର ।
ନିଦାରୁଣ କାଳ　　　　କିନ୍ତୁ ଏ ସକଳ
　　ସହି ନ ପାରିଲା କ୍ଷଣେ
ବନଫୁଲପରି　　　　ଅଚିରେ ଝଡ଼କି
　　ଝାଉଁଳି ପଡ଼ିଲ ବଣେ ।

*　　*　　*　　*　　*

ଉତ୍କଳ ମଣ୍ଡଳେ　　　　ନବ୍ୟ ସଭ୍ୟଦଳେ
　　ସର୍ବେ ଆଜ ସ୍ୱାର୍ଥପର
ଆସ ହରିହର　　　　ପଣ୍ଡିତ ପ୍ରବର
　　ସମାଜ ସଂସ୍କାର କର ।"

ଏହି ପୁସ୍ତକାଗାର ଅଧୀନରେ ଏକ ପଠନାଗାର ସ୍ଥାପିତ ହୋଇଥିଲା । ଭାରତର ନାନା ସ୍ଥାନରୁ ଦୈନିକ, ସାପ୍ତାହିକ ଓ ମାସିକ ପତ୍ରିକାମାନ ସେଠାକୁ ଅଣାଯାଉ ଥିଲା । କି ଶିକ୍ଷକ, କି ଛାତ୍ର ପ୍ରତ୍ୟହ ସେଠାକୁ କିଛି ସମୟ ଯାଇ ଦେଶର ଖବର ରଖୁଥିଲେ । ଯେଉଁ ଛାତ୍ରମାନେ ଗୀତ ବୋଲିବା ବା ଗୀତ ଲେଖିବାରେ ଆଗ୍ରହ ଏବଂ ଉତ୍ସାହ ଦେଖାଉଥିଲେ,

ସେମାନଙ୍କୁ ସଙ୍ଗୀତ ଶିକ୍ଷା ଦେବାପାଇଁ ବିଶେଷ ବ୍ୟବସ୍ଥା କରାଯାଇଥିଲା । ସଙ୍ଗୀତ ଶିକ୍ଷକ ଓ ଯନ୍ତ୍ରାଦିର ମଧ୍ୟ ଆୟୋଜନ କରା ଯାଇଥିଲା । ଶିଳ୍ପ ଓ ଚିତ୍ରାଙ୍କନ ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି ରଖା ଯାଇଥିଲା । ଚିତ୍ରାଙ୍କନ ସ୍କୁଲର ପାଠ୍ୟ ମଧ୍ୟରେ ବାଧ୍ୟତାମୂଳକ ଥିଲା । ଅବସର ସମୟରେ ଶିଳ୍ପ ଶିକ୍ଷାର ସୁବିଧା ଥିଲା ଏବଂ ଏ ବିଭାଗରେ ଜଣେ ଉପଯୁକ୍ତ ଶିକ୍ଷକ ନିଯୁକ୍ତ ଥିଲେ । ଛାତ୍ରାବାସସ୍ଥ ପ୍ରାୟ ତିନିଶତ ଛାତ୍ରଙ୍କୁ ଉଲ୍ଲିଖିତ ବିଭାଗମାନଙ୍କରେ ଶୃଙ୍ଖଳାର ସହିତ ଚଳାଇବା ଭାର ଏକ ଛାତ୍ରସମିତି (Boys' own court) ଉପରେ ନ୍ୟସ୍ତ ଥିଲା । କୌଣସି ବିଭାଗରେ କେହି ନିୟମର ଅପବ୍ୟବହାର କଲେ ଉକ୍ତ ସମିତି ଦୋଷୀ ପାଇଁ ଦଣ୍ଡ ଧାର୍ଯ୍ୟ କରୁଥିଲେ ଏବଂ ଆବଶ୍ୟକ ହେଲେ ନୂତନ ନିୟମମାନ ପ୍ରଣୟନ କରୁଥିଲେ । ଏହାଦ୍ୱାରା ସ୍ୱାଧୀନ ଶାସନ ନୀତି ଛାତ୍ରମାନଙ୍କ ମଧ୍ୟରେ ପ୍ରବର୍ତ୍ତିତ ହୋଇଥିଲା । ଛାତ୍ରମାନେ ସମସ୍ତ ବିଷୟରେ ସ୍ୱାଧୀନ ଥିଲେ । ଛାତ୍ରାବାସରେ ସେମାନେ ସକଳ ପ୍ରକାର ଉତ୍ସବ ସମ୍ପନ୍ନ କରୁଥିଲେ । ସରସ୍ୱତୀ ଓ ଗଣେଶ ପୂଜା ବେଳେ ସେମାନେ ନିଜେ ନିଜେ ଅତି ସୁନ୍ଦର ଜୀବନ୍ତ ମୂର୍ତ୍ତିମାନ ନିର୍ମାଣ କରୁଥିଲେ । ଉତ୍ସବମାନଙ୍କରେ ସଙ୍ଗୀତାଦି ରଚନା ଛାତ୍ରମାନେ କରୁଥିଲେ । ସେ ସମୟରେ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଲୋକମାନଙ୍କୁ ନିମନ୍ତ୍ରଣ କରି ପାନ ଭୋଜନାଦିର ବିହିତ ବ୍ୟବସ୍ଥା କରୁଥିଲେ । ଏହିପରି ଛାତ୍ରମାନେ ନିଜ ନିଜ ଜୀବନକୁ ସରସ ଓ ମଧୁମୟ କରି ପାରୁଥିଲେ ।

ସାଧକ ଗୋପବନ୍ଧୁ ଏ ସମସ୍ତର ତତ୍ତ୍ୱାବଧାନକର୍ତ୍ତା । ନିଜର ସହକର୍ମୀମାନଙ୍କ ସହିତ ସେହି ସାଧନା କ୍ଷେତ୍ରରେ ଏକତ୍ର ରହି ସ୍କୁଲର ତଥା ଛାତ୍ରାବାସର ସମସ୍ତ ବିଷୟର ହାନି ଲାଭ ସୁବିଧା ଅସୁବିଧା ଆଦି ବୁଝୁଥିଲେ । କୌଣସି କାର୍ଯ୍ୟ ତାଙ୍କର ପରାମର୍ଶ ବିନା ସହକର୍ମୀମାନେ ସମ୍ପାଦନ କରୁ ନଥିଲେ । ସେହି ବିଦ୍ୟାପୀଠର ସମସ୍ତେ ଗୋପବନ୍ଧୁଙ୍କୁ ଅତିଶୟ ଭକ୍ତି କରୁଥିଲେ । ସମସ୍ତେ ତାଙ୍କୁ 'ଆପଣେ' ବୋଲି ସମ୍ବୋଧନ କରୁଥିଲେ । ପ୍ରକୃତରେ ସେ ସମସ୍ତଙ୍କର ଆପଣେ ବା ଗୁରୁ ଥିଲେ । ସତ୍ୟବାଦୀ ଇସ୍କୁଲ

ବାହାରେ ମଧ୍ୟ ସେ "ଦାସ ଆପଣେ" ବୋଲି ପରିଚିତ । ଗୋପବନ୍ଧୁ ଓ ତାଙ୍କର ସହକର୍ମୀମାନଙ୍କର ଉଦ୍ଦେଶ୍ୟ ଅତି ମହତ୍ତ୍ୱ ଥିଲା । କେବଳ ଗୋଟିଏ ସ୍କୁଲ ବସାଇବା ଦ୍ୱାରା ତାଙ୍କର ଯେ ଶିକ୍ଷା ଦିଗରେ କାର୍ଯ୍ୟ ଶେଷ ହୋଇଥିଲା ତାହା ନୁହେଁ । ସତ୍ୟବାଦୀ ଇସ୍କୁଲ ତାଙ୍କ ଜୀବନର ପ୍ରଥମ ଉଦ୍ୟମ ମାତ୍ର । ଏକ ସୁବୃହତ୍ ମହତ୍ ଅନୁଷ୍ଠାନ ଏପରିକି ଏକ ବିଶ୍ୱବିଦ୍ୟାଳୟ ବସାଇବାର କଳ୍ପନା କରି ସେ ସତ୍ୟବାଦୀ ଇସ୍କୁଲ ଧରଣରେ ବାହାଡାଗୋଡା ଓ ଚକ୍ରଧରପୁରରେ ସ୍କୁଲ ବସାଇ ସେଗୁଡ଼ିକୁ ଏ ଅନୁଷ୍ଠାନର ଅଙ୍ଗୀଭୂତ କରିଥିଲେ । ସେଠାକୁ ସତ୍ୟବାଦୀ କେନ୍ଦ୍ରରୁ କର୍ମୀ ପଠା ଯାଉଥିଲେ । ଏହିପରି ସ୍ଥାନେ ସ୍ଥାନେ ଯେ ଶିକ୍ଷାର ଉଦ୍ୟମ ହୋଇଥିଲା ତାହା ସବୁ ଏକ ସ୍ଥାୟୀ ସୁଗଠନ ଓ ସୁପରିଚାଳିତ ସଂଘ ବା ସମିତିର ଅନ୍ତର୍ଭୁକ୍ତ ହେଲେ ଅଧିକ ଫଳ ଲାଭର ଆଶା ରଖି ଉକ୍ତ ବିଶ୍ୱବିଦ୍ୟାଳୟର ପରିଚାଳନା ନିମନ୍ତେ ଏକ ବିଶ୍ୱଜନୀନ ଶିକ୍ଷାସଂଘ (Universal Education League) ସ୍ଥାପନର ସୂଚନା ସେ ଆଗରୁ ଦେଇଥିଲେ । ଏହି ସଂଘରେ ଏକଶ୍ରେଣୀର ସଭ୍ୟ ରହିବେ, ଯେଉଁମାନେ ଅର୍ଥ ସାହାଯ୍ୟ କରିବେ ଏବଂ କାର୍ଯ୍ୟପରିଚାଳନର ତତ୍ତ୍ୱ ନେବେ; ଆଉ ଏକଶ୍ରେଣୀର ସଭ୍ୟ ରହିବେ, ଯେଉଁମାନେ ସଂଘ ଅଧୀନସ୍ଥ ବିଦ୍ୟାଳୟରେ ଅନ୍ତତଃ କୋଡ଼ିଏ ବର୍ଷ ଶିକ୍ଷା କାର୍ଯ୍ୟ କରିବେ । ସକଳ ପ୍ରକାର ଶିକ୍ଷାର ବ୍ୟବସ୍ଥା ରହିବ ଏବଂ ସକଳ ଶ୍ରେଣୀର ଲୋକଙ୍କୁ ସମାନ ସୁଯୋଗ ଓ ଅଧିକାର ଦିଆଯିବ । ପ୍ରତିଭାଶାଳୀ ଛାତ୍ରମାନଙ୍କୁ ବିଦେଶରେ ଶିକ୍ଷା ଦେବାର ବ୍ୟବସ୍ଥା ମଧ୍ୟ ଏଥିରେ ରହିବ ! ଏହି ସଂଘ ଅଧୀନରେ କାର୍ଯ୍ୟ ପରିଚାଳନ ନିମନ୍ତେ କାର୍ଯ୍ୟ ନିର୍ବାହକା ସମିତି ଆଦି ରହିବ । ସଂଘଗଠନ ସ୍ଥିର ହେଲେ ବିସ୍ତାରିତ ନିୟମ ଓ କ୍ରିୟା ପ୍ରଣାଳୀ ପରେ ସ୍ଥିର କରିବାର ଆଶା ସେ ରଖିଥିଲେ । ଏହି କଳ୍ପିତ ଶିକ୍ଷାସଂଘ କାର୍ଯ୍ୟରେ ପରିଣତ ହେଲେ ସତ୍ୟବାଦୀ ବନବିଦ୍ୟାଳୟକୁ ସର୍ବପ୍ରଥମେ ଏହାର ଅଧୀନରେ ଦେବା ନିମନ୍ତେ ପ୍ରସ୍ତୁତ ଥିଲେ ।

ଏହିମତରେ ନାନା ପ୍ରକାରେ ସତ୍ୟବାଦୀ ଇସ୍କୁଲ ଯେ ଓଡ଼ିଶାର କି ଉପକାର କରିଅଛି ଏବଂ ଓଡ଼ିଶା ତଥା ଭାରତରେ ସେ ଯେ କିପରି ଆଦର୍ଶ ଅନୁଷ୍ଠାନ ଥିଲା, ବିଦ୍ୟା ଶିକ୍ଷା ସଂଗେ ସଂଗେ ଆତ୍ମୋତ୍ସର୍ଗର ଜ୍ୱଳନ୍ତ ପ୍ରତିମୂର୍ତ୍ତିରେ ସେହି ଜାତୀୟ ଜୀବନ କେନ୍ଦ୍ରରେ ଯେଉଁ ମହନୀୟ ଭାବ ଉଦ୍-ବେଳିତ ହେଉଥିଲା, ସେ ସମସ୍ତର ପୁନରାଲୋଚନା ନିଷ୍ପ୍ରୟୋଜନ। ସେ ସମୟର ବିଶିଷ୍ଟ କେତେକ ପରିଦର୍ଶକଙ୍କ ମନ୍ତବ୍ୟରୁ ତାହା ସ୍ପଷ୍ଟ ଜଣାପଡ଼େ।

୧୯୧୩ ମସିହା ଅପ୍ରେଲ ତା ୭ ରଖ ସତ୍ୟବାଦୀ ବିଦ୍ୟାଳୟ ଦେଖିବାକୁ ଆସି ବଙ୍ଗଳାର 'ନବ୍ୟଭାରତ' ସାହିତ୍ୟ ପତ୍ରିକାର ସଂପାଦକ ଲେଖିଅଛନ୍ତି :—

* * * *

"ସାକ୍ଷିଗୋପାଳ ମନ୍ଦିର ସଂଲଗ୍ନ ପ୍ରାୟ ୫୦ ବିଘା ଜମି ତମାଳ ଏବଂ ବକୁଳ ବନରେ ସୁଶୋଭିତ । ତନ୍ମଧ୍ୟରେ ଏହି ସ୍କୁଲଟି ଏକ ଅକ୍ଷୟ କୀର୍ତ୍ତି ଘୋଷଣା କରିବା ପାଇଁ ମସ୍ତକ ଉତ୍ତୋଳନ କରିଅଛି । ଆମ୍ଭେମାନେ ଦିବା ଦୁଇ ପ୍ରହରଠାରୁ ପ୍ରାୟ ସଂଧ୍ୟା ପର୍ଯ୍ୟନ୍ତ ଛାତ୍ର ଓ ଶିକ୍ଷକ ପରିବେଷ୍ଟିତ ହୋଇ ବୃକ୍ଷ ତଳେ ନାନା ସତ୍ ପ୍ରସଂଗରେ ସମୟ କଟାଇ ଜୀବନରେ ଯେ ସୁଖ ଶାନ୍ତି ପାଇଅଛୁ, ତାହା ଜୀବନରେ ଯେ ଆଉ କେବେ ମିଳିବ ମନେ ହେଉ ନାହିଁ । ସତ୍ୟବାଦୀ ସ୍କୁଲ ଏକ ଆଶ୍ଚର୍ଯ୍ୟ ସୃଷ୍ଟି !

* * * * *

ଗୋପବନ୍ଧୁଙ୍କ ଚେଷ୍ଟାରେ ଏହି ସତ୍ୟବାଦୀ ସ୍କୁଲ ସ୍ଥାପିତ ହୋଇଅଛି । ଗୋପବନ୍ଧୁ,ନୀଳକଂଠ ଯେପରି ପୁନାର ଗୋଖଲେ,ପରାଞ୍ଜପେ ଏବଂ ବଙ୍ଗଳାର ବିଦ୍ୟାସାଗର । ଗୋପବନ୍ଧୁ ଉତ୍କଳପାଇଁ କେବଳ ରକ୍ତପାତ ନୁହେଁ, ବିନ୍ଦୁ ବିନ୍ଦୁ କରି ଜୀବନପାତ କରିଅଛନ୍ତି ।

ଗୋପବନ୍ଧୁ, ନୀଳକଣ୍ଠ, ଓ ଅନ୍ୟାନ୍ୟ ଶିକ୍ଷକଗଣ ଯେପରି ଅଗ୍ନିର ଫୁଲିଙ୍ଗ । ବ୍ରହ୍ମଚର୍ଯ୍ୟ ଶିକ୍ଷାଦେବା ତାଙ୍କ ଜୀବନର ବ୍ରତ । ସେମାନଙ୍କର ସଂସ୍ପର୍ଶରେ ଆସିଲେ ନିର୍ଜୀବ ଦେହରେ ମଧ୍ୟ ଅଗ୍ନି ଜ୍ୱଳି ଉଠେ । ବଙ୍ଗଳାର ବାରିକପୁର ଦାତବ୍ୟ ଚିକିତ୍ସାଳୟ ଦେଖିଅଛୁ, ବରଦାବାବୁଙ୍କ ସହାୟ୍ୟପ୍ରାପ୍ତ ଆମତାର ସ୍କୁଲ କଥା ଜାଣେ; ଭୂଦେବଙ୍କ ବିଶ୍ୱନାଥଟ୍ରଷ୍ଟ ଫଣ୍ଡରେ ଦାନର କଥା ଏବଂ ତାରକାନାଥ ବିଶ୍ୱବିଦ୍ୟାଳୟର ଦାନର କଥା ଶୁଣିଅଛୁ, କିନ୍ତୁ ଏପରି ସର୍ବସ୍ୱତ୍ୟାଗ, ଏପରି ଜୀବନତ୍ୟାଗର ଦୃଷ୍ଟାନ୍ତ ମୁଁ ଆଉ କୌଣସି-ଠାରେ ପ୍ରତ୍ୟକ୍ଷ କରି ନାହିଁ । ଦରିଦ୍ର ଗୋପବନ୍ଧୁ ଉପାର୍ଜ୍ଜନର ଅଧିକାଂଶ ଏହି ସ୍କୁଲରେ ଢ଼ାଳି ଦେଉଅଛନ୍ତି ।

* * * * *

ଦରିଦ୍ର ଗୋପବନ୍ଧୁ ଏବଂ ନିଃସ୍ୱ ନୀଳକଣ୍ଠ ଯାହା କରୁଅଛନ୍ତି, ଆତ୍ମ-ତ୍ୟାଗର ଯେ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଇ ଅଛନ୍ତି, ଆମ୍ଭମାନଙ୍କ ବଙ୍ଗଦେଶରେ ସେହିଳି ଦୃଷ୍ଟାନ୍ତ କୌଣସି ସ୍ଥାନରେ ଦେଖାଯାଏ ନାହିଁ । ପୂର୍ବେ ପୁରୀର ଲୋକମାନେ ଥଟ୍ଟା କରି କହୁଥିଲେ, "ଏମାନେ ଉତ୍କଳରେ ଫର୍ଗୁସନ କଲେଜ କରିବେ"; ବର୍ତ୍ତମାନ ଏମାନଙ୍କର ସ୍ୱାର୍ଥତ୍ୟାଗ ଦୃଷ୍ଟାନ୍ତ ଦେଖି ଅବାକ୍ ହୋଇଅଛନ୍ତି ।

* * * *

ଦୁର୍ବଳର ସହାୟ ଭଗବାନ୍, ଅସହାୟର ଚିରସହାୟ ଦୟାଳୁ ହରି, ସେ କି ଏହି ସ୍କୁଲକୁ ଭୁଲିପାରିବେ ? ବିଧାତାଙ୍କର ଅଜସ୍ର କୃପା ବର୍ଷିତ ହେଉ । ଏହି ସ୍କୁଲ ତାଙ୍କର ପ୍ରେରଣାରେ ସହୃଦୟ ବ୍ୟକ୍ତିମାନଙ୍କ ସାହାଯ୍ୟରେ ମହାବଳଶାଳୀ ହୋଇ ଉଠୁ ।"

( ନବ୍ୟଭାରତ Vol. XXXI No. 2 ଜ୍ୟେଷ୍ଠ ୧୩୨୦ )

## Sir Ashutosh Mukherjee writes on 2nd June, 1917.

"I visited the Satyabadi School with great interest. The school possesses many remarkable features. It is managed by well educated Oriyas who have realised the great truth that spread of education amongst their people can be effected on the surest and soundest lines by persons, who are prepared to make great sacrifice. It is obvious to me that the school is backed by more than one such devoted and enthusiastic young man. They have further realised that true education is possible without expensive and luxurious equipments; indeed, such equipments are rather a hindrance than an assistance to the cause of the spread of education amongst an essentially poor people. Indians in the old days were accustomed to receive sound education and culture without appreciable expenditure of money, under altered conditions, that may no longer be possible; but it can not be denied that many well meaning people labour under the delusion that expensive buildings and other like agencies are essential for the spread of education. The promoters of this school have set a laudable example to the country. Their ideals are high, they understand the value of discipline and culture—mental, moral and physical; the result of

their labours is likely to be great for the very reason that the beginnings are so humble; one can not but wish that every village in Bengal should possess a genuine plan of instruction like the Satyabadi School. ”

(School Report 1912—1918)

ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଥାଇ ସତ୍ୟବାଦୀ ବିଦ୍ୟାଳୟ ଉତ୍ତମ ଫଳ ଦେଖାଇ ଆସୁଥିଲା । ୧୯୨୦ ମସିହାରେ ଯେତେବେଳେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ଫଳରେ ସମଗ୍ର ଭାରତର ଲୋକସାଧାରଣଙ୍କ ପ୍ରାଣରେ ଅଦ୍ଭୁତ ଜାତୀୟ ଭାବ ଓ ତେଜ ଜାଗି ଉଠିଥିଲା ଏବଂ ସେହି ଆନ୍ଦୋଳନରେ ଯୋଗ ଦେବାପାଇଁ ଭାରତ ଜାତୀୟ ମହାସମିତିର ଆହ୍ୱାନ ଆସିଥିଲା, ଯେତେବେଳେ ବିଶ୍ୱ ବିଦ୍ୟାଳୟ ସମ୍ପର୍କର ଅସାରତା ଉପଲବ୍ଧି ହେଲା, ସେତେବେଳେ ଯେଉଁ ସ୍କୁଲର ଛାତ୍ର ଓ ଶିକ୍ଷକମାନେ ଜାତୀୟ ଭାବରେ ଚିର ଉନ୍ମାଦିତ, ଯେଉଁ ବିଦ୍ୟାଳୟର ପ୍ରାରମ୍ଭରୁ ସମସ୍ତ କ୍ରିୟା ବିଶ୍ୱବିଦ୍ୟାଳୟ ସମ୍ପର୍କରେ ଥାଇ ସୁଦ୍ଧା ଜାତୀୟ ଭାବରେ ନିୟନ୍ତ୍ରିତ, ସେମାନେ କି ଏପରି ଆନ୍ଦୋଳନରେ ଯୋଗ ନଦେଇ ରହି ପାରନ୍ତେ ? ୧୯୨୧ ମସିହା ଜାନୁଆରୀ ତା୨୨ ରିଖରେ ଜାତିର ଆହ୍ୱାନରେ ଗୋପବନ୍ଧୁ ଓ ତାଙ୍କର ସତ୍ୟବାଦୀ ସ୍କୁଲର କର୍ମୀମାନେ ସେ ସ୍କୁଲକୁ ଜାତୀୟ ବିଦ୍ୟାପୀଠରେ ପରିବର୍ତ୍ତନ କଲେ । ଏହି ପରିବର୍ତ୍ତନ ପୂର୍ବରୁ ଛାତ୍ର ଓ ଅଭିଭାବକମାନଙ୍କୁ ଏ ସମ୍ପର୍କରେ ପଚରା ଯାଇଥିଲା । ସେମାନେ ପରିବର୍ତ୍ତନ ସପକ୍ଷରେ ମତ ଦେଇଥିଲେ । ପୂର୍ବରୁ ସ୍କୁଲର ସମସ୍ତ କାର୍ଯ୍ୟ ଜାତୀୟ ଶିକ୍ଷା ପଦ୍ଧତି ଅନୁସାରେ ଚଳୁଥିଲା । ସୁତରାଂ ଜାତୀୟ ବିଦ୍ୟାପୀଠରେ ପରିଣତ କରିବା ଦ୍ୱାରା ସ୍କୁଲରେ ନୂତନ କାର୍ଯ୍ୟ ବିଶେଷ କିଛି କରାଯାଇ ନ ଥିଲା । ବସ୍ତ୍ର ବୟନ ଶିଳ୍ପ ସ୍କୁଲରେ ପ୍ରଥମରୁ ଚଳି ଆସୁଥିଲା । ଏତେବେଳେ ସେଥିରେ ଶିକ୍ଷକ ନିଯୁକ୍ତ ହୋଇ ବୟନ

ବିଷୟରେ ଶିକ୍ଷା ଦେଉଥିଲେ । ନିଜ ହାତରେ ସୂତା କାଟି ଲୁଗା ବୁଣିବା ପାଇଁ ଚରଖା ଓ ତନ୍ତମାନ ସଂଗୃହୀତ ହୋଇ ବିଧିମତେ ଶିକ୍ଷା ଦିଆ ଯାଉଥିଲା । ଦେଶରେ ଜାତୀୟ ଶିକ୍ଷା ବହୁଳ ଭାବରେ ପ୍ରଚାର ପାଇଁ ଉକ୍ତ ବିଦ୍ୟାପୀଠରେ ଅବୈତନିକ ଶିକ୍ଷା ଆରମ୍ଭ କରାଯାଇଥିଲା । "ଉତ୍କଳ--ସ୍ୱରାଜ୍ୟ—ଶିକ୍ଷା—ପରିଷଦ" ନାମରେ ଏକ ବିଶ୍ୱବିଦ୍ୟାଳୟ ଗଠିତ ହୋଇ ଜାତୀୟ ଶିକ୍ଷାର କ୍ରମ; ପ୍ରଣାଳୀ, ପଦ୍ଧତିମାନ ସ୍ଥିର କରି ଥିଲେ । ତଦନୁଯାୟୀ ସତ୍ୟବାଦୀ ଜାତୀୟ ବିଦ୍ୟାପୀଠରେ ଶିକ୍ଷା କାର୍ଯ୍ୟ ସମାହିତ ହେଉଥିଲା । ପଣ୍ଡିତ ଲିଙ୍ଗରାଜ ମିଶ୍ର ଏମ୍, ଏ, ସତ୍ୟବାଦୀ ଇସ୍କୁଲରେ ଯୋଗ ଦେବା ପାଇଁ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ । ସତ୍ୟବାଦୀ ଇସ୍କୁଲ ବିଶ୍ୱବିଦ୍ୟାଳୟ ସାମିଲ ଥିଲାବେଳେଅବକାଶ ସମୟରେସେସମସ୍ତସମୟ ସ୍କୁଲରେ କଟାଉଥିଲେ । ନାନା ଅସୁବିଧା ଯୋଗୁଁ ସତ୍ୟବାଦୀ କର୍ମିମାନଙ୍କଠାରୁ ଅନୁମତି ପାଇ ସେ ଓଡ଼ିଶା ଓ ଛୋଟନାଗପୁର ସଂସ୍କୃତ ଶିକ୍ଷାର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଯାଇଥିଲେ । ସତ୍ୟବାଦୀର କର୍ମୀ ଓ ଛାତ୍ରମାନେ ଲିଙ୍ଗରାଜଙ୍କର ସରକାରୀ ଚାକିରିରେ ଯିବାବେଳେ ବିଦାୟ ଦେଇ କହିଥିଲେ ;—

* * * *

"ସତ୍ୟବାଦୀ ସଙ୍ଗରେ ଶ୍ରୀମାନ୍ ଲିଙ୍ଗରାଜଙ୍କର ପ୍ରୟୋଜନ ହେଉ, ଏହି କାମନାକରି ଶିକ୍ଷକ ଓ ଛାତ୍ରମାନେବିଦାୟଦେଉ ଅଛନ୍ତି । ପୁନରାଗମନାୟଚ ।" ଏହି ଅସହଯୋଗ ଆନ୍ଦୋଳନରେ ଦେଶର ଡାକ ଶୁଣି ଗୋପବନ୍ଧୁଙ୍କ ପଥ ପାଇ ପଣ୍ଡିତ ଲିଙ୍ଗରାଜ ନିଜ କର୍ତ୍ତବ୍ୟ ସ୍ଥିର କଲେ ଏବଂ ଅଳ୍ପଦିନ ପରେ ସରକାରୀ ଚାକିରି ଛାଡ଼ି ତାଙ୍କର ତ୍ୟାଗପୂତ ଜୀବନକୁ ଆହୁରି ମଧୁମୟ କରିବା ପାଇଁ ସତ୍ୟବାଦୀ ତପୋବନର ଆଶ୍ରୟ ନେଲେ । ୧୯୨୪ ମସିହା ପର୍ଯ୍ୟନ୍ତ ସତ୍ୟବାଦୀ ଇସ୍କୁଲ ଜାତୀୟ ବିଦ୍ୟାଳୟ ଥାଇ ବିଭିନ୍ନ ଶିକ୍ଷାବିଭାଗରେ ଉନ୍ନତି ଦେଖାଇଥିଲା । ୧୯୨୩ ମସିହାରେ ତାହା ଜାତୀୟ ବିଶ୍ୱବିଦ୍ୟାଳୟ (National College)ରେ ପରିଣତ ହୋଇଥିଲା । ଏଥିରେ କାର୍ଯ୍ୟ କରିବା ପାଇଁ ବିଦ୍ୟାପୀଠର ଅନ୍ୟତମ କର୍ମୀ ଶ୍ରୀଯୁକ୍ତ ନନ୍ଦ କିଶୋର ଦାସ

ଏମ୍, ଏ, ଯୋଗ ଦେଲେ । ମାତ୍ର ଉତ୍କଳରେ ଏହିପରି ଜାତୀୟ ଅନୁଷ୍ଠାନର ଜନ୍ମିତ ଅସମ୍ଭବ ଦେଖି ଅବସ୍ଥା ଯେପରି ଘଟିଲା, ସ୍କୁଲର କର୍ତ୍ତୃପକ୍ଷମାନେ ଅଗତ୍ୟା ସ୍କୁଲକୁ ବିଶ୍ୱବିଦ୍ୟାଳୟ ସାମିଲ କରିବା ଲାଗି ସରକାରର ଦ୍ୱାରସ୍ଥ ହେଲେ । ସେଥିରେ ଦେଶପ୍ରାଣତ୍ୟାଗୀ ଗୋପବନ୍ଧୁଙ୍କ ଟଳିବାର ଲୋକ ? ନିଜର ସହକର୍ମୀମାନଙ୍କ ଅନୁରୋଧରେ ସେ ସତ୍ୟବାଦୀ ଇସ୍କୁଲକୁ ସେମାନଙ୍କ ହସ୍ତରେ ଅର୍ପଣ କରିସେଠାରୁ ଦୂରରେ ରହିଲେ । ବିଦ୍ୟାଳୟର ପରିଚାଳକ-ମାନେ ସରକାର ଦ୍ୱାରରେ ଅପଦସ୍ଥ ହେଲେ । ସେକେଣ୍ଡାରୀ ଶିକ୍ଷା କମିଟିର ସଙ୍କେତକୁ କର୍ମୀମାନେ ଅପମାନ ବୋଧ କଲେ । ସତ୍ୟବାଦୀର ଅପମାନ ଜାତିର ଅପମାନ ବୋଲି ଭାବିଲେ । ସ୍କୁଲ୍ ଜାତୀୟ ବିଦ୍ୟାଳୟ ହେବା ପରେ ସରକାର ଦ୍ୱାରକୁ ଯିବା ନିଜର ଦୁର୍ବଳତା ବୋଲି ସ୍ୱୀକାର କଲେ । ଏ ସବୁ ଦେଖି ଗୋପବନ୍ଧୁ କହିଲେ,ସତ୍ୟବାଦୀର ସୁଯୋଗ୍ୟ କର୍ମୀମାନଙ୍କ ପାଇଁ ବିଶାଳ ଉତ୍କଳ ଖଣ୍ଡରେ ପ୍ରଶସ୍ତ କ୍ଷେତ୍ର ପଡ଼ି ରହିଅଛି । ସେମାନେ ସତ୍ୟବାଦୀ ଇସ୍କୁଲକୁ ତ୍ୟାଗରେ ଆରମ୍ଭ କରିଥିଲେ, ତ୍ୟାଗରେ ତାହା ସାଙ୍ଗ କରନ୍ତୁ । ସ୍କୁଲକୁ ଏବେ କୌଣସି ପ୍ରକାର ଜାତୀୟ କେନ୍ଦ୍ର କରି ରଖିଲେ ସେମାନଙ୍କ ପକ୍ଷରେ ଗୌରବ ହେବ । ତହିଁରେ ଓଡ଼ିଶାରଜାତୀୟସଂମାନ ବଢିବ । ବସ୍ତୁତ କଷ୍ଟ ଅସୁବିଧା ଜାତୀୟ କର୍ମୀମାନଙ୍କର ଭୋଗ୍ୟ । ସାଧନା, ଦୁଃଖ, କଷ୍ଟ ଜାତୀୟ ଉନ୍ନତିର ମୂଳଭିତ୍ତି । ସ୍ୱରାଜ୍ୟ ମନ୍ଦିର ଏହାରି ଉପରେ ନିର୍ମିତ ହେବ, ଅବଶ୍ୟ କର୍ମୀମାନେ ଟିକିଏ ଆଶ୍ୱସ୍ତ ହେଲେ । ମାତ୍ର ସେମାନଙ୍କ ମନରେ ନାନା ପ୍ରକାର ବିକ୍ଷିପ୍ତ ଚିନ୍ତା ଉପସ୍ଥିତ ହେଲା । ସ୍କୁଲ ବିଶ୍ୱବିଦ୍ୟାଳୟ ସାମିଲ ନ ହେବାରୁ ୧୯୨୭ ମସିହାରେ ସ୍କୁଲ କାର୍ଯ୍ୟ ବନ୍ଦ ରହିଲା । ଇତି-ମଧ୍ୟରେ କେତେକ କର୍ମୀ ସେଠାରୁ ବାହାରି ଗଲେ । ତା ପରେ ଗୋପବନ୍ଧୁ ସ୍କୁଲକୁ ନିଜ ହସ୍ତରେ ନେଇ ପୂର୍ବ ଗୁରୁକୁଳ ଆଶ୍ରମ ଧରଣରେ ବ୍ରହ୍ମଚର୍ଯ୍ୟ, ଲୌକିକ ଓ ସାଧାରଣ ଆଦି ବିଭାଗମାନ ସ୍ଥାପନ କରି ବର୍ଷର ଅଧିକାଂଶ ସମୟ ସେଠାରେ କଟାଇବାକୁ ଲାଗିଲେ । ଜାତୀୟବିଦ୍ୟାଳୟ ଥିବା ସମୟରେ ସତ୍ୟବାଦୀସ୍କୁଲ ତାର ପୂର୍ବ ମାହାତ୍ମ୍ୟ ଲୋପ କରି ନ ଥିଲା । ଛାତ୍ର ସଂଖ୍ୟା କମିଯାଇଥିଲେ ସୁଦ୍ଧା କର୍ମୀମାନେ ନିରୁତ୍ସାହ ହୋଇ ନଥିଲେ । ୧୯୨୧

ମସିହା ମାର୍ଚ୍ଚ ମାସରେ ମହାତ୍ମା ଗାନ୍ଧି ସତ୍ୟବାଦୀ ସ୍କୁଲ ପରିଦର୍ଶନ କରି ତାଙ୍କ ଖବର କାଗଜ "Young India' ରେ (13th April, 1921) ଲେଖିଅଛନ୍ତି :—

"Orissa has workers too. Pandit Gopabandhu Das" an Ex—M. L. C. an Ex—pleader, and many other things besides, is a selfless leader. He and his band, they tell me, live on rice and dal. They rarely take ghee now-a-days. After Non-Co Operation the workers have reduced themselves to the lowest honorarium even as little as ten rupees per month.

No wonder if I believe that with such earnest men Swaraj is possible of attainment during the year. Pandit Gopabandhu has an openair school at Sakhigopal, twelve miles of this side of Puri. It is a grove school. It is worthy of visit. I passed a most delightfu l day in the midst of the boys and their teachers. It is a serious experiment in open-air teaching. Some of the boys are powerful athlets.

ଏହିପରି 'ସତ୍ୟବାଦୀ ଇସ୍କୁଲ' ର ଭୂୟସୀ ପ୍ରଶଂସା ଲୋକମୁଖରେ ଦିଗଦିଗନ୍ତବ୍ୟାପୀ ପ୍ରଚାରିତ ହୋଇଥିଲା । ଏଠାରେ ଶିକ୍ଷକମାନେ ଛାତ୍ର-ମାନଙ୍କ ନିକଟରେ ସର୍ବଦା ରହି ସର୍ବବିଧ ଶିକ୍ଷାର ଉନ୍ନତି ନିମନ୍ତେ ଯତ୍ନବାନ୍ ଥିଲେ । ଛାତ୍ରମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ଜୀବନ ଗଠନରେ ଶିକ୍ଷକମାନେ ସର୍ବଦା ଲାଗି ରହୁଥିଲେ । ସଂସାରର ବାହ୍ୟ ପ୍ରଲୋଭନରେ ଛାତ୍ରମାନେ ବିଚଳିତ ହେବାପାଇଁ ସୁବିଧା ପାଉ ନଥିଲେ । ଆହାର୍ଯ୍ୟ ବିହାର

ସ୍ନାନ ପାନ ବାକ୍ୟ ବ୍ୟବହାର ସବୁଥିରେ ସଂଯମ ପ୍ରତି ବିଶେଷ ଦୃଷ୍ଟି ଥିଲା । ପ୍ରକୃତିର ଉନ୍ମୁକ୍ତ ଉତ୍ସଙ୍ଗରେ ବିଚରଣ କରିବା ପାଇଁ ଛାତ୍ରମାନେ ଯଥେଷ୍ଟ ସୁବିଧା ପାଉଥିଲେ । ପୂର୍ବ ଗୁରୁକୁଳ ଆଶ୍ରମର ବାତ୍ସଲ୍ୟ ପ୍ରୀତି ଏଠାରେ ପ୍ରକୃତ ଦେଖା ଦେଇ ଥିଲା । ଏଠାରେ ଗୁରୁଶିଷ୍ୟ ସଂବନ୍ଧ ନ ଥାଇ ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ପିତାପୁତ୍ରର ସଂବନ୍ଧ ଥିଲା । ସତ୍ୟବାଦୀ ଇସ୍କୁଲର ଆଚାର୍ଯ୍ୟ ହରିହର ପ୍ରକୃତ ପୂର୍ବ ଗୁରୁକୁଳ ଆଶ୍ରମର ଆଚାର୍ଯ୍ୟ ଥିଲେ । ତାଙ୍କର ଆଦର୍ଶରେ ସମସ୍ତେ ଅନୁପ୍ରାଣିତ ହେଉଥିଲେ । ସତ୍ୟବାଦୀ ଇସ୍କୁଲରେ ପୁରାତନ ଓ ଆଧୁନିକ ଶିକ୍ଷାର ସମନ୍ୱୟ ଦେଖି ଦୂର ବିଦେଶରୁ ଛାତ୍ରମାନେ ଆକୃଷ୍ଟ ହେଉଥିଲେ । ସୁଲଭ ଶିକ୍ଷା ପାଇବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ଧର୍ମଜୀବନ ଏଠାରେ ଗଢ଼ା ହେଉଥିଲା । ଏହି ଆଦର୍ଶରେ ଦେଶର ଅନ୍ୟାନ୍ୟ ସ୍ଥାନରେ ବିଦ୍ୟାଳୟ ମାନ ସ୍ଥାପିତ ହେଉଥିଲା । ସ୍କୁଲର ଆଦର୍ଶ ଆତ୍ମନିର୍ଭରତା ବିଷୟରେ ଅତ୍ୟନ୍ତ ମହତ୍ତ୍ୱ ଥିଲା । ଏହିପରି ଦେଶ ସମ୍ମୁଖରେ ନାନା ଆଦର୍ଶ ରଖି, ଦେଶରେ ନୂତନ ଭାବ ପ୍ରଚାର କରି [illegible] ଉପଯୁକ୍ତ କର୍ମୀଙ୍କୁ ଜନ୍ମଦେଇ ସେହି ସତ୍ୟବାଦୀ ବିଦ୍ୟାଳୟ ଲୋ[illegible] ପାଇଅଛି । ଗୋପବନ୍ଧୁଙ୍କର କି ଉଦ୍ଦେଶ୍ୟ ଥିଲା, ସେଠାରେ ସେ କି ପ୍ରକା[illegible] ବ୍ରହ୍ମଚର୍ଯ୍ୟାଶ୍ରମ, ଲୌକିକ ବିଭାଗ, ସାଧାରଣ ବିଭାଗ ଆଦି ସ୍ଥାପନ କରିବାକୁ ଯାଉଥିଲେ, ତାହା ସଂପୂର୍ଣ୍ଣ ପରିସ୍ଫୁଟ ନ ହେଉଣୁ ସେ ମହାପ୍ରସ୍ଥାନ କରିଅଛନ୍ତି । ସେ ନୂତନ ଅନୁଷ୍ଠାନ ଯୁଗେ ଯୁଗେ ଅପୂର୍ଣ୍ଣ ରହିବ ଏହା ସୁନିଶ୍ଚିତ । ମାତ୍ର ସେ ଅଭାବରେ ସତ୍ୟବାଦୀ ଇସ୍କୁଲ ପୁନଃ ସ୍ଥାପିତ ହୋଇ ପୂର୍ବବିଧାନକୁ ଲକ୍ଷ୍ୟରଖି ଓଡ଼ିଶାରେ ନବଯୁଗ ଆନୟନ କରୁ । ଗୋପବନ୍ଧୁଙ୍କର ପ୍ରତିଭା ସେହିଠାରେ ବିକଶିତ ହେଉ । ଗୋପବନ୍ଧୁ ଯେ ଅଜ୍ଞାନ-ଅନ୍ଧାର ଦୂର କରିବାପାଇଁ ଦେଶରେ ଜନ୍ମଗ୍ରହଣ କରିଥିଲେ, ତାହା ତାଙ୍କର ସେହି ପ୍ରିୟତମ ସତ୍ୟବାଦୀ କର୍ମକେନ୍ଦ୍ରରୁ ପ୍ରତ୍ୟକ୍ଷୀଭୂତ ହେଉ ।

## ୯

ସନ ୧୯୧୬ମସିହା ଠାରୁ ସନ ୧୯୧୭ ମସିହା ଯାଏ ସେ ଦେଶର ନାନା କାର୍ଯ୍ୟରେ ଲିପ୍ତ ଥାଇ ଓକିଲାତି କରୁଥିଲେ । ଓକିଲ ହୋଇ ଅର୍ଥ

ଲାଳସା ତାଙ୍କର ନ ଥିଲା । ସେ ସର୍ବଦା ସତ୍ୟ ଖୋଜି ବୁଲୁଥିଲେ । ବିନା ଦୋଷରେ କେହି କେବେ କାହା ନାମରେ ମିଥ୍ୟା ମୋକଦ୍ଦମା ଆଣିଲେ ସେ ନିର୍ଦ୍ଦୋଷର ପକ୍ଷ ଗ୍ରହଣ କରି ତାକୁ ଖଲାସ କରାଉଥିଲେ । ଏ ଘଟଣାରେ ମନେ ପଡ଼େ—୧୯୧୧ ମସିହାରେ ସେ ମୟୂରଭଞ୍ଜରେ ସରକାରି ଓକିଲ ଥିଲାବେଳେ ଡ଼ାକ ବଙ୍ଗଳାର ଜଣେ ଭୃତ୍ୟ ଚୌର୍ଯ୍ୟ ଅପରାଧରେ କଚେରୀକୁ ଅଣାଯାଇ ଥିଲା । ସରକାର ପକ୍ଷ ସେଥିରେ ମୁଦେଇ ଥିଲେ । ଗୋପବନ୍ଧୁ ସରକାରି ଓକିଲ ଥାଇ ଚୋରଟିର ବିରୁଦ୍ଧରେ ଯିବାର କଥା, ମାତ୍ର ସେ ଯେତେବେଳେ ବୁଝିଲେ ଯେ ଘଟଣାଟି ସତ୍ୟ ନୁହେଁ, ସେତେବେଳେ ସେ ବିନା ଫିସରେ ମୁଦାଲା ପକ୍ଷରୁ ଓକିଲତନାମା ନେଇ ତାକୁ ଖଲାସ କରାଇ ଥିଲେ । ମୟୂରଭଞ୍ଜରୁ ଆସି କଟକରେ ଏବଂ ଅଳ୍ପଦିନ ପରେ ପୁରୀରେ ଓକିଲାତି କଲାବେଳେ ବ୍ରହ୍ମପୁରର "ଆଶା" ଖବର କାଗଜରେ ସେ ଅଗ୍ରଲେଖମାନ ଲେଖି ପରୋକ୍ଷ ଭାବରେ କିପରି ତହିଁର ପରିଚାଳକ ଥିଲେ ତାହା ସମସ୍ତେ ଜାଣନ୍ତି । ସେଥିରେ ନିଜର ଉଦ୍ଦେଶ୍ୟ ସାଧିତ ହେବ ନାହିଁ ଜାଣି ଦେଶବାସୀଙ୍କ ଆଗରେ ଉଚ୍ଚ ଆଦର୍ଶ ଉତ୍ଥାପନ କରି ପାରୁ ନାହାନ୍ତି ଭାବି ସେ ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶ କରିବାର ସ୍ଥିର କଲେ । ମାସିକ, ସାପ୍ତାହିକ ବା କୌଣସି ପ୍ରକାର ସାମୟିକ ସାହିତ୍ୟ ବା ସମ୍ବାଦପତ୍ର ଓଡ଼ିଶାରେ ଲାଭଜନକ ବ୍ୟବସାୟ ନୁହେ । ସୁତରାଂ ସାହିତ୍ୟ ପତ୍ର ପ୍ରକାଶରେ ପ୍ରବୃତ୍ତ ହେବା ତାଙ୍କର ଆବଶ୍ୟକ ନ ଥିଲା । ମାତ୍ର ଜାତୀୟ ଉନ୍ନତି ପକ୍ଷରେ ସାହିତ୍ୟ ଏକ ପ୍ରଧାନ ଉପାଦାନ ଏହା ତାଙ୍କର ବିଶ୍ୱାସ ଥିଲା । ପ୍ରଥମେ ଲୋକ ସାଧାରଣଙ୍କ ଭାବରେ ପରିବର୍ତ୍ତନ ଘଟାଇବା ସେ ବୁଝିଥିଲେ । ଶାରୀରିକ ଶକ୍ତି ସଚଳ ନିମନ୍ତେ ମନୁଷ୍ୟ ଯେପରି ଆହାର ଲୋଡ଼େ, ମାନସିକ ଭାବର ବିକାଶ ନିମନ୍ତେ ତାହାର ସେହିପରି ନୂତନ ଚିନ୍ତା ଓ ନୂତନ ଜ୍ଞାନ ପ୍ରୟୋଜନ । ଏହାସବୁ ବୁଝି ଗୋପବନ୍ଧୁ ଅର୍ଥାଭାବ କଥା ମନେ ନ ଧରି ନିଜର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇ "ସତ୍ୟବାଦୀ" ନାମକ ଗୋଟିଏ ମାସିକ ସାହିତ୍ୟ ପତ୍ର ପ୍ରକାଶ କଲେ । ସନ ୧୩୨୨ ସାଲ କୁମ୍ଭମାସରେ ତାହା ପ୍ରଥମେ ପ୍ରକାଶିତ

ହୋଇଥିଲା । ଏହି ପତ୍ରିକା ପ୍ରକାଶରେ ତାଙ୍କର ଉଦ୍ଦେଶ୍ୟ ଓ ଆକାଂକ୍ଷା ଦେଶବାସୀଙ୍କୁ ଜଣାଇବା ପାଇଁ ସେ ତାହାର ପ୍ରଥମ ସଂଖ୍ୟାରେ ଲେଖିଛନ୍ତି :—

* * * *

"ସତ୍ୟ ଦ୍ୱାରା ପରମ ପଦ ଲାଭ ହୁଏ । ସତ୍ୟର ଲାଭ ସତ୍ୟ ପଥରେ ।

* * * *

ଭାରତୀୟ ଯୋଗିଋଷିମାନେ ସର୍ବପ୍ରକାର ସାଂସାରିକ ସୁଖରେ ଜଳାଞ୍ଜଳି ଦେଇ କେବଳ ସତ୍ୟ ନିମନ୍ତେ ସତ୍ୟର ଅନୁସନ୍ଧାନରେ ଯେଉଁ ଅଦ୍ଭୁତ ଆତ୍ମୋତ୍ସର୍ଗ ନିଜ ଜୀବନରେ ଦେଖାଇ ଅଛନ୍ତି, ତାହା ଆଜି ଆମ୍ଭମାନଙ୍କର ତମସାଚ୍ଛନ୍ନ ହୃଦୟରେ ଆଶା ଓ ଉତ୍ସାହ ଜନ୍ମାଉଅଛି ।

* * * *

ତେଣୁ ଆମ୍ଭମାନଙ୍କର ଭାଷା, ଭାବ, କ୍ରିୟା, ସମସ୍ତ ସତ୍ୟର ପନ୍ଥା ଅନୁସରଣ କରିବା ଉଚିତ ଏବଂ ସେଥି ନିମନ୍ତେ ସର୍ବପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଏହି ଭାବମାନ ସମାଜରେ ଯଥାସଂଭବ ପ୍ରଚାର କରି ମାତୃଭୂମିକୁ ନବଆଶା ଓ ଉତ୍ସାହରେ ଉଦ୍ଦୀପିତ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ।

* * * *

ଓଡ଼ିଶା ଆମ୍ଭମାନଙ୍କର କାର୍ଯ୍ୟକ୍ଷେତ୍ର ହେଲେହେଁ ଏହା ଭାରତରୁ କମ୍ବା ବିଶାଳ ମାନବ ଜଗତରୁ ପୃଥକ୍ ନୁହେ । ଉତ୍କଳବାସୀ ତଥା ଭାରତବାସୀ ବିରାଟ ମାନବ ସମାଜର ଅଂଶ ବିଶେଷ ।

   

ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତସେବା ତଥା ବିଶ୍ୱସେବା କରିବୁଁ । ଉତ୍କଳ ଜାତିର ଉନ୍ନତିରେ ମାନବ ଜାତିର ଉନ୍ନତି ଦେଖିବୁ । ଉତ୍କଳ ପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ । ଉତ୍କଳର ହୃଦୟ-ତନ୍ତ୍ରୀରେ ବିଶ୍ୱ-ମାନବ ହୃଦୟର ଗୀତ ଶୁଣିବୁ । ଉତ୍କଳ ଭୂମିକୁ ଏହି ବିଶ୍ୱଭାବରେ ଅନୁପ୍ରାଣିତ କରି ଓଡ଼ିଆ ମାନଙ୍କର ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆଭାଷା ମୁଖରେ ବିଶ୍ୱଭାବରାଶି ପ୍ରକାଶ କରାଇବାକୁ ହେବ । ଭିନ୍ନଭିନ୍ନ ଦେଶ ଓ ପ୍ରଦେଶ ମାନଙ୍କରେ ବିଭିନ୍ନ ସମୟରେ ମାନବ-ଚିନ୍ତା ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି, ମାନବ ପ୍ରତିଭା ଯେଉଁ ଶୋଭାସମ୍ପଦ ପରିସ୍ଫୁଟ କରିଅଛି, ମାନବ-ପ୍ରଜ୍ଞା ଯେଉଁ ଆଲୋକ ପାଇଅଛି, ମାନବ-ଜୀବନ ଯେଉଁ ଆଦର୍ଶ ଦେଖାଇଅଛି, ସେ ସବୁକୁ ଓଡ଼ିଆସାହିତ୍ୟର ସମ୍ପତ୍ତିଭୂତ କରିବାକୁ ହେବ । ଏହି ବିପୁଳ ଆୟୋଜନ ଲାଗି ଆମ୍ଭମାନଙ୍କର କି ଉପାଦାନ ଅଛି ? ଆଦର୍ଶ ଅଛି, ଅତୀତ ଅଛି ।

   

ଆଦର୍ଶର ଉଦାରତା ପ୍ରତି ଲକ୍ଷ୍ୟ ରଖି ଅତୀତର ଇତିହାସ ସାହାଯ୍ୟରେ ଓଡ଼ିଆର ବର୍ତ୍ତମାନ ଆଶା, ଅଭିପ୍ରାୟ, ଅଭାବ ଓ ଅଭିରୁଚି ବାଖ୍ୟା କରିବାକୁ ହେବ ଏବଂ ମାନବ ଜଗତର ସମୃଦ୍ଧ ଚିନ୍ତା ଦ୍ୱାରା ସେ ସବୁକୁ ପରିବର୍ତ୍ତିତ ଓ ପରିମାର୍ଜିତ କରି ଭବିଷ୍ୟତ ଗଠନର ପ୍ରୟାସ କରିବାକୁ ହେବ ।”

ଏହାହିଁ ଗୋପବନ୍ଧୁଙ୍କ ଜୀବନର ଉଦ୍ଦେଶ୍ୟ ଥିଲା । ତାଙ୍କର ଜୀବନ-କାଳ ମଧ୍ୟରେ ସେ ଯେଉଁଠାରେ ଯେତେବେଳେ ଯେପରି ଭାବରେ ଅବସ୍ଥାନ କରୁଥିଲେ,ସେତେବେଳେ ତାଙ୍କର ମହୋଜ୍ଜ୍ୱଳ ଉମମୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ଭବିଷ୍ୟତ ଗଠନର ପ୍ରୟାସ କରିଥିଲେ । ସେ ମହାପ୍ରାଣ ସମସ୍ତ ବିଶ୍ୱସେବାରେ ଉଦ୍‌ବୁଦ୍ଧ ହୋଇଥିଲା ।

ପୁରୀ ଅବସ୍ଥାନ କାଳରେ ସେ ଉତ୍କଳ ବ୍ରାହ୍ମଣ ସମିତିର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । 'ସତ୍ୟବାଦୀ'ରେ ସେ ବହୁବାର ଉତ୍କଳ ବ୍ରାହ୍ମଣ ସମିତି ବିଷୟରେ ଆଲୋଚନା କରୁଥିଲେ । ବ୍ରାହ୍ମଣ ସମିତିର ବାର୍ଷିକ ଉତ୍ସବ-ମାନଙ୍କରେ ଯୋଗଦେଇ ଉତ୍କଳୀୟ ବ୍ରାହ୍ମଣ ଯୁବକ ମାନଙ୍କର ଆଦର୍ଶର କି ପ୍ରକାରେ ହେବା ଆବଶ୍ୟକ ତାହା ବୁଝାଉଥିଲେ । ଭାରତର ଭିନ୍ନ ଭିନ୍ନ ପ୍ରଦେଶରେ ବ୍ରାହ୍ମଣସମିତିମାନ ସ୍ଥାପିତ ହୋଇ ବ୍ରାହ୍ମଣମାନଙ୍କର ଉନ୍ନତିର ଯତ୍ନ କରୁଥିବା ବେଳେ ଗୋପବନ୍ଧୁ ଉତ୍କଳର ବ୍ରାହ୍ମଣ ସମିତର କାର୍ଯ୍ୟରେ ଲାଗି ରହିଥିଲେ । ବ୍ରାହ୍ମଣର ଜନ୍ମ, ଧର୍ମ, କର୍ମ, ବ୍ରତ, ସାଧନା, ଭାବ ଓ ଭାବନା ସମସ୍ତ 'ଜଗଦ୍ଧିତାୟ କୃଷ୍ଣାୟ' ଏହି ବିଶ୍ୱାସରେ ବଳୀୟାନ୍ ନ ହେବା ଯାଏ ବ୍ରାହ୍ମଣ ସମିତିର କାର୍ଯ୍ୟ ନିରର୍ଥକ ବୋଲି ସେ କହୁଥିଲେ । ସେ ବୁଝିଥିଲେ ଯେ ଭାରତରେ ପ୍ରକୃତ ବ୍ରାହ୍ମଣ ସଂଖ୍ୟା ବଢ଼ାଇବା ଆବଶ୍ୟକ, ଆଦର୍ଶ ବ୍ରାହ୍ମଣ ଜୀବନହିଁ ଭାରତର ଜାତୀୟ ଜୀବନ ହେବା ଉଚିତ । 'ଶୋକେ ଧୀର, ବିପଦେ ନିଶ୍ଚଳ, ଦୁଃଖେ ଅକାତର, ଅନ୍ୟାୟେ ପ୍ରଚଣ୍ଡ, ପୀଡ଼ନେ ସହିଷ୍ଣୁ, ଜ୍ଞାନେ ପିପାସୁ ଓ ପ୍ରବୀଣ, ତ୍ୟାଗେ ନିରଭିମାନ, ସତ୍ୟେ ବୀର, ଧର୍ମେ ବିଶ୍ୱାସୀ', ଏହିପରି ଲକ୍ଷ ଲକ୍ଷ ଲୋକ ଭାରତବର୍ଷରେ ବ୍ରହ୍ମବର୍ଚ୍ଚର ବିପୁଳ ପ୍ରଭାବ ନ ଦେଖାଇଲେ ମୁକ୍ତିର ଅନ୍ୟ ଉପାୟ ନାହିଁ ।

ପୁରୀରେ ସେ ବ୍ରାହ୍ମଣ ସମିତି ଛାତ୍ରାବାସ ନିକଟରେ ରହି ଛାତ୍ରମାନଙ୍କ ସଙ୍ଗରେ ମିଶି ସେମାନଙ୍କର ସୁବିଧା ଅସୁବିଧା ବୁଝୁଥିଲେ । ପ୍ରାୟ ପ୍ରତିଦିନ ସେ ଛାତ୍ରାବାସକୁ ଯାଉଥିଲେ । ବ୍ରାହ୍ମଣସମିତିକୁ ସାହାଯ୍ୟଦେବାବ୍ୟତୀତ ଅନ୍ୟ ପ୍ରକାରରେ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିଲେ । ଅବକାଶ ସମୟରେ ଛାତ୍ରମାନଙ୍କୁ ଏକତ୍ର କରାଇ ନାନା ଉପଦେଶମାନ ଦେଉଥିଲେ । ତାଙ୍କର ଉନ୍ନତ ଆଦର୍ଶ ଛାତ୍ରମାନେ ସମ୍ମୁଖରେ ଦେଖି ନିଜ ନିଜ ଜୀବନ ଗଢ଼ିବାରେ ବ୍ରତୀ ହେଉଥିଲେ । ସେ ଯେଉଁଠାରେ ଯେତେବେଳେ ରହୁଥିଲେ ସେଠାରେ ବ୍ରାହ୍ମଣ ସମାଜର ଉନ୍ନତି ନିମନ୍ତେ ଚେଷ୍ଟିତ ଥିଲେ । ତାଙ୍କର ମୟୂରଭଞ୍ଜ ଅବସ୍ଥାନ ସମୟରେ ସେଠା ବ୍ରାହ୍ମଣମାନଙ୍କର ରୀତିନୀତି, ଆଚାର ବ୍ୟବହାର

ଦେଖି ସେମାନଙ୍କର ଉନ୍ନତ ସାଧନ ପାଇଁ ସେଠାରେ ଗୋଟିଏ ବ୍ରାହ୍ମଣସମିତି ସ୍ଥାପନ କରାଇଥିଲେ ଏବଂ ସେହି ଅନୁଷ୍ଠାନଟି ସାର୍ବଜନୀନ କରିବା ନିମନ୍ତେ ସକଳ ହିନ୍ଦୁ ସମାଜରୁ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସଭ୍ୟରୂପେ ଗ୍ରହଣ କରୁଥିଲେ ଏବଂ ମୟୂରଭଞ୍ଜର ସାମାଜିକ ଉନ୍ନତି ନିମନ୍ତେ "ଧର୍ମସଭା" ନାମରେ ଏକ ସଭା ସ୍ଥାପନ କରିଥିଲେ । ବ୍ରାହ୍ମଣର ଗୁରୁ ଦାୟିତ୍ୱ ପ୍ରକୃତରେ ସେ ଉପଲବ୍‌ଧି କରିଥିଲେ । ସେ ବହୁବାର ଦୁଃଖପ୍ରକାଶକରି କହୁଥିଲେ,ବ୍ରାହ୍ମଣ ସମିତି ମାନ ସାମ୍ପ୍ରଦାୟିକ ଅନୁଷ୍ଠାନ ହେବା ଉଚିତ ନୁହେ । ଜାତୀୟଭାବ ଜାଗରଣ ଓ ଜାତୀୟ ଜୀବନ ଗଠନ ଏହାର ମୂଳଲକ୍ଷ୍ୟ । ବ୍ରାହ୍ମଣ ସମଗ୍ର ହିନ୍ଦୁ ସମାଜର ନେତା ଏବଂ ସମାଜ ମଧ୍ୟ ବ୍ରାହ୍ମଣର ଏହି ନେତୃତ୍ୱ ଚିରକାଳ ସ୍ୱୀକାର କରି ଆସିଅଛୁ । ସୁତରାଂ ଉପରେ ଥାଇ ତଳେ ଯେଉଁମାନେ ପଡ଼ି ଯାଇଅଛନ୍ତି ସେମାନଙ୍କୁ ଉଦ୍ଧାର କରିବା ବ୍ରାହ୍ମଣର କର୍ତ୍ତବ୍ୟ । ବ୍ରାହ୍ମଣଛାତ୍ରମାନଙ୍କୁ ସେ କିପରି ଉତ୍ସାହ ବାଣୀ ଦେଉଥିଲେ, ତାହା ତାଙ୍କ ଲିଖିତ "ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ବ୍ରାହ୍ମଣ ଛାତ୍ରମାନଙ୍କ ପ୍ରତି" କବିତାରୁ ବେଶ ଜଣାପଡ଼େ :—

* * *

"ଭାରତ ଜାତୀୟ ଜୀବନ ତରଣୀ
ପାଏ ନାହିଁ ଏବେ ସହଜ ସରଣୀ ।
ଜାତୀୟତାପୋତେ ଜୀବନବୋଇତ
ଯୋଡ଼ିବା ତ ପ୍ରତି ଜନର ବିହିତ ।
ପଡ଼ିବ ହେବାକୁ ଏ ତୋଫାନେ ପାର
ହେବ ଟିକି ଭାଇ ପାରଗ କାଣ୍ଡାରୀ ?
ସେହିପରି ବଳ କର ଅରଜନ
ଆଗନ୍ତୁ ସେପରି କର ଆୟୋଜନ ।
ଭାରତବାସୀର ଧର୍ମବଳ ସାର

ଧର୍ମ ବିନା ଆଜ ଏତେ ଛାରଖାର ।
ଧର୍ମେ ମଗ୍ନ ଆଗେ ତୁମ ଅଧିକାର
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।
ଦେଖାଅ ଜୀବନେ ଅଦ୍ଭୁତ ଶକତ
କର୍ମେ ଅନାସକ୍ତି ଧର୍ମେ ଦୃଢ଼ ରତ ।
ପୂତ 'କର୍ମ ଭୂମି' ଏ ଭାରତ ଧାମେ
ଆର୍ଯ୍ୟ ଅଭିମାନ କର କହାଁ ନାମେ ?

* * *

ସତ୍ୟ, ଶମ, ଦମ, ଶଉଚ, ଉଦ୍ୟମ।
ଏ ଆଦି ସକଳ ତୁମ୍ଭ କୁଳ ଲକ୍ଷ
ଆଚରଣ ତାହା ଜୀବନେ ନିରତେ
ବ୍ରହ୍ମତ୍ୱର ତେଜ ପ୍ରକାଶ ଜଗତେ ।
ଲୋକହିତେ, ପ୍ରାଣପ୍ରଦାନପ୍ରବଣ—
ଦଧୀଚି ଶୋଣିତ କରିଛ ଧାରଣ ।
ଦିଅ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ
ଭାରତ ଜାତିର ମହାଯାଗେ ଲାଗ ।

* * *

ନିଜ ସୁଖ ଲାଗି ଜାତି ନୁହେ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ-ପ୍ରଗାଢ଼ରକ୍ତ-ବନ୍ଧୁ ।
ଦେଖାଅ ଏ ସତ୍ୟ ଆପଣା ପସରଣେ
ଦିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତେ ତେଜ ଅଭିମାନ ।*

ବ୍ରାହ୍ମଣ ସମିତିର ଛାତ୍ରମାନଙ୍କ ପ୍ରତି ସେ ଯେ କେବଳ ଏପରି ଉପଦେଶ ଦେଉଥିଲେ ତାହା ନୁହେ । ଛାତ୍ରମାନଙ୍କରଯେଉଁଠାରେ ସମ୍ମିଳନ ହେଉଥିଲା ସେଠାରେ ଗୋପବନ୍ଧୁ ଉପସ୍ଥିତ ହେଉଥିଲେ । ଉତ୍କଳ-ଯୁବକ-କେନ୍ଦ୍ର-ସମିତିର ଶାଖା ସମିତିମାନଙ୍କଠାରୁ ଆରମ୍ଭ କରି ଚନ୍ଦ୍ରଶେଖର, ପ୍ୟାରୀମୋହନ, ରାମଚନ୍ଦ୍ରଙ୍କ ସ୍ମୃତିସଭା ଆଦିରେ ଯୋଗ ଦେଉଥିଲେ । ପ୍ରତ୍ୟେକ ବର୍ଷ ଛାତ୍ରସମ୍ମିଳନୀରେ, ଉତ୍କଳର ହେଉ ବା ବାହାରର ହେଉ; ସେ ଯୋଗ ଦେଇ ଛାତ୍ରମାନଙ୍କୁ ଭବିଷ୍ୟତ୍ କର୍ତ୍ତବ୍ୟ ବୁଝାଉଥିଲେ । ଛାତ୍ର ସମାଜପ୍ରତି ତାଙ୍କର ଅତିଶୟ ସ୍ନେହ ଥିଲା । କେତେଜଣ ଛାତ୍ରଙ୍କୁ ସେ ଏକତ୍ର ଦେଖିଲେ ଅତିଶୟ ଆନନ୍ଦିତ ହେଉଥିଲେ । ଆଜିକାଲିର ନିଖିଳ-ଉତ୍କଳ-ଛାତ୍ର-ସମ୍ମିଳନୀ ଗୋପବନ୍ଧୁଙ୍କର ପୂର୍ବକଥିତ ଉତ୍କଳଯୁବକ-କେନ୍ଦ୍ର-ସମିତିର ରୂପାନ୍ତର ମାତ୍ର । ଏହି କେନ୍ଦ୍ରସମିତି ତିନଚାରି ବର୍ଷ କେତେଗୁଡ଼ିଏ ଦେଶ-ହିତକର କାର୍ଯ୍ୟ ସମ୍ପାଦନ କରିଥିଲା, ମାତ୍ର ନାନାଘଟଣା ପ୍ରବାହରେ ଏହାର ମୌଳିକ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ରହିପାରି ନ ଥିଲା । ଶେଷକୁ ତାହା କଲେଜର ଏକ ନୀରସ ଆଲୋଚନା ସଭାରେ ପରିଣତ ହେଲା । ଓଡ଼ିଶାର ନାନାସ୍ଥାନରେ ସ୍ଥାପିତ ହୋଇଥିବା ଶାଖାସମିତିମାନ କେନ୍ଦ୍ର ସମିତିର ତିରୋଧାନରେ ଲୋପ ପାଇଲା । କ୍ରମେ ଲୁପ୍ତ ଉତ୍କଳ-ଯୁବକସମିତି ସ୍ଥାନରେ ଓଡ଼ିଶା ଛାତ୍ରମାନଙ୍କରଦଳଗତଉଦ୍ୟମରେ ଓଡ଼ିଶାର "ନିଖିଳଛାତ୍ର-ସମ୍ମିଳନୀ" ସ୍ଥାପିତ ହେଲା ।

ଅର୍ଥ ଅଭାବରେ ଓଡ଼ିଶାରେ ଶିକ୍ଷାର ପ୍ରସାର ହୋଇ ପାରୁ ନାହିଁ । ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ଉଚ୍ଚ ଇଂରାଜୀ ବିଦ୍ୟାଳୟ ପର୍ଯ୍ୟନ୍ତ ସବୁଥିରେ ଏହି ଅଭାବ ପରିଲକ୍ଷିତ ହୁଏ । ଶିକ୍ଷା କ୍ରମେ ଅତ୍ୟଧିକ ବ୍ୟୟସାଧ ହେବାରୁ ଓଡ଼ିଶାରେ ଦରିଦ୍ର ଛାତ୍ରମାନଙ୍କର ଶିକ୍ଷାପଥ କ୍ରମେ ରୁଦ୍ଧ ହୋଇ ପଡ଼ିଲାଣି ଏ ଦେଶର ସାଧାରଣ ଗୃହସ୍ଥ କେତେ କଷ୍ଟରେ ଖାଇବାପାଇଁ ପୁଞ୍ଜି ଉପାର୍ଜ୍ଜନ କରେ ତାହା ସମସ୍ତେ ଜାଣନ୍ତି । ଅଭାବ ହେତୁ ସ୍କୁଲ କଲେଜଛାତ୍ର ଯେ ବେଳେ ବେଳେ ନ ଖାଇ ସ୍କୁଲ କଲେଜକୁ ଆସନ୍ତି,

ଅନେକେ ଜଳଖିଆ ନକରି ଭୋକମାରିଦିଅନ୍ତି ଏବଂ ଏହିପରି ଅଧିକାଂଶ ଦରି
ପାଠୁଆ ହୋଇ ସ୍କୁଲକଲେଜ ଛାଡ଼ନ୍ତି । ସେପରି ସଂଗଠ ନ ଥିଲେ ଉଚ୍ଚଶିକ୍ଷା
ପାଇବା ଅସମ୍ଭବ ହେଉଅଛି । ସେତିକି ନୁହେ, ଶିକ୍ଷକମାନେ ମଧ୍ୟ ଅନେକ-
ଠାରେ ଖାଇବାକୁ ନ ପାଇଁ ନିଜ କାର୍ଯ୍ୟରେ ଅବହେଳା ପ୍ରକାଶ କରନ୍ତି ।
କେତେକ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକମାନେ ଚାକିରି କରି ନିଜର
କୁଟୁମ୍ବ ପୋଷିବା ଦୂରେ ଥାଉ ନିଜର ବେତନରେ କେବଳ ପେଟ ପୋଷି-
ଥାନ୍ତି । ସେଥିରେ ତାଙ୍କର ଅଧ୍ୟାପନାରେ ମନୋଯୋଗ ଯେପରି ଥିବ
ଜଣାପଡ଼େ । ଦେଶରେ ଶିକ୍ଷାର ଏହିପରି ପ୍ରତ୍ୟେକ ସ୍ତରରେ ଅର୍ଥାଭାବ
ଅବନତିର ମୂଳକାରଣ ଜାଣିଲେ ସୁଦ୍ଧା କେହି ତାହାର ବିହିତ ପ୍ରତିକାର
କରୁନାହାନ୍ତି, କରିବ ବା କିଏ ? ଓଡ଼ିଶାର ସାଧାରଣ ଲୋକେ ସେପରି ସଙ୍ଗତି-
ସମ୍ପନ୍ନ ନୁହନ୍ତି ଯେ, ଶତଶତ ମୁଦ୍ରା ଏକାବେଳକେ ଶିକ୍ଷାପାଇଁ ଉତ୍ସର୍ଗ କରି
ଏ ଅଭାବ ମୋଚନ କରିବେ । ଗୋପବନ୍ଧୁ ଏହିକଥା ବୁଝିଥିଲେ । ଓଡ଼ିଆ
ମାନଙ୍କର ଶିକ୍ଷାପଥରେ ସାହାଯ୍ୟ ଦେବା ପାଇଁ ସେ "ଓଡ଼ିଶାଶିକ୍ଷା—ପାଣ୍ଠି"
ବା 'ପଇସାଫଣ୍ଡ' ନାମରେ ଏକ ପାଣ୍ଠି ସ୍ଥାପନ କରିଥିଲେ । ସେଥିରେ
ପ୍ରଚାରକ ପଠାଇ ଦେଶର ପ୍ରତି ଗୃହସ୍ଥର ପ୍ରତ୍ୟେକ ଲୋକଠାରୁ ଗୋଟିଏ
ଲେଖାଏଁ ପଇସା ଆଦାୟର ବ୍ୟବସ୍ଥା କରୁଥିଲେ । ଦରିଦ୍ରଛାତ୍ରମାନଙ୍କୁ ଏଥିରେ
ସାହାଯ୍ୟ ଦେବାପାଇଁ ଉତ୍ସାହ ଦେଉଥିଲେ । ଏହାର ଫଳରେ ସେ ଓଡ଼ିଶାରୁ
ସହସ୍ରାଧିକ ଟଙ୍କା ଆଦାୟ କରିଥିଲେ, କଟକ ରେଭେନ୍‌ସା କଲେଜର
ପ୍ରିନ୍ସିପାଲ ଲ୍ୟାମ୍ବର୍ଟ ସାହେବ ଉକ୍ତ ଫଣ୍ଡର କୋଷାଧ୍ୟକ୍ଷ ଥିଲେ । ସଂଗୃହୀତ
ଅର୍ଥରୁ ତିନିହଜାର ସରକାରୀ ଟଙ୍କା ଯୁଦ୍ଧ ଋଣରେ ଗଚ୍ଛିତ ଅଛି ।

ଗୋପବନ୍ଧୁ ସେତେବେଳେ ଅନୁଭବ କରିଥିଲେ ଯେ, ପଲ୍ଲୀରେ କପରି,
ସମବାୟ ଆନ୍ଦୋଳନର ଅଭାବ । ଦରିଦ୍ର କୃଷକମାନେ ମହାଜନମାନଙ୍କର
ନିର୍ମମ ଅତ୍ୟାଚାରରେ କପରି ପ୍ରପୀଡ଼ିତ ତାହା ସେ ବୁଝିଥିଲେ । ସାମ୍ବତ୍ସରିକ
କାର୍ଯ୍ୟ କରି ଶେଷରେ ଧାନ ଅମଳ କରି ଘରକୁ ଆଣିବା ବେଳକୁ ମହା-
ଜନର ଦୂତ ଦ୍ୱାରରେ ଉପସ୍ଥିତ ହେଉଥିଲା । ଚକ୍ରବୃଦ୍ଧି ହିସାବରେ ସୁଧ ଦେଇ

ଦେଇ ଚଷାକୂଳ ସମ୍ମିଳନୀମାନ ହେଉଥିଲେ । ଏହି ମହାଜନ ମାନଙ୍କର ଅତ୍ୟାଚାର କବଳରୁ ରକ୍ଷା କରିବା ପାଇଁ ଏବଂ ଗ୍ରାମରେ ଦଳଗତ ଜୀବନ ଗଠନ ଦ୍ୱାରା ଗ୍ରାମ୍ୟଲୋକଙ୍କ ମଧ୍ୟରେ ସକଳ ପ୍ରକାର ଐକ୍ୟଭାବ ଆଣିବା ପାଇଁ ସେ ସମବାୟ ସମିତିମାନ ଗ୍ରାମେ ଗ୍ରାମେ ସ୍ଥାପନ କରୁଥିଲେ । ସେତେବେଳେ ସରକାର ଓଡ଼ିଶା କୋଅପରେଟିଭ୍ ବିଭାଗର କର୍ତ୍ତା ଗୋପବନ୍ଧୁଙ୍କର ଏ ଦିଗରେ ଆଗ୍ରହ ଓ ଉଦ୍ୟମ ଦେଖି ପୁରୀଜିଲ୍ଲାରେ ସମିତି ସ୍ଥାପନ କରିବା ନିମନ୍ତେ ତାଙ୍କ ଉପରେ ଭାର ଦେଇଥିଲେ । ଗୋପବନ୍ଧୁ ଦରିଦ୍ରଙ୍କ ନିଯୁକ୍ତକରି ନିଜେ ଲୋକଙ୍କୁ ବୁଝାଇ ସମିତିମାନ ସ୍ଥାପନ କରିଥିଲେ ।

ସତ୍ୟବାଦୀ ଇସ୍କୁଲର ସମ୍ପାଦକ ଥାଇ ପୁରୀରେ ଓକିଲାତି କରି ଉତ୍କଳର ସମସ୍ତ ଜାତୀୟ ଅନୁଷ୍ଠାନମାନଙ୍କରେ ସେ ଯୋଗ ଦେଉଥିଲେ । ତାଙ୍କ ମନର ଭାବ ଓ କାର୍ଯ୍ୟ ପ୍ରଣାଳୀର ସୂଚନା ତାଙ୍କ ନିଜ ପରିଚାଳିତ 'ସତ୍ୟବାଦୀ' ପତ୍ରିକାରେ ସେତେବେଳେ ପ୍ରକାଶ କରୁଥିଲେ । ଉକ୍ତ ସାହିତ୍ୟପତ୍ର ପ୍ରଥମେ ବ୍ରହ୍ମପୁରର 'ଆଶା' ପ୍ରେସରେ ମୁଦ୍ରିତ ହେଉଥିଲା । ପ୍ରାୟ ଦୁଇବର୍ଷ ପରେ ଅସୁବିଧା ଅନୁଭବ କରି ପୁରୀର ପୁରୁଷୋତ୍ତମ ପ୍ରେସରେ ପ୍ରକାଶ କରାଇଥିଲେ । ମାତ୍ର ଯେ କୌଣସିଠାରେ ପ୍ରକାଶିତ ହେଲେ ସୁଦ୍ଧା ନିଜର ସୁବିଧା ଓ ସମୟ ଅନୁସାରେ ତାଙ୍କ ମନ ଅନୁଯାୟୀ କାର୍ଯ୍ୟ ହୋଇ ପାରୁ ନ ଥିବାର ସେ ଅନୁଭବ କରିଥିଲେ । ସେଥିପାଇଁ ନିଜର ସମସ୍ତ ସଞ୍ଚିତ ଅର୍ଥ ବ୍ୟୟ କରି ଚିରପୋଷିତ ଆକାଂକ୍ଷା ପୂରଣ ନିମନ୍ତେ ସନ ୧୯୧୮ ମସିହାରେ ସତ୍ୟବାଦୀରେ ଗୋଟିଏ ନୂତନ ଛାପାଖାନା ସ୍ଥାପନ କରି ଏହି "ସତ୍ୟବାଦୀ" ପତ୍ରିକା ଏବଂ ସତ୍ୟବାଦୀ ସ୍କୁଲର ନାମାନୁସାରେ "ସତ୍ୟବାଦୀ ପ୍ରେସ" ବୋଲି ଏହାର ନାମକରଣ କଲେ । "ସତ୍ୟବାଦୀ" ମାସିକ ପତ୍ରିକା ଏହି ଛାପାଖାନାରୁ ପ୍ରକାଶିତ ହେଲା ।

୧୦

୧୯୧୭ ମସିହାରେ ଓଡ଼ିଶାର କୁଳବୃଦ୍ଧ ମଧୁସୂଦନଙ୍କ ପରେ ମ୍ୟୁନିସିପାଲିଟି ପକ୍ଷରୁ ସମଗ୍ର ଓଡ଼ିଶାର ପ୍ରତିନିଧି ହୋଇ ଗୋପବନ୍ଧୁ ସରକାର

ଓଡ଼ିଶା ଲାଟ ସଭାକୁ ଯାଇଥିଲେ । ଲାଟ ସଭାକୁ ଦେଶ ସେବାର କ୍ଷେତ୍ର ମନେକରି ଦେଶସେବାରେ ସମସ୍ତ ସମୟ ଖଟାଇବେ ଭାବି ସେହି ସମୟରୁ ସେ ଓକିଲାତି ବ୍ୟବସାୟ ଏକାବେଳକେ ଛାଡ଼ିଦେଇଥିଲେ । ସେଠାରେ ସେ ଚାରିବର୍ଷ ରହି ଦେଶର ନାନା ଦୁଃଖ ଦୁର୍ବିପାକରେ ନିତାନ୍ତ ବ୍ୟଥିତ ହୋଇ ତହିଁର ପ୍ରତୀକାରମାନ ଲୋଡ଼ିଥିଲେ । ସେ ସଭାରେ ତିନିବର୍ଷ ରହିବା ନିୟମ; କିନ୍ତୁ ନୂତନ ଶାସନ ସଂସ୍କାର ପଦ୍ଧତି ପାର୍ଲିଆମେଣ୍ଟରେ ବିଚାରାଧୀନ ଥିବାରୁ ସେଥର ପ୍ରାଦେଶିକ ବ୍ୟବସ୍ଥାପକସଭା [Council] ର କାର୍ଯ୍ୟକାଳ ଆଉ ଏକବର୍ଷ ଅଧିକ କରାଯାଇ ଥିଲା । ଦେଶର ଅବସ୍ଥା କହିଲାବେଳେ ସମଗ୍ର ଓଡ଼ିଶାର କେଉଁ ଅଜ୍ଞାତ କୋଣରେ ଲୋକେ କିପରି ଅଛନ୍ତି ତାଙ୍କ ଆଖି ଆଗରେ ନାଚି ଯାଉଥିଲା । ଓଡ଼ିଶାର ଏକପ୍ରାନ୍ତରୁ ଅପର ପ୍ରାନ୍ତ ଯାଏ ବୁଲି କେଉଁଠାରେ କିଏ ଅଭାବ ଗ୍ରସ୍ତ, କେଉଁ ଜିଲ୍ଲାରେ କି କି ଅସୁବିଧା ଲୋକମାନେ ଭୋଗ କରୁଅଛନ୍ତି, ସମସ୍ତ ତଥ୍ୟ ନିଜେ ଅନୁସନ୍ଧାନ କରି ଘଟଣା ନିଜ ଆଖିରେ ଦେଖି ତହିଁର ନିରାକରଣ ନିମନ୍ତେ ବ୍ୟବସ୍ଥାପକ ସଭାରେ ପ୍ରସ୍ତାବମାନ ଆଗତ କରୁଥିଲେ । ଦେଶ ଲାଗି କାମ କରିବାକୁ, ଲୋକଙ୍କ ଦୁର୍ଗତିରେ ଆହା ବୋଲି ସାହା ହେବାକୁ କେବଳ ସେହି ଏକା ଥିଲେ । ଶାସନ ସରକାରର ନାନା ବିଭାଗରେ ଓଡ଼ିଆମାନଙ୍କ ଦୀର୍ଘପ୍ରତି ଅବଜ୍ଞା ଏବଂ ଅନାଦର, ଦେଶର ଜନ ସାଧାରଣଙ୍କ ମଧ୍ୟରେ ସୁଲଭ ଶିକ୍ଷା ପ୍ରଚାର ଦିଗରେ ସରକାରଙ୍କର ଅନବଧାନତା ଓ ନାନା ଭାବରେ ଦରିଦ୍ର ଓଡ଼ିଶା ଯେ ପ୍ରପୀଡ଼ିତ, ଲାଂଛିତ, ଏ ସମସ୍ତ ବିଷୟରେ ପ୍ରଶ୍ନମାନ ଉଠାଉଥିଲେ । ନାନା ଘଟଣାରେ ସେ ଓଡ଼ିଶାର ସମସ୍ତ ଦୁଃଖ କାହାଣୀ ଲାଟ ସଭାର ସଦସ୍ୟମାନଙ୍କ ଆଗରେ ବାରଂବାର କହି ସରକାର ଠାରୁ ପ୍ରତୀକାରର ଆଶା ରଖୁଥିଲେ । ରୋଗ ବ୍ୟାଧି, ବଢ଼ି ବନ୍ୟା, ମରୁଡ଼ି, ଅନ୍ନ କଷ୍ଟରୁ ଓଡ଼ିଶା ଲୋକେ ରକ୍ଷାପାଇ ପ୍ରାଣଧରି ରହିବା ପାଇଁ ସେ ସରକାର ଠାରେ ଗୁହାରି କରୁଥିଲେ । ଏହିପରି ନାନା ସୂତ୍ରରେ ଦେଶର ଅଭାବ ଅସୁବିଧାମାନ ଘୁଞ୍ଚାଇ ଏହାକୁ ନିଜ ଜୀବନର କାର୍ଯ୍ୟ ରୂପେ ନିରୂପଣ କରିଥିବାର ଦେଖି ଓଡ଼ିଆମାନଙ୍କ ପ୍ରାଣରେ କିଛିତ

ଆଶା ଏବଂ ଆଶ୍ୱାସନା ଆସିଥିଲା । ଓଡ଼ିଆମାନଙ୍କ ଆପତ୍ତି ସତ୍ୟ ଓ ସଙ୍ଗତ ଥିବାର ଲାଟସଭା ଭବନରେ ପ୍ରଚାର କରୁଥିଲେ । କେଉଁଠାରେ ବନ୍ଦୋବସ୍ତ ବଜ୍ରପାତ, କେଉଁଠାରେ ପ୍ରଜାଉପରେ ଜମିଦାରର ଅତ୍ୟାଚାର, କେଉଁଠାରେ ପ୍ରଜାକୂଳର ଅଶାନ୍ତି, ଏହି ସବୁ ଗୁରୁତର ବ୍ୟାପାର ନେଇ ସେ ଯେଉଁ ଦମ୍ଭ ଓ ସାହସର ସହିତ ଲାଟସଭା ବୈଠକମାନଙ୍କରେ ଯେଉଁ ଅକାଟ୍ୟ ଯୁକ୍ତିମାନ ଦେଖାଇ ସର୍ବଜନପ୍ରିୟ ହୋଇଥିଲେ ତାହା ଯେ କୌଣସି ଓଡ଼ିଆ ପକ୍ଷରେ ଗୌରବର କଥା ।

ପ୍ରଥମେ ଉତ୍କଳର ଖଣ୍ଡ ବିଖଣ୍ଡିତ ଶରୀର ପୂର୍ଣ୍ଣାଙ୍ଗ ଦେଖିବା ପାଇଁ ସେ ପ୍ରସ୍ତାବ କରିଥିଲେ । ସେତିକି ନୁହେଁ, ସିଂହଭୂମିରେ ଡେପୁଟୀ କମିଶନରଙ୍କ ଠାରୁ ଆରମ୍ଭ କରି ସାଧାରଣ କର୍ମଚାରୀମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସିଂହଭୂମିରେ ଓଡ଼ିଆ ଭାଷା ଚଳିବା ଆବଶ୍ୟକ ବୋଲି ବୁଝାଉଥିଲେ । ନିଜେ ତାଙ୍କର ସହକର୍ମୀ ପଣ୍ଡିତ ଗୋଦାବରୀଶ ମିଶ୍ର ଏମ. ଏ, ଙ୍କୁ ଚକ୍ରଧରପୁରକୁ ପଠାଇ ସେଠାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲିଥିଲେ । ଗୋପବନ୍ଧୁ ତହିଁର ସମ୍ପାଦକ ଥିଲେ । ସିଂହଭୂମିର ଧଳଭୂମି ଅଂଚଳରେ କେତେକ ପ୍ରାଥମିକ ବିଦ୍ୟାଳୟମାନ ତାଙ୍କ ଉଦ୍ୟମରେ ବସିଥିଲା । ବହଡ଼ା ଗୋଡ଼ାରେ ଏକ ମାଇନର ସ୍କୁଲ ବସାଇ ସେଠାକୁ ସତ୍ୟବାଦୀର ଅନ୍ୟ ଏକ କର୍ମୀ ବାସୁଦେବ ମହାପାତ୍ର ବି, ଏ, ଙ୍କୁ ପଠାଇଥିଲେ । କିଛି ଦିନପରେ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପଟ୍ଟନାୟକ ବି, ଏ, ଙ୍କୁ ଉକ୍ତ ସ୍କୁଲକୁ ପଠାଇ ଏହାକୁ ଉଚ୍ଚଶ୍ରେଣୀ ଇଂରେଜୀ ବିଦ୍ୟାଳୟ କରିବାପାଇଁ କଳ୍ପନା କରିଥିଲେ । ଏହି ସ୍କୁଲରେ ହାଇସ୍କୁଲର ୪ର୍ଥ ଓ ୩ୟ ଶ୍ରେଣୀ ମଧ୍ୟ ଖୋଲାଯାଇଥିଲା । ପିଲାମାନଙ୍କୁ ଓ ସ୍ଥାନୀୟ ବ୍ୟକ୍ତିମାନଙ୍କୁ ଉତ୍ସାହିତ କରିବାପାଇଁ ପୁରସ୍କାର ବିତରଣୀ ସଭା ମାନଙ୍କରେ ଗୋପବନ୍ଧୁ ସଭାପତି ହେଉଥିଲେ । ଏ ସବୁ ଛଡ଼ା ସ୍ଥାନୀୟ ଉଦ୍ୟମରେ କେତେକ ପ୍ରାଥମିକ ଓ ମଧ୍ୟମ. ବିଦ୍ୟାଳୟମାନ ସ୍ଥାପନ କରାଇଥିଲେ । ସେଠାରେ ଓଡ଼ିଆ ଭାଷା ଶିକ୍ଷା ପ୍ରଚାରର ଉଦ୍ଦେଶ୍ୟ ବୁଝାଇ ବ୍ୟବସ୍ଥାମାନ

କରୁଥିଲେ । ଫୁଲଝର ପ୍ରଜାମାନଙ୍କ ପକ୍ଷରୁ ଟେଲିଗ୍ରାମ ପାଇ କଲିକତାରୁ ଜଣେ ସ୍ୱେଚ୍ଛାସେବକ ସଙ୍ଗରେ ନେଇ ଗୋପବନ୍ଧୁ ପ୍ରଥମେ ମଧ୍ୟ ପ୍ରଦେଶର ଉକ୍ତ ଅଂଚଳମାନଙ୍କରେ ଓଡ଼ିଆ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଖଡ଼ିଆଳ, ପଦ୍ମପୁର, ଚନ୍ଦ୍ରପୁର ଅଂଚଳରେ ସ୍ୱେଚ୍ଛାସେବକ ମାନ ରଖାଇ ଓଡ଼ିଆ ଆନ୍ଦୋଳନ ଚଳାଉଥିଲେ । ମେଦିନୀପୁରର କାନ୍ଥି ଅଂଚଳରେଓଡ଼ିଆ ଆନ୍ଦୋଳନକୁ ରାଜବିଦ୍ରୋହ ବୋଲି କହି ସ୍ଥାନୀୟ କର୍ମଚାରୀମାନେ ବାଧା ଓ ପ୍ରତିଘାତ ଦେଇଥିଲେ । ପ୍ରାୟ ୧୯୧୩ ମସିହାଠାରୁ ଗୋପବନ୍ଧୁ ସିଂହଭୂମି ଓଡ଼ିଆଶିକ୍ଷା ନେଇ ଆନ୍ଦୋଳନ କରି ଆସୁଥିଲେ । ସିଂହଭୂମିରେ, ମଧ୍ୟପ୍ରଦେଶର ପଦ୍ମପୁର, ଖଡ଼ିଆଳ, ଫୁଲଝର, ଚନ୍ଦ୍ରପୁର ଅଂଚଳମାନଙ୍କରେ, ମେଦିନୀପୁରର କାନ୍ଥି [ Contai ] ଅଂଚଳରେ, ଗଂଜାମର ଜୟପୁର, ଇଛାପୁର ଏଜେନ୍‌ସି ଅଂଚଳମାନଙ୍କରେ ଓଡ଼ିଆମାନଙ୍କର ଭାଷାଶିକ୍ଷା ଭାବଗତ ଫେରାଇବାପାଇଁ ସେ ସାଧାରଣ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲାଦିନୁଁ ନାନା ପ୍ରକାର ଉଦ୍ୟମ କରୁଥିଲେ । ସିଂହଭୂମିରେ ଓଡ଼ିଆ ପ୍ରାଇମେରୀ ଶିକ୍ଷାର ଆବଶ୍ୟକତା ସେ ସର୍ବତୋଭାବେ ବୁଝିଥିଲେ । ଗୁଇଁବାସା ଜିଲାସ୍କୁଲରେ ଓଡ଼ିଆ ଶିକ୍ଷକ ରହିବା ପରିବର୍ତ୍ତରେ ବଙ୍ଗାଳି ଶିକ୍ଷକ ରହିବାରୁ ସେ ଲାଟ ସଭାରେ ପ୍ରଶ୍ନ କରିଥିଲେ । ତାଙ୍କ ସଂପାଦିତ "ସମାଜ" ଖବର କାଗଜ ଆରମ୍ଭରୁ ସିଂହଭୂମି ଓଡ଼ିଆ ଶିକ୍ଷାବିଷୟ ଆଲୋଚନା କରି ଆସୁଥିଲେ । ଓଡ଼ିଆଜିଲା ସିଂହଭୂମିରେ ଓଡ଼ିଆପିଲାମାନଙ୍କୁ ହିନ୍ଦି ଓ ବଙ୍ଗଳା ଶିକ୍ଷା ଦିଆଯାଇ କିପରି ସେମାନଙ୍କୁ ଓଡ଼ିଶାରୁ ଦୂରରେ ରଖା ଯାଉଅଛି, ଏହା ଦେଖି ସ୍କୁଲରେ ଏବଂ କଚେରୀରେ ଓଡ଼ିଆଭାଷାପ୍ରଚଳନ କରିବାପାଇଁ ସେ ନାନା ବିଭାଗରେ ଯତ୍ନକରିଥିଲେ । କୌଣସି ଆଡ଼ୁ ଆଶାଜନକ ଫଳ ନ ପାଇବାରୁ ନିଜେ ସେ କାର୍ଯ୍ୟରେ ଲାଗି ପଡ଼ିଥିଲେ । ବାରମ୍ବାର ସେ ଓଡ଼ିଶା ବାହାରର ଓଡ଼ିଆଭାଷୀ ଅଂଚଳ ମାନଙ୍କୁ ଯାଇ ଓଡ଼ିଆମାନଙ୍କର ଅବସ୍ଥା ନିଜେ ଦେଖିଥିଲେ । ଓଡ଼ିଆ ଶିକ୍ଷା ପ୍ରଚାର ପାଇଁ ଅର୍ଥାଭାବ ଜାଣି ସେ ସିଂହଭୂମି ଶିକ୍ଷା ପାଣ୍ଠି ବୋଲି ଏକ ପାଣ୍ଠି ସଂଗ୍ରହ କରିଥିଲେ । ନିଜେ

ତହିଁର ସଂପାଦକ ଥାଇ ସମସ୍ତ ଆୟବ୍ୟୟ ଭାର ବୁଝୁଥିଲେ । ସେଠାରେ ଗୋଟିଏ ଓଡ଼ିଆ ଖବର କାଗଜ ପ୍ରକାଶ କରିବାର ଆଶା ରଖିଥିଲେ । କିଛୁଦିନ ପରେ ଉକ୍ତ ସିଂହଭୂମି ଶିକ୍ଷା ପାଣ୍ଠିକୁ ଓଡ଼ିଆ ରକ୍ଷା ପାଣ୍ଠିରେ ପରିଣତ କରି ତହିଁର ପରିପୁଷ୍ଟି ନିମିତ୍ତ ସଯତ୍ନ ଥିଲେ । ଓଡ଼ିଶା ବାହାରେ ଥିବା ଓଡ଼ିଆଭାଷୀ ପ୍ରଦେଶମାନଙ୍କରେ ଓଡ଼ିଆଶକ୍ତି ପ୍ରତ୍ୟେକ ପଲ୍ଲୀରେ ପ୍ରବଳ କରିବା ଲାଗି ଦୃଢ଼ ଏବଂ ସ୍ଥାୟୀ ଉଦ୍ୟମମାନ କରୁଥିଲେ । ଧନ୍ୟ ଗୋପବନ୍ଧୁ ! ଧନ୍ୟ ତୁମ୍ଭର କର୍ମମୟ ଜୀବନ ! ତୁମ୍ଭର ଯତ୍ନରେ ଫୁଲଝର, ଚନ୍ଦ୍ରପୁରର ଗଉନ୍ତିଆ ଏବଂ ପ୍ରଜାମାନେ ଓଡ଼ିଶାସଙ୍ଗେ ମିଶିବାକୁ ଡାକ ଛାଡ଼ିଥିଲେ, ତୁମ୍ଭର ଉଦ୍ୟମରେ ଜୟପୁରର ରାଜା ପ୍ରଜା ସମସ୍ତେ ଜାଗି ଉଠିଥିଲେ, ଗଂଜାମର ପୂର୍ବ ଚେଷ୍ଟା ଏବଂ ତତ୍କାଳର ବିରାମ ନ ଥିଲା, ସିଂହଭୂମିର ଗ୍ରାମେ ଗ୍ରାମେ ଓଡ଼ିଆ ଜାତୀୟ ସଙ୍ଗୀତର ଲହରୀ ଉଠିଥିଲା, ଓଡ଼ିଆ ଗାଉଥିଲା :—

"ଓଡ଼ିଆ ଆମ୍ଭ ମାତୃଭାଷା
ଓଡ଼ିଆ ଆମ୍ଭ ପ୍ରାଣ
ଓଡ଼ିଆ ଦେଶରେ ଜନ୍ମ ଆମ୍ଭର
ଓଡ଼ିଆର କରୁ ତ୍ରାଣ ।
ଆସ ଆସ ଭାଇ ମନ ପ୍ରାଣ ଦେଇ
ରଖିବା ଓଡ଼ିଆ ମାନ
କହିବା ଓଡ଼ିଆ ପଢ଼ିବା ଓଡ଼ିଆ
ଗାଇବା ଓଡ଼ିଆ ଗାନ ।"

ମେଦିନୀପୁରର କୌଣସି କୌଣସି ପଲ୍ଲୀ ପ୍ରାନ୍ତରରେ କ୍ଷୀଣ ତରଙ୍ଗ ଖେଳୁଥିଲା, ଖଡ଼ିଆଳ ମଧ୍ୟପ୍ରଦେଶରେ ରହି ସୁଦ୍ଧା ଦଳେ ହେଲେ ଓଡ଼ିଆ ତ୍ରାଣ

ସ୍ଥିର ନ ଥିଲା । ପ୍ରକୃତରେ ଓଡ଼ିଆମାନଙ୍କ ପ୍ରାଣରେ ଗଭୀର ଏବଂ ଗୁରୁତର ବେଦନା ପ୍ରକଟିତ ହୋଇ ଏ ଆନ୍ଦୋଳନକୁ ପ୍ରଚ୍ଛନ୍ନ କରି ପାରିଥିଲା । ଉତ୍କଳକୁ ସର୍ବତୋଭାବରେ ପୂର୍ଣ୍ଣାଙ୍ଗ ଦେଖିବା ପାଇଁ ତାଙ୍କ ପ୍ରାଣ ଯେଉଁପରି କାନ୍ଦୁଥିଲା, ଉତ୍କଳର ବିଚ୍ଛିନ୍ନାଂଶର ଅଭାବ ସେ ଯେପରି ଉପଲବ୍ଧ କରୁଥିଲେ, ତାହା ତାଙ୍କର ୧୯୧୮ ମସିହା ଉତ୍କଳସଂମିଳନୀର କଟକ ଅଧିବେଶନରେ ଦେଇଥିବା ବକ୍ତୃତାରୁ ଅନୁମିତ ହୁଏ :—

"ସଭାପତି ମହୋଦୟ ଓ ଉପସ୍ଥିତ ସଭ୍ୟଗଣ ! ସମସ୍ତ ଓଡ଼ିଆଭାଷୀ ପ୍ରଦେଶ ଏକ ଶାସନାଧୀନ କରିବା ନିମନ୍ତେ ଏ ଯେଉଁ ନିର୍ଦ୍ଧାରଣ ଆଜି ଆଗତ ହୋଇଅଛି, ଏହା ଆଜି ନୂଆ ନୁହେ । ସମ୍ମିଳନୀର ଆରମ୍ଭରୁ ତେର ବର୍ଷକାଳ ଏହି ଆନ୍ଦୋଳନ ବରାବର ହୋଇ ଆସୁଅଛି । ତେର ବର୍ଷ କାହିଁକି, ତେର ଦୁଇଗୁଣେ ଛବିଶବର୍ଷ, ପ୍ରାୟ ୩୦ବର୍ଷ ହେଲା ଗଂଜାମ ଅଂଚଳରେ ଏହାର ଆନ୍ଦୋଳନ ହୋଇ ଆସୁଅଛି । ଗଂଜାମରେ, ପୁରୀରେ, ସମ୍ବଲପୁରରେ, ସିଂହଭୂମିରେ, ପ୍ରତ୍ୟେକ ଓଡ଼ିଆଭାଷୀ ଅଂଚଳରେ ଏହି ଆନ୍ଦୋଳନର ସୂତ୍ରପାତ ହୋଇଅଛି; ତେବେ ସୁଦ୍ଧା କୌଣସି ଫଳ ହୋଇ ନାହିଁ । କେହିକେହି କହନ୍ତି ଯେ,ଆମର ଏହି ଆନ୍ଦୋଳନରେ ତୀବ୍ରତା ନ ଥିବାରୁ କାର୍ଯ୍ୟ ସଫଳ ହୋଇ ପାରୁ ନାହିଁ । କିନ୍ତୁ ଯେପରି ଆନ୍ଦୋଳନ କରିବାକୁ ହୁଏ, ଆମ୍ଭେମାନେ ସେପରି ତ କରିଛୁ । କଲେକ୍ଟରଠାରୁ ଆରଂଭ କରି କମିଶନର, ସ୍ରେଟଲାଟ, ବଡଲାଟ ପର୍ଯ୍ୟନ୍ତ ଯଥାକ୍ରମେ ଦରଖାସ୍ତ ଆବେଦନ କରି ସାରିଛୁ । ଆଉ କି ତୀବ୍ରତା ଦରକାର, କିଛି ତ ବୁଝି ପାରୁ ନାହିଁ । ମହାଦେବଙ୍କ ଦର୍ଶନ କରିବାକୁ ହେଲେ ବୃଷଭର ପଛଆଡେ 'ହୁଁ' କରିବାକୁ ହୁଏ । (କରତାଳି) । ଆମେ କଲେକ୍ଟର, କମିଶନର, ସ୍ରେଟଲାଟ ସମସ୍ତଙ୍କୁ ସେପରି ବେଳକାଳ ଜାଣି ଆବେଦନ କରିଥିଲେ ମଧ, ମହାଦେବଙ୍କ ଦର୍ଶନ ଘଟି ନାହିଁ । ସେମାନଙ୍କ ପାଖରେ ଜଗନ୍ନାଥଙ୍କ ଭକ୍ତ ଯେପରି "କର ଯୋଡ଼ି ଜଣାଏ ଗରୁଡ଼ ସ୍ତମ୍ଭ ସନ୍ନିଧାନେ—ହେ ମହାପ୍ରଭୁ" କହେ, ଆମ୍ଭେମାନେ ସେହିପରି ସରକାରଙ୍କ ଗରୁଡ ସ୍ତମ୍ଭ କଲେକ୍ଟର ପାଖରେ, କମିଶନର

ପାଖରେ ଟ୍ରେଲିଗ୍ରାମ ନକଟରେ ଜଣାଇ ଆସୁଥିଲୁଁ; କିନ୍ତୁ ମହାପ୍ରଭୁଙ୍କ କର୍ଣ୍ଣଗୋଚର ହୋଇ ନ ଥିଲା । ଏତେବେଳେ ସମ୍ରାଟଙ୍କ ଭାରତ ମନ୍ତ୍ରୀ, ତାଙ୍କୁ ସମ୍ରାଟ ବୋଲି କହିବା, ଭାରତକୁ ବିଜେ କଲେ । ଆମ୍ଭେମାନେ ଭାବିଲୁ,"ଏଥର ଅଳସୁଆ କପାଳକୁ ଗଙ୍ଗା ବିଜେ କଲେ ।" (କରତାଳି) । ସେତେବେଳେ କେତେ ଲୋକ କହିଲେ,ଭାରତରେ ସ୍ୱାୟତ୍ତ ଶାସନ ପାଇଁ ଯେଉଁ ଆନ୍ଦୋଳନ, ଓଡ଼ିଶାରେ ସେପରି ନୁହେଁ । ଓଡ଼ିଶାର ଆନ୍ଦୋଳନ କେତେଜଣ ଟିକାଦିଆ ଚୁଟିକଟା,ଏହି ମଧୁ ବାବୁ,ବ୍ରଜବାବୁ ଆଉ କେତେ ଇଂରାଜୀ ପଢ଼ୁଆ କରୁଛନ୍ତି । ଆଗ୍ରୁ,ସେ ନାଡ଼ ଚପିବା ।(କରତାଳି) । ସରକାରଙ୍କୁ ଦେଖାଇବାକୁ ହେବ ଯେ ଓଡ଼ିଶାର ଅଶିକ୍ଷିତ ପଲ୍ଲୀକୃଷକ ଓ ଇତର ସାଧାରଣ ନୀଚଜାତି ପର୍ଯ୍ୟନ୍ତ ଏହି ମିଳନର ଇଚ୍ଛା କରନ୍ତି । ସେଠାରୁ ନାନାସ୍ଥାନରେ ସାଧାରଣ ସଭା ହେଲା । ପୁରୀରେ ହେଲା, କଟକରେ ହେଲା; ଗଂଜାମରେ, ସଂବଲପୁରରେ, ସିଂହଭୂମିରେ ଏବଂ ଅନ୍ୟାନ୍ୟ ଠାରେ ସଭା ହୋଇ ସରକାରଙ୍କ ଠାରେ ଜଣାଇ ଦିଆଗଲା । କଟକ ସଭାରେ ୫୦୦୦ ସାଧାରଣ ଲୋକ ଏହି ମିଳନର ଅଭିଳାଷ ପ୍ରକାଶ କରିଥିଲେ । (କରତାଳି) । ପୁରୀ ସଭାରେ ୫୦୦୦, ସତ୍ୟବାଦୀରେ ୪୦୦୦,କଲିକତା ସଭାରେ ୭୦୦୦ ଓଡ଼ିଆ ଏକତ୍ର ହୋଇ ଏହି ଆନ୍ଦୋଳନ ସପକ୍ଷରେ ମତ ଦେଇଥିଲେ ।(କରତାଳି) । କଲିକତା ସଭାରେ ମୁଁ ଅଙ୍ଗୀ କରିଅଛି, ସମସ୍ତେ ଏହି ମିଳନବାଂଛା ଘୋଷଣ କରି ଅଛନ୍ତି । ସଭା ହୋଇ ଟେଲିଗ୍ରାମ ହେଲା । ଏ ମାସ [ ମାର୍ଚ୍ଚ ୧୯୧୮ ] ତା୧୮ ରଖରେ ସତ୍ୟବାଦୀର ଗୋଟିଏ ପଲ୍ଲୀଗ୍ରାମରେ ଗୋଟିଏ ଜାତିଆଣ ସଭା ହୋଇଥିଲା । ସେଠାକୁ ମୁଁ ଯାଇଥିଲି । ସେଠାରେ ଲୋକେ ମୋତେ ପଚାରିଲେ "ହଇ ହେ, ତିନ ମାସ ତଳେ ଏମାରମଠ ଆଗ ଦାଣ୍ଡରେ ଯେଉଁ ବଡ଼ ସଭା ହୋଇ ସରକାରଙ୍କୁ ଟେଲିଗ୍ରାଫ ଦିଆଯାଇଥିଲା ସେ କଥା କଣ ହେଲା ?" ମୁଁ କହିଲି ,ଖବର ହେ ପାଇଛୁ, ଆମ ମନ୍ତ୍ରୀଙ୍କର ଆଉର ପାଟି ଫିଟି ନାହିଁ (କରତାଳି ) । ଏଥିରୁ ସମସ୍ତେ ବୁଝିନେବେ ଯେ, ଏହି ମିଳନ

ଆକାଙ୍କ୍ଷା ତାଙ୍କର କପରେ ଅସ୍ଥିମଜ୍ଜାଗତ ହୋଇ ଅଛି । ଏହା ତ ଲୋକ-ସାଧାରଣଙ୍କ ଅଭିମତ । ସଭାକର ସେ ଅଭିମତ ତାର ଦ୍ୱାରା ଜଣାଇଲୁ, ଏଥିରେ ଯଦି ବିଶ୍ୱାସ ହେଉନାହିଁ ଆଉତ ଉପାୟ ନାହିଁ [ କରତାଳି ] । ମୁଁ ବିଚାରୁଛି, ଗୋଟିଏ ଯଦି ସେପରି ବଡ ଗ୍ରାମଫୋନ ଥାଆନ୍ତା,ଏହି ସମସ୍ତ ଓଡ଼ିଆ ଜାତିର ସ୍ୱର ସେଥିରେ ଏକତ୍ର କରି ମନ୍ତ୍ରୀଙ୍କ କର୍ଣ୍ଣରେ ପହଞ୍ଚାଇ ଦିଅନ୍ତେ ( କରତାଳି ) । ଆଉ ଅଧିକ କଣ କରି ପାରିବା ?

"ଭାଇମାନେ ! ଓଡ଼ିଶା ପ୍ରେମର ରାଜ୍ୟ, ଧର୍ମର ରାଜ୍ୟ, ଭକ୍ତିର ରାଜ୍ୟ । ଏଥିରେ ଆଉ ଅଧିକ ବା ଅନ୍ୟପ୍ରକାର କି ଆନ୍ଦୋଳନ କରିବା, ବୁଝି ଯାଉ ନାହିଁ । ଏହାଠାରୁ ଓଡ଼ିଆ ଆଉ ଅଧିକ କିଛି କରି ନ ପାରେ । ସବୁ ଆନ୍ଦୋଳନ ଶେଷ କରିଛୁଁ । ସବୁଠୁଁ ବଡ଼ ମାଲିକଙ୍କୁ କହି ସାରିଛୁଁ । ଆନ୍ଦୋଳନ ଆଉ କେଉଁ ପର୍ଯ୍ୟନ୍ତ ଯାଇପାରେ ବୁଝିପାରୁ ନାହିଁ । ସରକାର ଯଦି କହନ୍ତେ ଯେ ଏପରି ଆନ୍ଦୋଳନ କର ତାହାହେଲେ ସେ ଲୋଡ଼ିବା ପ୍ରକାରେ ଆନ୍ଦୋଳନ କରନ୍ତେ । ତାଙ୍କ ପାଟି ତ ଫିଟିଲା ନାହିଁ ।( କରତାଳି ) ଏଣିକି ଏକମାତ୍ର ଆନ୍ଦୋଳନ 'ହରିଭରସା' । ଭାଇମାନେ, ମୁଁ ପ୍ରାଣର ସହିତ କହୁଛି, ଏଆଶା ବ୍ୟର୍ଥ ହେବ ନାହିଁ । ମୋର ବିଶ୍ୱାସ ଅଛି, ଏ କୋଟି ଲୋକଙ୍କର ଦୀର୍ଘନିଃଶ୍ୱାସ, ଏ କୋଟି ଲୋକଙ୍କର ସମସ୍ତ ଅଶ୍ରୁବିନ୍ଦୁ ଜମାଟ ହୋଇ ରହିଛି । ଦୁର୍ବଳର ଅନ୍ୟ ବଳ ନାହିଁ, କେବଳ ଦୀର୍ଘନିଃଶ୍ୱାସ, ଆଉ ଭଗବାନଙ୍କ ଉପରେ ବିଶ୍ୱାସ । ହତାଶ ନହୋଇ ଉତ୍ତର ପାଇଁ ସମସ୍ତେ ଚାହିଁ ରହିବା, ଆସ୍ତି ବା ନାସ୍ତି କହି ଦିଅନ୍ତୁ । ଭାରତରେ ରିଫର୍ମ ( Reform ) ହେବ ବୋଲି ଚହଳ ପଡ଼ିଛି, ସମସ୍ତେ କେତେଆଶା ବାନ୍ଧିଛନ୍ତି । ଆମର Reform ହେଉଛି କି Deform ହେଉଛି ଦେଖିବା (କରତାଳି) । ଯଦି ଦେଶମିଶ୍ରଣ ନହୁଏ ତେବେ ଯାହା ହେବାର ତ ହେବ; କେବଳ ମୋ ନିଜ ବିମନ୍ତେ ମୁଁ ଯାହା କରିବାକୁ ଭାବିଛି, ତାହା କହୁଛି ଯେ ଜୀବନ ଥିବା ଯାଏ ସରକାର ସହିତ ମୁଁ ଆଉ କୌଣସି ସମ୍ପର୍କ ରଖିବି ନାହିଁ । ( କରତାଳି ) । ସରକାର କହୁଛନ୍ତି ଯେ, ସେ ଲୋକଙ୍କର ମତ ନେଇ କାର୍ଯ୍ୟ କରନ୍ତି ।

ଶାସନରେ ଅସୁବିଧା ଦୂର କରିବା ପାଇଁ ତାଲୁକାବୋର୍ଡ, ଜିଲ୍ଲାବୋର୍ଡ ଇତ୍ୟାଦିର ସୃଷ୍ଟି ବୋଲି ସେ କହନ୍ତି । ସେ ଯେଉଁ ଲୋକଙ୍କ ମତ ନେଇ କାର୍ଯ୍ୟ କରିବେବୋଲି ତାଙ୍କୁ ନିର୍ବାଚନକରିଅଛନ୍ତି,ତାଙ୍କଠାରେ ଯଦି ବିଶ୍ୱାସ ନ କଲେ,ଆଜି ତାଙ୍କର ସେ ଶୂନ୍ୟମର୍ଯ୍ୟାଦାରେ କି ପ୍ରୟୋଜନ ?(କରତାଳି) ମୁଁ ଆଜି କିଛି କରିପାରିବି ନାହିଁ । କେବଳ ଏହି ଛିନ୍ନମସ୍ତା ମାତୃଭୂମିର ପଦରେ ପ୍ରାଣ ବିସର୍ଜ୍ଜନ କରିବି । ( କରତାଳି ) । ମୋର ମାତୃଭୂମି ଭଗବତୀ ମା ଉତ୍କଳ ! ତୁମ୍ଭର ଛିନ୍ନ ବିଛିନ୍ନାଂଶ ଏକତ୍ରିତ ହେଲେ ସେ ପୂର୍ଣ୍ଣ ସୁନ୍ଦର ମୂର୍ତ୍ତି ଦେଖିବାର ଯେଉଁ ଆକାଂକ୍ଷା ଜୀବନରେ ପୋଷଣ କରିଥିଲି, ତାହା ପୂରଣ ଯଦି ନ ହୁଏ,ତୁମ୍ଭର ସେ ଖଣ୍ଡବିଖଣ୍ଡିତ ଛିନ୍ନହସ୍ତା ବିକଟରୂପ ପୂଜାକରି ଏ ପ୍ରାଣ ବିସର୍ଜ୍ଜନ କରିବି ” ( କରତାଳି ) ।

ଲବଣ ଆମ୍ଭମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଓ ଅତୀବ ପ୍ରୟୋଜନୀୟ ସାମଗ୍ରୀ । ଅନ୍ୟ ସାମଗ୍ରୀର ମୂଲ୍ୟ ବୃଦ୍ଧି ହେଲେ ସହ୍ୟ ହେବ, କିନ୍ତୁ ଆମ୍ଭମାନଙ୍କର ନିତ୍ୟ ପ୍ରୟୋଜନୀୟ ଲବଣର ମହାର୍ଘତା ଧନୀଦରିଦ୍ର ନିର୍ବିଶେଷରେ ସମସ୍ତେ ଅନୁଭବ କରନ୍ତି । ଆମ୍ଭମାନଙ୍କର ଏହି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ନିମନ୍ତେ ସର୍ବଦା ବିଦେଶ ଉପରେ ଆମ୍ଭମାନଙ୍କୁ ନିର୍ଭର କରିବାକୁ ହେଉଅଛି । ଉତ୍କଳରେ ଲବଣ ପୋକ୍ତାନର ଯଥେଷ୍ଟ ସୁବିଧା ଥିଲେ ମଧ୍ୟ ଉତ୍କଳୀୟମାନେ ସେ ଅଭାବରୁ ଅବ୍ୟାହତି ଲଭି ନାହାନ୍ତି । ପୂର୍ବେ ଉତ୍କଳର ବନ୍ଦର ମାନଙ୍କରେ ଲୁଣ ଅମଦାନୀ ଓ ରପ୍ତାନି ହେଉଥିଲା । ସେଥିରେ ଓଡ଼ିଶା ନିଜର ଅଭାବ ପୂରଣ କରିବା ସଙ୍ଗେ ସଙ୍ଗେ ଦେଶ ବିଦେଶକୁ ରପ୍ତାନି କରୁଥିଲା । ଚିଲିକାରେ ଶରକାଳ ଲୁଣ ମରୁଥିଲା । ପାରି-କୁଦ ଅଂଚଳରେ ଲୋକେ ସେଥିରେ ବଂଚୁଥିଲେ ଏବଂ ମହାସୁଖରେ ଥିଲେ । ରେଲ ହେଲା ଦିନୁଁ ଆଜିକୁ ପ୍ରାୟ ୨୫।୨୬ ବର୍ଷ ହେଲା ଚିଲିକାରେ ଲୁଣମରା ବନ୍ଦ ହୋଇଅଛି, ସେହି ଦିନୁଁ ସେଠା ଲୋକଙ୍କର ବିପଦ ଘଟିଅଛି । ପ୍ରତି ଦଶବର୍ଷରେ ଥରେ ଲେଖାଏଁ ଘୋର ଦୁର୍ଭିକ୍ଷ, ଏହାଛଡ଼ା ସବୁବର୍ଷ ଉଣା ଅଧିକେ ସେମାନଙ୍କର ଅନ୍ନ କଷ୍ଟ । ଲୁଣପୋକ୍ତାନ ବିନା ସେଠା

ଲୋକଙ୍କର ଦୁଃଖ ଘୁଞ୍ଚିବ ନାହିଁ । ବାଲେଶ୍ୱର ଜିଲ୍ଲାରେ ଆଗେ ଯେଉଁଠାରେ ଲୁଣ ମରାଯାଉଥିଲା ସେଠା ଅବସ୍ଥା ଚିଲିକା କୂଳ ଅବସ୍ଥା ସଙ୍ଗେ ସମାନ । ବାଲେଶ୍ୱର ନିକଟବର୍ତ୍ତୀ କାନ୍ଥି ସମୁଦ୍ର କୂଳରେ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ଏବେ କେତେବର୍ଷ ହେଲା ଏକ କଂପାନି ଲୁଣ ମାରୁଛନ୍ତି । ସେଠାରେ ଯଦି ଲୁଣ ପୋକ୍ତାନ କାମ ଚଳେ, ତେବେ ବାଲେଶ୍ୱରରେ କି ଚଳିବ ବା କାହିଁକି ? ବାଲେଶ୍ୱରରେ ବୁଝିବାବୋଝି ଖର୍ଚ୍ଚ ମଧ୍ୟ ତେତେ ଅଧିକ ପଡ଼ିବ ନାହିଁ । ଓଡ଼ିଶାର ବର୍ତ୍ତମାନ ଲୋକମାନଙ୍କ ଅବସ୍ଥା ଦିନୁଁ ଦିନ ଅଧିକ ଖରାପ ହେଉଅଛି । ଅନ୍ନକଷ୍ଟରେ ଲୋକେ କ୍ରମାଗତ ମରୁଅଛନ୍ତି । ଦେଶରେ ମଜୁରି ନ ପାଇ ସହସ୍ର ସହସ୍ର ଲୋକେ ଘରଦ୍ୱାର ଛାଡ଼ି ଚାଲିଯାଉଛନ୍ତି । ଏହି ଅବସ୍ଥାରେ ଓଡ଼ିଶା ଉପକୂଳରେ ଲୁଣ ପୋକ୍ତାନ ହେଲେ ଶ୍ରମଜୀବୀ ଓ ମଜୁରିଆ ମାନଙ୍କର ବହୁତ ଉପକାର ହୁଅନ୍ତା, ମାତ୍ର ଲୁଣ ପୋକ୍ତାନ କଥା ଦୂରେ ଥାଉ, ସରକାରଙ୍କ ନିୟମ ଅନୁସାରେ ନିମକ ବିଭାଗରେ ଏକ କର ଧାର୍ଯ୍ୟ ହେଲା । ଦେଶବାସୀଙ୍କୁ ଏହି କରଦାୟରୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଲୁପ୍ତ ଲବଣ ବ୍ୟବସାୟର ପୁନରୁଦ୍ଧାର ପାଇଁ ଗୋପବନ୍ଧୁ ବ୍ୟବସ୍ଥାପକ ସଭାରେ ଏକ ପ୍ରସ୍ତାବ ଆଣିଥିଲେ । ସେ ଏ ସମ୍ପର୍କରେ ପ୍ରାକୃତିକ ଓଡ଼ିଶାର ଅନେକ ଅଂଚଳ ବୁଲିଥିଲେ । ଅନେକ ବହିପତ୍ର ଓ ପୁରୁଣା ସରକାରୀ କାଗଜପତ୍ର ପଢ଼ି ଅନେକ ତଥ୍ୟ ଅନୁସନ୍ଧାନ କରିଥିଲେ । ତାଙ୍କର ବିଚକ୍ଷଣ ବାଗ୍ମିତାରେ ସମସ୍ତେ ମୁଗ୍ଧ ହୋଇଥିଲେ । ଏ ସମ୍ପର୍କରେ ସେ ବହୁତ ପ୍ରଭାବ ଜନତାପ ଦେଖାଇଥିଲେ । ସେଥିରେ ତାଙ୍କର ଶକ୍ତି ସାମର୍ଥ୍ୟର ବିଶେଷ ପରିଚୟ ମିଳିଥିଲା । ସମସ୍ତେ ତାଙ୍କର ଶିକ୍ଷା ଗବେଷଣାର ପ୍ରଶଂସା କରିଥିଲେ । ବଡ଼ ବଡ଼ ରାଜକର୍ମଚାରୀମାନେ ଯେଉଁମାନେ ଏହାଙ୍କ ବିରୁଦ୍ଧରେ ଠିଆ ହେଉଥିଲେ, ସେମାନେ ବୁଝୁଥିଲେ ଯେ ଗୋପବନ୍ଧୁଙ୍କ ପ୍ରାଣରେ ବ୍ୟାକୁଳତା ଅଛି, ଏ ଜଣେ ତ୍ୟାଗୀ, ଶିକ୍ଷିତ, ଚିନ୍ତାଶୀଳ, ଶକ୍ତିଶାଳୀ ଓ ସାଧୁ ଦେଶ ସେବକ ।

ତହିଁର ଫଳରେ ସରକାର ବହୁତ ଯତ୍ନ କରିବେ ବୋଲି ଆଶା ଦେଇଥିଲେ । ସରକାର ତରଫରୁ ଲବଣବିଭାଗର କମିଶନର ଆସି ଚିଲିକାର ପାଣି ଓ ଲୁଣ ପୋଖରୀ ସ୍ଥାନ ଏବଂ ଅନ୍ୟାନ୍ୟ ଆବଶ୍ୟକୀୟ ବିଷୟମାନ ତଦନ୍ତ କରି ଭଲମତ ଦେଇଥିଲେ । ଟାଟା ଏବଂ କଲିବର୍ଣ୍ଣ କମ୍ପାନୀ ଲୁଣ ମାରିବା କଥା ଏକରକମ ସ୍ଥିର ହୋଇଥିଲା । ସେ କଂପାନୀ ତରଫରୁ ଲୋକେ ଆସି ସବୁ ଦେଖି ଶୁଣି ପରୀକ୍ଷା କରି ଯାଇଥିଲେ । ୧୯୧୮ ମସିହା ଡିସେମ୍ବର ମାସରେ ନିଜେ ଲାଟ ସାହେବ ଚିଲିକା ଦେଖିବାକୁ ଆସିଥିଲେ ଏବଂ ବାଲେଶ୍ୱରରେ ସେହି ସମୟରେ ସେ ଯାହା କହିଥିଲେ ସେଥିରୁ ଚିଲିକାରେ ଲୁଣ ମରିବ ବୋଲି ସମସ୍ତେ ବୁଝିଥିଲେ; ମାତ୍ର ସେତେବେଳେ ଇଉରୋପୀୟ ମହାଯୁଦ୍ଧ ବନ୍ଦ ହୋଇଯିବାରୁ ଲିଭରପୁଲ ଲୁଣ ଆସିବାର ବାଟ ଫିଟିଗଲା । ଆଉ ମଧ୍ୟ ଚିଲିକା ଲୁଣ ବୁହା ବୋହିରେ ବେଶି ଖର୍ଚ୍ଚ ପଡ଼ିବା ଫଳରେ ବିଲାତିଲୁଣକୁ ଏହା ହଟାଇ ପାରିବ ନାହିଁ; ଏବଂ ଏଥିରେ ଲାଭ ହେବ ନାହିଁ ବୋଲି କଂପାନୀ ଶେଷକୁ ଏଥିରେ ପ୍ରବର୍ତ୍ତିଲେ ନାହିଁ ; ତେଣୁ ସରକାର ନିଶ୍ଚିନ୍ତ ରହିଲେ ।

ଶିକ୍ଷାବିଭାଗର ନିୟମାନୁସାରେ ବଡ଼ବଡ଼ କୋଠାଘର ପ୍ରସ୍ତୁତ ନ ହେଲେ ଓ ଚୌକି ବେଞ୍ଚ ଆଦି ଉପକରଣର ଅଭାବ ହେଲେ ସ୍କୁଲ ମଂଜୁର ହେବ ନାହିଁ । ମାତ୍ର ଏ ବିଦ୍ୟାଳୟ ମାନ ଆମ୍ଭମାନଙ୍କ ଶିକ୍ଷାପ୍ରତି ପ୍ରଧାନ ଅନ୍ତରାୟ । ବର୍ତ୍ତମାନ ସ୍କୁଲଘର ତିଆରିରେ ବିସ୍ତର ଟଙ୍କା ଖର୍ଚ୍ଚ ହୋଇ ବଡ଼୨ କୋଠାମାନ ତିଆରି ହେଉଅଛି । ମାତ୍ର ସେଗୁଡ଼ିକ ପୂର୍ବକାଳର ଗ୍ରାମପାଠଶାଳା ସଦୃଶ ସ୍ୱାସ୍ଥ୍ୟୋପଯୋଗୀ ନୁହେ । ଆବଦ୍ଧ ଘର ଛାତ୍ର ମାନଙ୍କର ମାନସିକ ଓ ଶାରୀରିକ ସ୍ୱଚ୍ଛନ୍ଦ ବିକାଶରେ ବାଧା ଜନ୍ମାଉ ଅଛି । ଆଜିକାଲିର ଡାକ୍ତର-ମାନେ ଉନ୍ମୁକ୍ତବାୟୁ ଏବଂ ଆଲୋକର ଉପକାରିତା ଯଥେଷ୍ଟ ଭାବରେ ସ୍ୱୀକାର କରନ୍ତି, ଶିକ୍ଷା ବିଭାଗର କର୍ତ୍ତାମାନେ ମଧ୍ୟ ଏ ବିଷୟରେ ବିଶେଷ ଦୃଷ୍ଟି ଦିଅନ୍ତି । ଆମ୍ଭମାନଙ୍କର ଏହି ଗ୍ରୀଷ୍ମପ୍ରଧାନ ଦେଶରେ ଘରେ କାନ୍ଥ ତେତେ

ଲୋଡା ନୁହେ । ଏ ଦେଶରେ ପ୍ରାୟ ପ୍ରତ୍ୟେକ ଗ୍ରାମରେ ସ୍ୱାସ୍ଥ୍ୟପ୍ରଦ ଆମ୍ବ ପଣସର ସୁପ୍ରଶସ୍ତ ସୁନ୍ଦର ଉଦ୍ୟାନ ଅଛି । ସେଠାରେ ସାମାନ୍ୟ ବ୍ୟୟରେ ଖୋଲାସ୍କୁଲ ହୋଇପାରେ ଏବଂ ବର୍ଷାଦିନ ଲାଗି ଗୋଟିଏ ଗୋଲ ଚାଳଘର ହେଲେ ଆବଶ୍ୟକ ମତେ କାର୍ଯ୍ୟ ଚଳିବ । ପୂର୍ବେ ଭାରତର ଶିକ୍ଷା ବୃକ୍ଷ-ମୂଳରେ ଅନୁଷ୍ଠିତ ହେଉଥିଲା । ଭାରତର ବିଦ୍ୟାଳୟମାନ ବିଶାଳ ବନପ୍ରାନ୍ତ-ରରେ, ଉନ୍ମୁକ୍ତ ଆକାଶ ତଳେ ଏବଂ ସ୍ୱଚ୍ଛନ୍ଦ ବାୟୁପ୍ରବାହରେ ଥିଲା । ଆବଦ୍ଧ କୋଠରୀରେ ଛାତ୍ରମାନଙ୍କୁ ଶିକ୍ଷା ଦିଆ ଯାଉ ନ ଥିଲା । ଖୋଲା ଯାଗାରେ ସ୍କୁଲ ହେଉଥିବାରୁ ବର୍ଷା ସମୟରେ ଅଧ୍ୟାପନା ବନ୍ଦ ରହୁଥିଲା । ଏହି ପ୍ରାଚୀନ ଆଶ୍ରମ ବିଧି ଆଜିକାଲିର ସ୍କୁଲମାନଙ୍କରେ ଚଳାଇବା ଲାଗି ଗୋପବନ୍ଧୁ ବ୍ୟବସ୍ଥାପକ ସଭାରେ ଏକ ପ୍ରସ୍ତାବ ଆଣିଥିଲେ । ସୁଖର କଥା ତାହା ସରକାର ଗ୍ରହଣ କରିଥିଲେ । ଏ ସମ୍ପର୍କରେ ସେ ଯେଉଁ ତଥ୍ୟପୂର୍ଣ୍ଣ ବକ୍ତୃତା ଦେଇଥିଲେ, ତାହା ଭାରତର ବଡ ବଡ ମନୀଷୀମାନେ, ଏପରି କି ବିଲାତର ଡାକ୍ତର ଲାନସେଷ୍ଟର ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ପସନ୍ଦ କରିଥିଲେ । ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବନ ବିଦ୍ୟାଳୟରେ ଉନ୍ମୁକ୍ତ ବାୟୁରେ ଶିକ୍ଷା ଦେବା ପ୍ରଥମେ ପରୀକ୍ଷିତ ହୋଇଥିଲା । ଭାରତର ବିଭିନ୍ନ ସ୍ଥାନରେ ତାହାର ବହୁଳ ପ୍ରଶଂସା ହୋଇଥିଲା । ବିହାର ଓଡ଼ିଶାର ଲାଟ ସାର୍ ଏଡୱାର୍ଡ୍ ଗେଟ୍ ସତ୍ୟବାଦୀ ଇସ୍କୁଲ ପରିଦର୍ଶନ କରି ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଲେଖିଛନ୍ତି :—

"I was also greatly impressed by the system of teaching in the open-air instead of the crowded class rooms. It is to be hoped that the boys will thus learn to appreciate the advantages of fresh air and will do their best to discourage amongst their relatives the pernicious practice of shutting out air from their houses which is at present so

common and which in many parts is causing a terrible spread of tubercular diseases."

ଗୋପବନ୍ଧୁଙ୍କର କାଉନ୍‌ସିଲ କାର୍ଯ୍ୟକାଳରେ ବିବିଧ ପ୍ରଶ୍ନ ଓ ପ୍ରସ୍ତାବମାନଙ୍କ ମଧ୍ୟରେ କଟକ ରେଭେନସା କଲେଜରେ ଏମ୍,ଏ,ଓ ବି, ଏଲ୍, କ୍ଲାସ ସ୍ଥାପନ ଏବଂ କଟକରେ ଇଞ୍ଜିନିଅରିଂ ସ୍କୁଲ ପ୍ରତିଷ୍ଠା, ଓଡ଼ିଶାର ସ୍କୁଲ-ମାନଙ୍କରେ ଶତକଡ଼ା ୧୦ ଫ୍ରି ଷ୍ଟୁଡେଣ୍ଟସିପ୍ ବୃଦ୍ଧି, ପୁରୀର ସଂସ୍କୃତ କଲେଜ ସ୍ଥାପନ, ଓଡ଼ିଶାର ବନ୍ୟାଅଂଚଳମାନଙ୍କର ପରିମାଣ ନିର୍ଦ୍ଦେଶ କରି ତାହାର ପ୍ରତୀକାର ବିଧାନ ଆଦି କାର୍ଯ୍ୟମାନ ଅନ୍ୟତମ । ବିଲାତରେ ଆଇ, ସି, ଏସ୍, ପଢିବା ପାଇଁ ସରକାର ଓଡ଼ିଆ ମାନଙ୍କୁ ଆଗେ ମନୋନୀତ କରୁ ନ ଥିଲେ । ଗୋପବନ୍ଧୁଙ୍କ ପ୍ରତିବାଦରେ ଓଡ଼ିଶାରୁ ଜଣେ ଲେଖାଏଁ ଯିବାର ବନ୍ଦୋବସ୍ତ ହୋଇଥିଲା । କାଉନ୍‌ସିଲରେ ଦେଶସେବା କରି ଏହିପରି ଗୃହବର୍ଗ ଅତି ସୁଖ୍ୟାତିର ସହିତ ସେ କାର୍ଯ୍ୟ କରିଥିଲେ । ଦେଶ ବିଷୟରେ ନିର୍ଭୀକଭାବରେ ଇଂରାଜୀ ଓ ଓଡ଼ିଆ ଖବର କାଗଜ ମାନଙ୍କରେ ଲେଖୁଥିଲେ ଓ କାଉନ୍‌ସିଲ ହଲରେ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଲେ ସୁଦ୍ଧା ସାହସର ସହିତ ବକ୍ତୃତା ଦେଉଥିଲେ । ସରକାର କାର୍ଯ୍ୟର ତୀବ୍ର ସମାଲୋଚନା କରୁଥିଲେ, ସେ କାଉନ୍‌ସିଲର ପ୍ରତ୍ୟେକ ବୈଠକରେ ଯୋଗ ଦେଉଥିଲେ । ସେ ସବୁବେଳେ ଲୋକଙ୍କ ପକ୍ଷ ସମର୍ଥନ କରି ଲଢୁଥିଲେ । ତାଙ୍କ ଯତ୍ନରେ ସରକାର ଘରେ ଓଡ଼ିଆଙ୍କର ଦାବୀ ଚିହ୍ନିତ ହୋଇ ଥିଲା । ଦେଶର ସବୁ ସ୍ତରର ଲୋକେ ତାଙ୍କୁ ଆଦର କରୁଥିଲେ । ବିହାର ଓଡ଼ିଶାର ଲାଟ୍ ଗେଟ୍ ସାହେବ ପ୍ରକୃତରେ ଏହାଙ୍କର ସହୃଦୟତା, ଦେଶ ହିତୈଷିତା, ଗୁଣରେ ମୁଗ୍‌ଧ ହୋଇ ଏହାଙ୍କ କାର୍ଯ୍ୟରେ ସହାୟତା କରୁଥିଲେ । ଗୋପବନ୍ଧୁ ଯଥାର୍ଥରେ ପରୋପକାରୀ ଥିଲେ;ତେଣୁ ପ୍ରଦେଶର ଆପାମର ଜନସାଧାରଣ ତାଙ୍କୁ ଦେବତା ପରି ଭକ୍ତି କରୁଥିଲେ ।

## ୧୧

ସନ ୧୯ ୧୯ ମସିହା ଅପ୍ରେଲ ମାସରେ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ କଟକଠାରେ ଗୋପବନ୍ଧୁ ସଭାପତିର ଆସନ ଅଳଂକୃତ କରିଥିଲେ । ଉକ୍ତ ସମ୍ମିଳନୀ ମଣ୍ଡପରେ ପାଞ୍ଚହଜାରରୁ ବେଶି ଲୋକ ଉପସ୍ଥିତ ଥିଲେ । ଗୋପବନ୍ଧୁ ସେଠାରେ ଏକ ଦୀର୍ଘ ବକ୍ତୃତା ପାଠ କରିଥିଲେ । ସମସ୍ତ ଲୋକେ ନୀରବ ନିଶ୍ଚଳ ହୋଇ ଗୋପବନ୍ଧୁଙ୍କର ବକ୍ତୃତା ଯେପରି ଶୁଣୁଥିଲେ ସେଥିରୁ ଉତ୍ତମରୂପେ ଜଣାପଡୁଥିଲା ଯେ,ସେମାନଙ୍କର ତାଙ୍କ ପ୍ରତି କି ଭକ୍ତି ଓ ଶ୍ରଦ୍ଧା ଥିଲା । ବାସ୍ତବିକ୍ ଏପରି ବକ୍ତୃତା ଉତ୍କଳ ସମ୍ମିଳନୀର ସଭାପତି ଆସନରୁ ଗତ ୧୩ ବର୍ଷ ମଧ୍ୟରେ କେହି ଶୁଣି ନ ଥିଲେ । ତାଙ୍କୁ ସଭାପତି ଆସନରେ ବସାଇବା ପୂର୍ବରୁ ପ୍ରସ୍ତାବକ ଓ ଅନୁମୋଦକମାନେ କହିଥିଲେ, ଗୋପବନ୍ଧୁ ଉତ୍କଳର ବର ପୁତ୍ର ଓ କୃତି ସନ୍ତାନ । ତ୍ୟାଗୀ କର୍ମବୀରଙ୍କ ଦ୍ୱାରା ଭାରତରେ ସର୍ବପ୍ରକାର ସଦନୁଷ୍ଠାନ ହୋଇଥାଏ । ଦେଶର ଦୁଃଖ ସେହିମାନେ ଦୂର କରି ପାରନ୍ତି । ଭାରତରେ ମହାତ୍ମା ଗାନ୍ଧୀଙ୍କ ସଦୃଶ ଉତ୍କଳରେ ଗୋପବନ୍ଧୁ । ସେହି କର୍ମବୀର, ନିସ୍ୱାର୍ଥ, ସ୍ୱଦେଶପ୍ରେମିକ ଗୋପବନ୍ଧୁଙ୍କୁ ସଭାପତିରୂପେ ପାଇ ଆଜ ଆମ୍ଭେମାନେ କୃତାର୍ଥ ହୋଇଅଛୁ । ଗୋପବନ୍ଧୁ ସମଗ୍ର ଉତ୍କଳ ଜାତିର ସମ୍ମିଳନ ବେଦୀରେ ପୁରୋଧା ଥାଇ ଉତ୍କଳର ସକଳ ବର୍ଣ୍ଣର ଲୋକଙ୍କ କର୍ଣ୍ଣରେ ଯେ ମନ୍ତ୍ର ଦେଇଯାଇଅଛନ୍ତି,ତାହା ବେଦୋକ୍ତ ମନ୍ତ୍ର ସଦୃଶ ଓଡ଼ିଆ ଜାତିର ହୃଦୟପଟେ ଚିରକାଳ ଜାଗ୍ରତ ଥିବ । ସେ ସନ୍ନ୍ୟାସୀଙ୍କ ମୁଖନିଃସୃତ ବାଣୀ ଯୁଗେ ଯୁଗେ ଓଡ଼ିଆପ୍ରାଣକୁ ଉଦ୍‌ଜୀବିତ ରଖିଥିବ ଏବଂ ଓଡ଼ିଆର ଭବିଷ୍ୟତ ବଂଶଧର ଓଡ଼ିଶାର ପୂର୍ବଇତିହାସ ଅନୁସନ୍ଧାନ କଲାବେଳେ ଓଡ଼ିଆ ଜାତିର ମୁକୁଟ ମଣି, ଉତ୍କଳର ବନ୍ଧୁ ଗୋପବନ୍ଧୁଙ୍କ ନାମ ଆଗେ ବାଛୁଥିବେ ।

ସେ କହିଥିଲେ, ସମଗ୍ର ଓଡ଼ିଆ ଜାତିର ଏହି ସଂମିଳନୀ । ଆଜ ଯେ କେତେଜଣ ଏଠାରେ ଉପସ୍ଥିତ ଅଛନ୍ତି ବା ଉପସ୍ଥିତ ନ ଥାଇ ସହାନୁଭୂତି

ପକ୍ଷ ଲେଖିଅଛନ୍ତି ସଂମିଳନୀ ସେମାନଙ୍କର ନୁହେ ବା ବର୍ତ୍ତମାନ ଜୀବିତ ଥିବା ଓଡ଼ିଆ ଜାତିର ଆବାଳ ବୃଦ୍ଧ ବନିତାଙ୍କର ଏ ସଂମିଳନୀ ନୁହେ। ଅଦ୍ୟାପି ଯେଉଁମାନେ ଜନ୍ମ ହୋଇ ନାହାନ୍ତି,ଯେଉଁମାନେ ଭବିଷ୍ୟତରେ ଜନ୍ମଗ୍ରହଣ କରିବେ ସେମାନଙ୍କର ଏଥିରେ ଦାବୀ ଅଛି। ଉତ୍କଳ ଓ ଓଡ଼ିଆ ମଧ୍ୟରେ ଯଥାର୍ଥରେ କୌଣସି ପାର୍ଥକ୍ୟ ନାହିଁ କିମ୍ବା ରହିବା ଉଚିତ ନୁହେ ବୋଲି ସେ ବ୍ୟକ୍ତ କରିଥିଲେ। ବଙ୍ଗଳାର ହୁଅନ୍ତୁ ବା ପଞ୍ଜାବର ହୁଅନ୍ତୁ, ମାରବାରର ହୁଅନ୍ତୁ ବା ମାନ୍ଦ୍ରାଜର ହୁଅନ୍ତୁ, ହିନ୍ଦୁ ହୁଅନ୍ତୁ ବା ମୁସଲମାନ ହୁଅନ୍ତୁ, ଆର୍ଯ୍ୟ ହୁଅନ୍ତୁ ବା ଆଦିମ ଅଧିବାସୀ ହୁଅନ୍ତୁ ଯେ ଉତ୍କଳ ବା ଓଡ଼ିଶା ସଂଗେ ଆପଣାର ସମସ୍ତ ସ୍ୱତ୍ୱ ଓ ସ୍ୱାର୍ଥ ମିଳାଇ ଦେଇ ଅଛନ୍ତି ଓଡ଼ିଶା ତାଙ୍କର ଏବଂ ସେ ଓଡ଼ିଶାର। ପ୍ରାକୃତିକ ଓଡ଼ିଶାରେ ଯେଉଁ ବିଭିନ୍ନ ଶ୍ରେଣୀ ସଂପ୍ରଦାୟର ଲୋକେ ବାସ କରି ଏହାକୁ ନିଜ ଦେଶ ବୋଲି ଗ୍ରହଣ କରି-ଅଛନ୍ତି ସେ ସମସ୍ତଙ୍କର ସଂମିଳନୀରେ ଯେଉଁ ଓଡ଼ିଆ ଜାତି ସଂଗଠିତ, ତାହାର ଜାତୀୟତା ବିକାଶ ସମ୍ମିଳନୀର ଉଦ୍ଦେଶ୍ୟ। ସେ କହିଥିଲେ ସମଗ୍ରଭାରତରେ ଉଦାରମାନବିକତା ଓଡ଼ିଆ ଜାତୀୟତାର ଲକ୍ଷ୍ୟ। ବିଶ୍ୱ-ପ୍ରୀତିହିଁ ଓଡ଼ିଆର ଜାତୀୟତା,ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା। ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥପୂର୍ଣ୍ଣ ନୁହେ, ରାଜ୍ୟଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେ, ଗଭୀର ଧର୍ମଭାବ ଏବଂ ଦୃଢ଼ବିଶ୍ୱାସ ଏହାର ଭିତ୍ତି; ସାମ୍ୟ, ମୈତ୍ରୀ, ସ୍ୱାଧୀନତା ଏହାର ବିଗ୍ରହ। ଉତ୍କଳଭୂମି ସଂକୀର୍ଣ୍ଣ ଭୂମି ନୁହେ। ଓଡ଼ିଶାର ନଦୀ ମହାନଦୀ, ସମୁଦ୍ର ମହୋ-ଦଧି,ଗିରି ମହେନ୍ଦ୍ର, ବୃକ୍ଷ କଳ୍ପବଟ ଏବଂ ଓଡ଼ିଶାର ନାଥ ଜଗନ୍ନାଥ, ଓଡ଼ିଶାର ଶ୍ମଶାନ—ସ୍ୱର୍ଗଦ୍ୱାର। ଓଡ଼ିଆପ୍ରାଣ ଯେଁମହାଭାବ କଳ୍ପନା କରିଅଛି ଚତୁର୍ବର୍ଗରେ ତାହାହିଁ ଦେଖିବାକୁ ପ୍ରୟାସୀ ହୋଇଅଛି। ସେ କହିଥିଲେ,ଓଡ଼ିଆ ଜାତିର ଏହି ସଂମିଳନୀ ସମଗ୍ର ଭାରତୀୟ ଆନ୍ଦୋଳନ ସଙ୍ଗେ ସଂପର୍କ ରଖିବା ଉଚିତ। ଜାତୀୟ ସ୍ୱାତନ୍ତ୍ର୍ୟ ରଖିବାକୁ ହେଲେ ଜାତିର ମୂଳ—ଜାତିର ଜନ ସାଧାରଣ ଠିକ୍ ରଖିବାକୁ ହେବ। ଏହା ମାଟିତଳେ—ପଲ୍ଲୀଗ୍ରାମରେ ଲୁଚି ରହିଛି ସତ, ମାତ୍ର ଏହାହିଁ ମୂଳଶକ୍ତି, ଏହାହିଁ ଜାତୀୟ ମନ୍ଦିରର ଭିତ୍ତି। ଜାତୀୟ ଆନ୍ଦୋଳନରେ ବଡ଼ସାନ ଭେଦ ରଖି ନାହିଁ ବୋଲି ସେ କହିଥିଲେ।

ଜାତୀୟ କାର୍ଯ୍ୟରେ 'ମାହାର ମହାରାଜ' ମଧ୍ୟରେ ଭେଦ ନାହିଁ । ମୂଳଭିତ୍ତି ସୁଦୃଢ଼ କରିବା ଲାଗି, ଜନସାଧାରଣଙ୍କର ଅବସ୍ଥା ପରିବର୍ତ୍ତିତ ହେବାଲାଗି କୃଷି, ଶିଳ୍ପ, ବାଣିଜ୍ୟ, ସାହିତ୍ୟ ଶିକ୍ଷା ଆଦି ସକଳ ବିଷୟରେ ଉନ୍ନତି ହେବା ନିତାନ୍ତ ଆବଶ୍ୟକ । ଜାତୀୟ ହୃଦୟରେ ଭାବ ପରିବର୍ତ୍ତନର ଉପାୟ ଶିକ୍ଷା । ଏହା କେବଳ ସ୍କୁଲ କଲେଜର ଶିକ୍ଷା ନୁହେ, ଜାତୀୟ ଶିକ୍ଷା । ଜାତିର ସମସ୍ତ ପ୍ରାଚୀନ ଅନୁଷ୍ଠାନମାନଙ୍କରେ ଓ ଧର୍ମ କର୍ମର ନାନା କେନ୍ଦ୍ର ମାନଙ୍କରେ ସବୁ ସୂତ୍ରରେ ଜାତୀୟ ଶିକ୍ଷା ପ୍ରଚାର କରି ଯାଇପାରେ ବୋଲି ସେ ଦେଶବାସୀଙ୍କୁ କହିଥିଲେ । ଶିକ୍ଷା, ଶିଳ୍ପ, ବାଣିଜ୍ୟ ପ୍ରଭୃତି ଦିଗରେ ଭାରତୀୟମାନେ ଉନ୍ନତି ଶକ୍ତି ଲାଭକଲେ ପୂର୍ଣ୍ଣାଙ୍ଗ ସ୍ୱାୟତ୍ତ ଶାସନର ଉପ- ଯୋଗୀ ହେବେ । ଜନସାଧାରଣ ଏ ପର୍ଯ୍ୟନ୍ତ ଶାସନ ସମ୍ପର୍କରେ ଆଦୌ ଆସି ନ ଥିବାରୁ ନିକଟରେ ଯେ ଶାସନସଂସ୍କାର ହେବ ତାହା ମଧ୍ୟ ସେମାନଙ୍କ ପ୍ରତି ଏକ ଶିକ୍ଷାର କ୍ଷେତ୍ର । ଏହି ଶାସନ ସଂସ୍କାରର ଉଦ୍ଦେଶ୍ୟ ସଫଳ କରିବା ଲାଗି ଲୋକମାନେ ଶିକ୍ଷିତ ହେବା ଦରକାର । ଓଡ଼ିଶାରେ ଲୋକ ସାଧାରଣଙ୍କ ପକ୍ଷରୁ ସ୍ଥାନେ ସ୍ଥାନେ ଯେ ଶିକ୍ଷାର ଉଦ୍ୟମ ହେଉଅଛି, ସେ ସବୁ ଏକ ସ୍ଥାୟୀ ସଂଗଠନ ଏବଂ ସୁପରିଚାଳିତ ସଂଘ ଅଧୀନରେ ରହିଲେ ଅଧିକ ଫଳ ଲାଭର ଆଶା । ନିଷ୍ଠା ଏବଂ ଦୃଢ଼ତାର ସହିତ କାର୍ଯ୍ୟ ହେଲେ କାର୍ଯ୍ୟ ଚଳିବା ଲାଗି ତ୍ୟାଗୀ ଶିକ୍ଷିତ କର୍ମୀଙ୍କର ଅଭାବ ରହିବ ନାହିଁ କମ୍ବା ଅର୍ଥାଭାବ ରହିବ ନାହିଁ ବୋଲି ସେ ଭାବିଥିଲେ । ପଲ୍ଲୀର ଭାଗବତ ଘର ଗୁଡ଼ିକର ସଂସ୍କାରର ଆବଶ୍ୟକତା ଗୋପବନ୍ଧୁ ଉପଲବ୍ଧି କରିଥିଲେ । ସେସବୁ ଜାତୀୟ ଶିକ୍ଷାର କେନ୍ଦ୍ରସ୍ଥଳ ହେବା ଉଚିତ ବୋଲି କହିଥିଲେ । ଭାଗବତ ଘର ଓଡ଼ିଶାର ଗ୍ରାମ୍ୟ ଜୀବନରେ ଏକ ବିଶେଷତ୍ୱ । ଧର୍ମ ନ୍ୟାୟ ଆଦି ଚର୍ଚ୍ଚାର ଉପଯୁକ୍ତ କ୍ଷେତ୍ର । ପଲ୍ଲୀର ପ୍ରତ୍ୟେକ ଭାଗବତ ଘରକୁ ଓଡ଼ିଆ ସାପ୍ତାହିକ ପତ୍ରିକା ଖଣ୍ଡିଏ ଲେଖାଏଁ ଯିବା ଆବଶ୍ୟକ ବୋଲି ମଣିଥିଲେ । ଦେଶରେ ପ୍ରଚାରକମାନେ ବୁଲି ଗ୍ରାମେ ଗ୍ରାମେ ଘରେ ଘରେ ତହିଁର ଉପକାରିତା ବୁଝାଇବା ପ୍ରୟୋଜନ । ସମଗ୍ର ଉତ୍କଳ ସଂମିଳନୀର ଶାଖା ସଂମିଳନୀ ପ୍ରତି ଜିଲାରେ ଓ ପ୍ରତିଗ୍ରାମରେ ରହିବା ଉଚିତ । ଓଡ଼ିଶାର ସମସ୍ତ ପାଟକ ଜାତିର

ଜାତୀଆଣ ସଭା ଏହାର ଅଙ୍ଗୀଭୂତ ହେବା ଆବଶ୍ୟକ ବୋଲି ସୂଚନା ଦେଇଥିଲେ । ଗ୍ରାମେ ଗ୍ରାମେ Co-operative Society ବା ସମବାୟ ସମିତିର ପ୍ରତିଷ୍ଠାକରି ଏହି ପ୍ରତିଷ୍ଠିତ ସମବାୟସମିତିଗୁଡ଼ିକୁ ସଂମିଳନୀର ଅଙ୍ଗୀ-ଭୂତକରିବା ପାଇଁ କହିଥିଲେ । ଏହିପରି ନୂତନ ଓ ପୁରାତନ ଅନୁଷ୍ଠାନ ଗୁଡ଼ିକ ସର୍ବ ପ୍ରଥମେ ସଂମିଳନୀର ଅଙ୍ଗୀଭୂତ କରି ସେମାନଙ୍କ ସାହାଯ୍ୟରେ ଜାତୀୟ ଶିକ୍ଷା ପ୍ରଚାର କରିବାକୁ ହେବ । ସ୍ତ୍ରୀଶିକ୍ଷା ଜାତୀୟ ଶିକ୍ଷାର ଅନ୍ତର୍ଭୁକ୍ତ ନ ହେଲେ ପୂର୍ଣ୍ଣାଙ୍ଗ ନୁହେ । ସ୍ତ୍ରୀମାନେ ଗୃହର ଲକ୍ଷ୍ମୀ, ପାରିବାରିକ ଜୀବନର ଦେବତା, ସେମାନଙ୍କ ଜୀବନରେ ସୀତା ସାବିତ୍ରୀଙ୍କର ଚରିତ୍ର ପ୍ରତିଫଳିତ କରାଇବା ଜାତୀୟ ସ୍ତ୍ରୀଶିକ୍ଷାର ଲକ୍ଷ୍ୟ ହେବା ଉଚିତ । ଜାତୀୟ ଶିକ୍ଷା ଜାତୀୟ ଭାଷାରେ ଦିଆଯିବା ଆବଶ୍ୟକ; ମାତ୍ର ଗଂଜାମ ମେଦିନୀପୁର ଅଂଚଳରେ ଏହାର ବହୁତ ପ୍ରତିବନ୍ଧକ ଅଛି । ଏହାଛଡ଼ା ମାନ୍ଦ୍ରାଜର ଭିଇଜାଗପଟ୍ଟମ, ସିଂହଭୂମି, ରାୟପୁର ଅନ୍ତର୍ଗତ ପଦ୍ମପୁର,ଫୁଲଝର, ଖଡ଼ିଆଳ ପ୍ରଭୃତି ଅଂଚଳରେ ଓଡ଼ିଆମାନେ ହିନ୍ଦି ପଢିବାକୁ ବାଧ୍ୟ । କଚେରୀରେ ଓଡ଼ିଆ ଭାଷାର ନାମ ମାତ୍ର ନାହିଁ । ଏ ଦୁରବସ୍ଥା ନ ଘୁଞ୍ଚିବାଯାଏ ଓଡ଼ିଆର ଜାତୀୟ ଶିକ୍ଷା-ପଥ ପରିଷ୍କୃତ ହେବ ନାହିଁ ଏବଂ ଓଡ଼ିଆ ପ୍ରାଣର ସ୍ୱଚ୍ଛନ୍ଦ ସ୍ୱାଭାବିକ ବିକାଶ ଅସଂଭବ । ସିଂହଭୂମିରେ ଓଡ଼ିଆ ଶିକ୍ଷା ପାଇଁ ଓଡ଼ିଆଶିକ୍ଷାପାଣ୍ଠି ନାମରେ ଏକ ପାଣ୍ଠି ସ୍ଥାପିତ ହୋଇଅଛି । ତାହା ଓଡ଼ିଶାର ବାହାରେ ଯେ ସମସ୍ତ ଓଡ଼ିଆ ଅଂଚଳରେ ହିନ୍ଦି, ବଙ୍ଗଳା ବା ତେଲୁଗୁ ଶିକ୍ଷା ଦିଆ ଯାଉଛି, ସେଠାରେ ଓଡ଼ିଆଭାଷାର ଶିକ୍ଷା ଓ ବ୍ୟବହାର କ୍ରମେ ଯେପରି ବଢ଼ିବ ତାହା ଏହି ଶିକ୍ଷା ପାଣ୍ଠିର ଉଦ୍ଦେଶ୍ୟ ବୋଲି ବୁଝାଇଥିଲେ । ଭାଷା ଲୋପ ପାଇଲେ ଓଡ଼ିଆ ଜାତି ଲୋପ ପାଇବ । ସୁତରାଂ ଭାଷା ଆମ୍ଭମାନଙ୍କ ପକ୍ଷରେ ଜୀବନ ମରଣ ସମସ୍ୟା । ଅବଶ୍ୟ ଭାରତର ସମସ୍ତଙ୍କର ଏକ ସାଧାରଣ ଭାଷା ହେଲେ ପରମସୌଭାଗ୍ୟର ବିଷୟ ହୁଅନ୍ତା;ସେଥିଲାଗି ଓଡ଼ିଆଭାଷା ତ୍ୟାଗ କରିବାକୁ ସେ କୁଣ୍ଠିତ ନୁହନ୍ତି ବୋଲି ପ୍ରକାଶ କରିଥିଲେ । ମାତ୍ର ଯେତେଦିନ ଯାଏ ନ ହୋଇଛି ଓଡ଼ିଆ ସ୍ୱାତନ୍ତ୍ର୍ୟ ଛାଡ଼ିବା ଉଚିତ ନୁହେ; କେବଳ ଭାଷା ବିଷୟରେ

ନୁହେ, ଅନ୍ୟାନ୍ୟ ଅନେକ କ୍ଷେତ୍ରରେ ଇଂରେଜସରକାର ଓଡ଼ିଆମାନଙ୍କପ୍ରତି ଏହିପ୍ରକାର ଅନବଧାନତା ଓ ଉଦାସୀନତା ଦେଖାଇଅଛି । ଓଡ଼ିଆମାନେ ରାଜଭକ୍ତ । ସେମାନେ ସକଳ ବିଷୟରେ ରାଜାଙ୍କର କଥାନୁସାରେ ଚଳନ୍ତି । ବର୍ତ୍ତମାନ ରାଜାଙ୍କର ଅନ୍ୟାୟ ସେମାନେ ବୁଝିଛନ୍ତି । ସେମାନେ ଉତ୍କଳର ଖଣ୍ଡବିଖଣ୍ଡିତ ଅଂଶ ପୂର୍ଣ୍ଣାଙ୍ଗ ଦେଖିବା ପାଇଁ,ଭାଷାର ଉନ୍ନତି ପାଇଁ ସରକାର ପାଖେ ଆବେଦନ ନିବେଦନ କରୁଅଛନ୍ତି । ସରକାର ତାହା ବିଚାର କରନ୍ତୁ ନାହାନ୍ତି,ଓଡ଼ିଆମାନଙ୍କ ଏହି ଦାବୀ ନ୍ୟାୟସଙ୍ଗତ ଏବଂ ଓଡ଼ିଆର ସ୍ୱାତନ୍ତ୍ର୍ୟରକ୍ଷା ନିମନ୍ତେ ଏହା ଆବଶ୍ୟକ ବୋଲିସେ ବୁଝାଇଥିଲେ । ମଣ୍ଟାଗୁ-ଚେମସ୍‌ଫୋର୍ଡ ଶାସନ ସଂସ୍କାରରେ ଓଡ଼ିଆ ଦେଶମିଶ୍ରଣ ସମସ୍ୟାର ସମାଧାନ ହେବାର ଆଶା ଥିଲା । ରିପୋର୍ଟ୍‌ରେ Sub Province ର ସୂଚନା ଦିଆ ଯାଇଥିବା ସତ୍ତ୍ୱେ ତାହାଁର ଆକାର ପ୍ରକାର କିଛି ଜଣା ନଥିଲା । ସେ ସତ୍ୟରେ ଏବଂ ନ୍ୟାୟରେ ଯେପରି ବିଶ୍ୱାସ କରୁଥିଲେ ଓଡ଼ିଆମାନଙ୍କ ଶାସନ ମିଳନରେ ସେହିପରି ବିଶ୍ୱାସ କରୁଥିଲେ । ଶୀଘ୍ର ହେଉ ବା ବିଳମ୍ବରେ ହେଉ ଏହା ଦିନେ ନିଶ୍ଚୟ ହେବ, ଏଥିରେ ତାଙ୍କର ସନ୍ଦେହ ନ ଥିଲା ।

ଏହିପରି ନାନା ବିଷୟରେ ଗମ୍ଭୀର ଆଲୋଚନାମାନ କରି ସେ ତାଙ୍କର ଅଭିଭାଷଣରେ ଦେଶବାସୀଙ୍କୁ ବହୁତ ନୂତନ ଚିନ୍ତା ଓ ନୂତନ ଭାବ ଦେବା ସଙ୍ଗେ ସଙ୍ଗେ ବହୁତ ବିଚାର ମଧ୍ୟ ଦେଇଥିଲେ ଏବଂ ଉପସଂହାରରେ କହିଥିଲେ :—

"ଭାଇମାନେ, ମୁଁ ମୋର ବକ୍ତବ୍ୟ ପ୍ରାୟ ଶେଷ କରଅଛି । ଜାତୀୟ ଜୀବନର ବିଭାଗ ଅନେକ, କାର୍ଯ୍ୟ ଅସୀମ । ସେ ସବୁର ବିସ୍ତୃତ ଆଲୋଚନା ଏଠାରେ ଅସମ୍ଭବ । ପୁଣି ଆମ୍ଭମାନଙ୍କର ବର୍ତ୍ତମାନ ଅବସ୍ଥାରେ ନିଷ୍ପ୍ରୟୋଜନ । ମୂଳନୀତି ଦୃଢ଼ ରଖି ଲକ୍ଷ୍ୟ ସ୍ଥିର କରି କର୍ତ୍ତବ୍ୟ ପଥରେ ଚାଲିଲେ ସେ ସବୁ ଯଥା ସମୟରେ ଏବଂ ଯଥାସ୍ଥାନରେ ଆମ୍ଭମାନଙ୍କ ସାଧନା- ପଥରେ ପ୍ରକାଶ ପାଇବ । ତେଣୁ ମୁଁ ସ୍ଥୂଳରେ କେତୋଟି ମାତ୍ର ବିଷୟର ଅବତାରଣା

କରୁଅଛୁ, ସମିଳନୀର ସ୍ୱରୂପ ନିର୍ଦ୍ଦେଶ କରିବାକୁ ପ୍ରୟାସ କରୁଅଛୁ । ଏକ କଥାରେ ଏହା ଆମ୍ଭମାନଙ୍କର ଜାତୀୟ ଆତ୍ମାର ବିଗହ, ଜାତୀୟ ଆକାଂକ୍ଷାର ବିକାଶ । ଜାତୀୟ ଉନ୍ନତି ଏହାର କାର୍ଯ୍ୟ । ସାମ୍ୟ ମୈତ୍ରୀ ସ୍ୱାଧୀନତା ଏହାର ମନ୍ତ୍ର । ସ୍ୱାର୍ଥତ୍ୟାଗ ଏବଂ ଧର୍ମବିଶ୍ୱାସ ଏହାର ଭିତ୍ତି । ପୂର୍ଣ୍ଣପ୍ରାଣ ମାନବିକତା ଏହାର ଲକ୍ଷ୍ୟ । ଆମ୍ଭମାନଙ୍କର ଜାତୀୟ ପ୍ରବୃତ୍ତି ଏବଂ ଜାତୀୟ ଇତିହାସ ଏହି ବିଗରେ ଅଙ୍ଗୁଳି ନିର୍ଦ୍ଦେଶ କରି କର୍ତ୍ତବ୍ୟ ଦେଖାଇ ଦେଉଅଛୁ । ଏହି ସାଧନା ପଥରେ ଆମ୍ଭମାନଙ୍କର ପ୍ରଥମ କାର୍ଯ୍ୟ—ଶିକ୍ଷା ଓ ସଙ୍ଘ । ନାନାକ୍ଷେତ୍ରରେ ଏବଂ ନାନା ଉପାୟରେ ଶିକ୍ଷାପ୍ରଚାର କରି ଜାତୀୟ ହୃଦୟରେ ନୂତନ ଭାବ ଜଗାଇବାକୁ ହେବ । ସକଳ ପ୍ରକାର ଜାତୀୟ କାର୍ଯ୍ୟ ସମ୍ପାଦନ ନିମନ୍ତେ ସଙ୍ଘ ଗଠନ କରିବାକୁ ହେବ, ଏଥିରେ କେହି ଢିଲାଛଡ଼ା ଦେଇ ରହିଲେ ଚଳିବ ନାହିଁ । ଯେ କୌଣସି କାରଣ ଘଟୁପଛକେ ଏହି ସଂମିଳନୀ ଦୂରରେ ରହିବା ଉତ୍କଳସନ୍ତାନ ମାତ୍ରର ଅକର୍ତ୍ତବ୍ୟ । ଉତ୍କଳମାତା ତାର ପ୍ରତ୍ୟେକସନ୍ତାନଠାରୁ କର୍ତ୍ତବ୍ୟ ଆଶା କରନ୍ତି । କାର୍ଯ୍ୟକ୍ଷେତ୍ରରେ ନାନା ଘଟଣାରେ ମତାନ୍ତର ଘଟି-ପାରେ, ଏମନ୍ତକି ମନାନ୍ତର ଘଟିପାରେ, ତା'ବୋଲି ମାଙ୍କର ଏହି ପୂଜାପୀଠରୁ କେହି ଅନ୍ତର ହେଲେ ଉତ୍କଳମାତାଙ୍କ ପକ୍ଷରେ ଦାରୁଣ କ୍ଷୋଭର ବିଷୟ ହେବ । ତୁମ୍ଭେ ଭୁଲିପାର, କିନ୍ତୁ ମନେ ରଖ ମା' ତୁମ୍ଭଙ୍କୁ ଭୁଲିବେ ନାହିଁ । ନନ୍ଦିଘୋଷରଥ ନିଶ୍ଚୟ ଲକ୍ଷ୍ୟସ୍ଥାନକୁ ଯିବ, ବର୍ଣ୍ଣ ଧର୍ମ ଜାତି ଭେଦ ଭୁଲି ବ୍ୟକ୍ତିଗତ ଅହଂକାର ଅଭିମାନ ପଛକୁ ପକାଇ ଆସ ଭାଇ, ସମସ୍ତେ ରଥ ଦଉଡ଼ି ଟାଣିବା, ପ୍ରାଣପଣେ ।

"ଆମ୍ଭମାନଙ୍କ ସମ୍ମୁଖରେ ଅସଂଖ୍ୟ କାର୍ଯ୍ୟ ରହିଛି । ଜୀବନର ଯେ କୌଣସି କ୍ଷେତ୍ରକୁ ଦେଖିଲେ ତାହା ବିସ୍ତୃତ ପତିତ ପ୍ରାନ୍ତର ହୋଇ ପଡ଼ିଅଛି । ତଇଲି ଶୋଧ କରିବାକୁ ହେବ, ଭୂମି ଚଷିବାକୁ ହେବ, ଖତ ଦେବାକୁ ହେବ ପରେ ମଞ୍ଜି ବୁଣିବାକୁ ହେବ । ଏଥିରେ ପୁଣି କେତେ ବାଧା ବିପତ୍ତି ଅଛି, ସେ ସବୁ ସହିବାକୁ ହେବ । ପ୍ରାଣରେ ଧୈର୍ଯ୍ୟ ଏବଂ ବିଶ୍ୱାସ

ରଖି କ୍ରମାଗତ ଚାଲିବାକୁ ହେବ । ଏଥିରେ ବିଶ୍ରାମ ନାହିଁ, କର୍ମର ବିରାମ ନାହିଁ । ଜାତୀୟ କାର୍ଯ୍ୟ ପଥରେ ସାଧନା ସହଜ ନୁହେ । "ଦୁର୍ଗମପଥ ଏ ଭଜନ—ଭୟେ ଭାଜିଲେ ଯୋଗିଜନ" କିନ୍ତୁ; ଏହା ବୋଲି ଅବିଶ୍ୱାସ, ଅବସାଦ ଏବଂ ନୈରାଶ୍ୟରେ ବିଜଡ଼ିତ ହେବାର ନୁହେ । ଭାଇ, ବହୁଦୂରରେ ଏ ଯେ ନୀଳାଚଳ ଉପରେ ଧ୍ୱଜା ଉଡ଼ୁଛି ତାହାରି ଉପରେ ଲକ୍ଷ୍ୟ ରଖି ଚାଲିବାକୁ ହେବ । ପଥ ଅନେକ ସ୍ଥଳରେ ଦୁର୍ଗମ ଓ ଦୁସ୍ତର ।

"ଗଲେ ପଛେ ଯାଉ ଜୀବ, ଯାହା ହେବ ଦେଖାଯିବ" ଏହି ପଣ କରିବାକୁ ହେବ । ଏହି ଦୁସ୍ତର କର୍ମ ପଥରେ କେତେ କର୍ମୀଙ୍କୁ ଜୀବନ ବଳି ଦେବାକୁ ହେବ । ବ୍ୟକ୍ତି ବିଶେଷର ତ୍ୟାଗରେ ଜାତୀୟ ଶକ୍ତି ପ୍ରତିଷ୍ଠିତ ହେବ । ଏହାହିଁ ଆମ୍ଭମାନଙ୍କର ଆତ୍ମୋନ୍ନତିର ଉପାୟ । ଭୟ ନାହିଁ, ନୈରାଶ୍ୟ ନାହିଁ । ମାଭୈଃ ମାଭୈଃ ନାଦରେ ଉତ୍କଳଜନନୀ ଆମ୍ଭମାନଙ୍କୁ ଆଶୀର୍ବାଦ କରୁଅଛନ୍ତି । ବିଶ୍ୱାସ କର, ଓଡ଼ିଆ ଜାତି ନାନା ବାଧା ବିଘ୍ନ ଅତ୍ୟାଚାର ମଧ୍ୟରେ ଆଜି ଯେ ବର୍ତ୍ତିଅଛି, ଏହା ନିରର୍ଥକ ନୁହେ । ମହାଭାରତର ସମସ୍ୟାରେ ଏହାର ଗୁରୁ କର୍ତ୍ତବ୍ୟ ରହିଅଛି, ଭାରତର ସିଦ୍ଧ ସାଧକ ପ୍ରଚାରକ ମହାପୁରୁଷମାନେ ଏହି ଉତ୍କଳଭୂମିରେ ଯେଉଁ ତତ୍ତ୍ୱ ଅନୁସଂଧାନ କରିଅଛନ୍ତି, ତାହା ଏପର୍ଯ୍ୟନ୍ତ ପୂର୍ଣ୍ଣ ପ୍ରକଟିତ ହୋଇ ନାହିଁ । ଉତ୍କଳସଂତାନ, ବର୍ତ୍ତମାନ ଜୁମ ପ୍ରଚାରର ପାଳି ଆସିଅଛି । ସେବାର ସମୟ ଉପସ୍ଥିତ ହୋଇଅଛି । ଯାଅ ଗ୍ରାମେ ଗ୍ରାମେ, ବୁଲ ଦେଶେ ଦେଶେ, କହ ଲୋକ କାନେ କାନେ, ଉତ୍କଳର ଶୁଭ ସମାଚାର । କେତେ ସାଧୁ ସନ୍ନ୍ୟାସୀଙ୍କୁ ଏହି ପୁଣ୍ୟଭୂମି ଯୁଗେ ଯୁଗେ ଆକର୍ଷଣ କରିଅଛି । ବର୍ତ୍ତମାନ ଏହାର ସଂତାନମାନଙ୍କର ସନ୍ନ୍ୟାସୀ ହେବାର ଯୁଗ ଆସିଅଛି, ପ୍ରୟୋଜନ ହୋଇଅଛି । ସନ୍ନ୍ୟାସୀର ତପସ୍ୟା ଓ ସାଧନା ବିନା ଜଗତରେ କେବେ କୌଣସି ଗୁରୁକାର୍ଯ୍ୟ ସାଧିତ ହୋଇ ନାହିଁ । ସନ୍ନ୍ୟାସୀର ସାଧନାରେହିଁ ଆମ୍ଭମାନଙ୍କ ଜାତିର ମୁକ୍ତି !"

ଗୋପବନ୍ଧୁଙ୍କ ପ୍ରବର୍ତ୍ତିତ "ସତ୍ୟବାଦୀ" ସାହିତ୍ୟ ପଥରେ କେବଳ କେତୋଟି ଶିକ୍ଷିତ ବ୍ୟକ୍ତିଙ୍କ ଛଡ଼ା ଦେଶର ଜନ ସାଧାରଣଙ୍କର କିଛି

ଉପକାର ହେଉ ନ ଥିଲା । ତାଙ୍କର ମନର ଭାବ ଦେଶର ଲୋକମାନଙ୍କ ମଧ୍ୟରେ ସେ ପ୍ରଚାର କରିପାରୁ ନ ଥିଲେ, ଭିନ୍ନ ଭିନ୍ନ ସ୍ଥାନର ଓଡ଼ିଆମାନେ ସେମାନଙ୍କ ଭାଇମାନଙ୍କ ଅବସ୍ଥା ଜାଣି ପାରୁ ନ ଥିଲେ । ଜାତିର ଦୁର୍ଦ୍ଦଶା ରାଜାଙ୍କର ଅଗୋଚର ହେଉଥିଲା । ସ୍ୱାସ୍ଥ୍ୟ, ଶିକ୍ଷା, ସମବାୟ ସମିତି, କୃଷି, ଶିଳ୍ପ, ଗ୍ରାମ୍ୟ ପଞ୍ଚାଏତ ପ୍ରଭୃତି ଶିକ୍ଷଣୀୟ ବିଷୟମାନ ଏବଂ ତହିଁ ସଙ୍ଗେସଙ୍ଗେ ବାହ୍ୟଜଗତର ସଂବାଦମାନ ଲୋକେ ସୁବିଧାରେ ସମ୍ବାଦପତ୍ର ଅଭାବରେ ଜାଣି ପାରୁ ନ ଥିଲେ । ରାଜା ପ୍ରଜାର ସଂବନ୍ଧ, ଶିକ୍ଷିତ ଅଶିକ୍ଷିତର ସଂପର୍କ ଲୋକେ ବୁଝିପାରୁ ନ ଥିଲେ । ମୋଟଉପରେ କହିବାକୁ ଗଲେ, ଉତ୍କଳର ପ୍ରତ୍ୟେକ ଗୃହସ୍ଥକୁ ରାଜନୀତି କ୍ଷେତ୍ରରେ ନିଜ ନିଜର ଦାବୀ ବା ଅଧିକାର ବୁଝାଇବା ପାଇଁ, ଲୋକମାନଙ୍କର ସର୍ବପ୍ରକାର ଭୟ ଭ୍ରାନ୍ତି ଘୁଞ୍ଚାଇବା ପାଇଁ, ଜନସାଧାରଣଙ୍କର ଦୁଃଖ ଦୁର୍ବିପାକ ବିଷୟ ସରକାର ଆଗରେ ଉପସ୍ଥାପିତ କରି ତହିଁର ବିହିତ ପ୍ରତିକାର ପାଇବାପାଇଁ, ସରକାରର ଶାସନ ବିଭାଗରେ ଓଡ଼ିଆର ଦାବୀ ପ୍ରତି ଯେ ଅବଜ୍ଞା ଏବଂ ଅନାଦର ଦେଖା ଦେଉଥିଲା ତହିଁର ତୀବ୍ର ପ୍ରତିବାଦ କରିବା ପାଇଁ, କୂଟ ରାଜନୀତିର ସଂପର୍କରେ ଆସି ଲୋକ-ଚରିତ୍ର କିପରି କଳୁଷିତ ହେଉଥିଲା ତାହା ବିଶଦରୂପେ ବୁଝାଇବା ପାଇଁ ଏବଂ ଉତ୍କଳର ପ୍ରତ୍ୟେକ ପଲ୍ଲୀରେ ଜାତୀୟ ଜୀବନ ଗଠନ ଓ ଜାତୀୟ ଭାବର ଜାଗରଣ ପାଇଁ, ଜାତୀୟ ଶିକ୍ଷା ଓ ସାହିତ୍ୟର ପ୍ରସାର ପାଇଁ, ଦେଶର ନାନା କୁସଂସ୍କାର ଦୂର କରିବା ପାଇଁ ଏବଂ ସର୍ବବିଧ ଉପାୟରେ ଜାତିର ମୁକ୍ତି ବା ଲକ୍ଷ୍ୟ ସାଧନ ପାଇଁ ସେ ଏକ ସୁଲଭ ପତ୍ରିକା ପ୍ରକାଶରେ ଚେଷ୍ଟିତ ଥିଲେ । ମାତ୍ର ଯେତେବେଳେ ସେ ଦରିଦ୍ରପ୍ରାଣ ଦେଖିଲେ, ଉତ୍କଳମାତାର ଅବସ୍ଥା ଶେଷ ହେବାକୁ ବସିଛି, ତାର ସଂତାନମାନଙ୍କର ଶିକ୍ଷା ଓ ସାହସର ଅଭାବ, ଖାଇବାକୁ ପିଇବାକୁ ନ ପାଇ କଙ୍କାଳସାର ହେଉଛନ୍ତି, ଅନ୍ନ କଷ୍ଟରେ କେତେକ ମରୁଛନ୍ତି, କେତେକ ଦେଶ ଛାଡ଼ି ପଳାଉଛନ୍ତି, ଗୋଟିଏ ଗୋଟିଏ ଗ୍ରାମ ଏକାବେଳକେ ଜନଶୂନ୍ୟ, କେବଳ ଭଙ୍ଗା କାନ୍ଥମାନ ଦେଖା ଦେଉଛି, ଏଥିରେ କରପୀଡ଼ା ଛାଡ଼ୁ ନାହିଁ, ଜମିଦାର ମହାଜନମାନଙ୍କ ଦାଉ

ସ୍ଥିର୍ କରି, ଏହାଦ୍ୱାରା ଦୁଃସ୍ଥ ସମୟରେ ଲୋକମାନଙ୍କର ଅଭାବ ଅସୁବିଧା ଦୂର କରିବା ପାଇଁ ଓ ଏହି ନୈରାଶ୍ୟ ମଧ୍ୟରେ ଲୋକସେବା କରି ଉତ୍କଳଖଣ୍ଡରେ ମାନବ ସମାଜକୁ ଜଗାଇବା ଲାଗି ସେ ସନ ୧୯୧୯ ମସିହା ଅକ୍ଟୋବର ମାସ ତା ୪ ରିଖ ବିଜୟା ଦଶମୀ ତିଥିରେ " ସମାଜ" ନାମକ ସାପ୍ତାହିକ ସମ୍ବାଦ ପତ୍ର ପ୍ରୋକ୍ତ ସତ୍ୟବାଦୀ ପ୍ରେସରୁ ପ୍ରକାଶ କରି ନିଜେ 'ତହିଁରେ ସମ୍ପାଦକ ରହିଲେ । ତାଙ୍କର ଲକ୍ଷ୍ୟ ଥିଲା—ଦେଶର ପ୍ରତ୍ୟେକ ଗୃହରେ ଏହା ପ୍ରଚ୍ଚରିତ ହୋଇ ଲୋକଙ୍କୁ ଆଶା ଓ ଉତ୍ସାହ ବାଣୀ ଦେବ । ସେଥିପାଇଁ ସେ ପ୍ରଥମରୁ ତହିଁର ମୂଲ୍ୟ ୦ ୧୬ ମାତ୍ର ରଖିଥିଲେ । କିଛିଦିନ ପ୍ରକାଶିତ ହେବାପରେ ଏହାକୁ ଦୈନିକ ପତ୍ରିକା କରି ଏହାର ମୂଲ୍ୟ କମାଇବେ ବୋଲି ଭାବିଥିଲେ । କିନ୍ତୁ ଗୋପବନ୍ଧୁଙ୍କର ସେ ଆଶା ପୂର୍ଣ୍ଣ ହୋଇପାରି ନାହିଁ । "ସମାଜ" ସେହିଦିନଠାରୁ ସମଗ୍ର ଓଡ଼ିଆ ଜାତିର ମୁଖପତ୍ର ରୂପେ ନାନା ବାଧା ବିଘ୍ନ ସହି ତହିଁର ମର୍ଯ୍ୟାଦା ଆଜଯାଏ ଅକ୍ଷୁଣ୍ଣ ରଖିଅଛି । ଗୋପବନ୍ଧୁ ତହିଁର ପ୍ରତିଷ୍ଠା କରି ଏକନିଷ୍ଠ ଭାବରେ ସମ୍ପାଦକୀୟ କାର୍ଯ୍ୟ ଚଳାଇ ସହଜ ସରଳ ସୁବୋଧ୍ୟ ଓ ସୁନ୍ଦର ଭାଷାରେ ତାହାକୁ ସର୍ବଜନପ୍ରିୟ କରି ପାରିଥିଲେ । ଶେଷ ଦଶାରେ ଶଯ୍ୟାଶାୟୀ ହେବା ପର୍ଯ୍ୟନ୍ତ ସେ 'ସମାଜ' ରେ ଲେଖୁଥିଲେ । ଏହି ପତ୍ରିକାରେ ଗୋପବନ୍ଧୁ ଅତି ନିର୍ଭୀକ ଭାବରେ ଦେଶବାସୀଙ୍କର ଦୁଃଖ ଗୁହାରି ପ୍ରକାଶ କରୁଥିଲେ । ଯଥାର୍ଥରେ ଏହି ପତ୍ରିକାଦ୍ୱାରା ସେ ଓଡ଼ିଶାର ଲୋକମତ ଗଠନ କରିଥିଲେ । ସରକାରର ବିଷ ଦୃଷ୍ଟିରେ ପଡ଼ି ନାନା ନିର୍ଯ୍ୟାତନା ଭୋଗ କରିଥିଲେ ।

୧୬

୧୯୧୯ ମସିହା ପୁରୀ ଦୁର୍ଭିକ୍ଷ ମନେ ପଡ଼ିଲେ ହୃତ୍‌କମ୍ପ ହୁଏ । ୧୯୧୮ ମସିହାରେ ଅନାବୃଷ୍ଟି ଯୋଗେ ଓଡ଼ିଶାର ସମସ୍ତ ଜିଲ୍ଲାରେ ବିଶେଷତଃ ପୁରୀ ସଦର ସବ୍‌ଡିଭିଜନରେ ଫସଲ ଆଦୌ ନ ଥିଲା । ଯୁଦ୍ଧଯୋଗେ

ଅନ୍ୟାନ୍ୟ ଜନ୍ତୁମାନଙ୍କର ଗୁଡ଼ କମି ନ ଥିଲା । ଏଣେ ଧାନ ଚାଉଳର ଦର ବଢ଼ିବାରୁ ଲୋକମାନେ ହରାଣ ହେବାକୁ ଲାଗିଲେ । ଅନେକଠାରେ ମହାଜନମାନେ, ଯେଉଁମାନଙ୍କ ଘରେ ପୁଞ୍ଜେ ଧାନ ଥିଲା, ବିକା କିଣା ବନ୍ଦ କରିଦେଲେ; କ୍ରମେ ଲୋକେ ଖାଇବାକୁ ନ ପାଇ ମଲେ । ଘର ଗୁଡ଼ ପେଟ ବିକଳରେ କଲିକତା ରେଙ୍ଗୁନ ଆସାମ ପଳାଇଲେ । ଯେଉଁମାନେ ଘରେ ରହିଲେ ସେମାନେ କେତେଦିନ କଆକନ୍ଦା ମୂଠିଶାଗକୁ ଭରସା କଲେ । ମାତ୍ର ତହିଁରେ କେତେଦିନ ବା ବଞ୍ଚି ପାରନ୍ତେ ? ଏହିପରି ଅବସ୍ଥା ଦେଖି ସୁଦ୍ଧା ସରକାର ଦୁର୍ଭିକ୍ଷ ଘୋଷଣା କଲେ ନାହିଁ । ଏହା ଦେଖି ଗୋପବନ୍ଧୁ ନିଜେ ଜିଲ୍ଲା ମେଜେଷ୍ଟ୍ରର ସାହେବଙ୍କୁ ବହୁତ ଥର ଜଣାଣ କଲେ; ମାତ୍ର କାହିଁରେ କିଛି ଫଳ ହେଲା ନାହିଁ । ତା ଦେଖି ଗୋପବନ୍ଧୁ ପୁରୀର ସିଂହ-ଦ୍ୱାର ଆଗରେ ଗୋଟିଏ ସାଧାରଣ ସଭା ଆହ୍ୱାନ କରି ଏହି ଦୁର୍ଭିକ୍ଷ ପ୍ରତିକାର ପାଇଁ ନିମ୍ନଲିଖିତ ମର୍ମରେ ପ୍ରସ୍ତାବ ମାନ ସରକାର ନିକଟକୁ ପଠାଇଲେ । ପ୍ରସ୍ତାବ ମାନଙ୍କରେ ଥିଲା—ଡେପୁଟି କଲେକ୍ଟର ମାନେ ଆସି ଧାନ ରଖିଥିବା ଲୋକମାନଙ୍କୁ ପ୍ରବର୍ତ୍ତାଇ ଧାନ ବିକ୍ରି କରାଇବେ ଏବଂ ଜିଲ୍ଲାବୋର୍ଡ ଦୁର୍ଭିକ୍ଷ-ପୀଡ଼ିତ ଅଞ୍ଚଳରେ ଲୋକମାନଙ୍କୁ ମଜୁରି ଯୋଗାଇବା ଲାଗି କାର୍ଯ୍ୟମାନ ଖୋଲିବେ ଏବଂ ଲୋକେ ସୁବିଧାରେ ଧାନ ଚାଉଳ ପାଇବା ପାଇଁ ଗୋଦାମ-ମାନ ସ୍ଥାପନ କରିବେ ଏବଂ ବଡ଼ ବଡ଼ ମହାଜନମାନଙ୍କୁ ଏକତ୍ର କରି ଧାନ ବିକ୍ରି କରିବାପାଇଁ କଲେକ୍ଟରଙ୍କ ଠାକୁ ଏକ ପ୍ରସ୍ତାବ ପଠାଗଲା । ତହିଁର କିଛିଦିନପରେ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା କ୍ରମେ ବଢ଼ିବାରୁ ଏବଂ ଉକ୍ତ ସଭାଦ୍ୱାରା କିଛି ଫଳ ନ ଫଳିବାରୁ ପୁରୀର କେତେକ ଭଦ୍ରବ୍ୟକ୍ତିଙ୍କୁ ନେଇ ପୁରୀରେ ଏକ ସେବା ସମିତି ଗୋପବନ୍ଧୁ ସ୍ଥାପନ କରିଥିଲେ । ଏହି ସେବା ସମିତି ସାହାଯ୍ୟରେ ପୁରୀ ସହରରୁ କେତେକ ଅର୍ଥ ସଂଗ୍ରହ କରି ଲୋକ-ମାନଙ୍କୁ ମୁଠି ସାହାଯ୍ୟ ଦେଲେ । ଅବସ୍ଥାର ପରିବର୍ତ୍ତନ କିଛି ଦେଖା ନ ଯିବାରୁ ପୁନରାୟ ସେ ଜିଲ୍ଲା ମେଜେଷ୍ଟ୍ରରଙ୍କୁ ଅବସ୍ଥା ତଦନ୍ତ ନିମନ୍ତେ ଅନୁ-ରୋଧ କଲେ । ମେଜେଷ୍ଟ୍ରର ସାହେବ ଓ କେତେକ ସରକାରୀ ଓ ବେସରୁ-

କାଣ୍ଠ ବ୍ୟକ୍ତିଙ୍କୁ ନେଇ ଏକ ମନ୍ତ୍ରଣା ସଭା ବସିଲା । ଏହି ସଭାର ଆଲୋଚନା ଫଳରେ ଗୋପବନ୍ଧୁ ଜଗବନ୍ଧୁବାବୁ ଓ ବନମାଳୀବାବୁଙ୍କୁ ସଙ୍ଗରେ ନେଇ ଦୁର୍ଭିକ୍ଷ ଅଞ୍ଚଳ ବୁଲିବାକୁ ଗଲେ । ଦୁର୍ଭିକ୍ଷ ଅଞ୍ଚଳରେ ବୁଲି ଲୋକଙ୍କ ଅବସ୍ଥା ତନ୍ନ-ତନ୍ନ କରି ଦେଖି ମେଜେଷ୍ଟ୍ରରଙ୍କୁ ଜଣାଇଲେ । ତହୁଁ ମେଜେଷ୍ଟ୍ରର ଗୋଟିଏ ଡେପୁଟୀ ପଠାଇ ଧାନ ରଖିଥିବା ଲୋକମାନଙ୍କୁ ବନ୍ଦୀ କରିବା ପାଇଁ ବାଧ କଲେ । ପରେ ଉଲ୍ଲିଖିତ ସେବା ସମିତିର ତତ୍ତ୍ୱାବଧାନରେ ସିଂହଦ୍ୱାରଠାରେ ଗୋଟିଏ ସାଧାରଣ ସଭା ବସିଥିଲା । ମେଜେଷ୍ଟ୍ରର ସାହେବ ତହିଁରେ ସଭା-ପତି ହୋଇଥିଲେ । ତହିଁରେ ଗୋପବନ୍ଧୁ ବାବୁ ପ୍ରକୃତ ଦୁର୍ଭିକ୍ଷ ଅଞ୍ଚଳମାନ ବୁଲି ଯାହା ଦେଖି ଆସିଥିଲେ ତାହା ସେଠାରେ କହିଲେ । ଫଳରେ ସେବା ସମିତିର ସଭ୍ୟସଂଖ୍ୟା ବଢ଼ାଇ ଦିଆଯାଇ ତହିଁର ନାମ Puri District Famine Relief Committee. ପୁରୀ ଜିଲ୍ଲା ଦୁର୍ଭିକ୍ଷ ସାହାଯ୍ୟ ସଭା ରହିଲା । ଜିଲ୍ଲା ମାଜିଷ୍ଟ୍ରେଟ ତହିଁରେ ସଭାପତି ରହିଲେ । ତାଙ୍କଛଡ଼ା ଅନ୍ୟାନ୍ୟମାନେ ବେସରକାରୀ ସଭ୍ୟ ଥିଲେ । ୧୯୨୦ ମସିହା ପର୍ଯ୍ୟନ୍ତ ଟ ୧୫୪୨୭ ( ଙ୍କା ଏହି ସଭା ସଂଗ୍ରହ କରି ଲୋକମାନଙ୍କୁ ମୁଷ୍ଟି ସାହାଯ୍ୟ କରିଥିଲେ ।

ପୁରୀର ସଦର ସବ୍‌ଡିଭିଜନରେ ଏହି କମିଟି ଦ୍ୱାରା ସାତୋଟି କେନ୍ଦ୍ରରେ ମୁଷ୍ଟି ସାହାଯ୍ୟ ଦିଆଯାଉଥିଲା ; ଓଡ଼ିଶାର ଏପରି ଦୁରବସ୍ଥା ଶୁଣି ହିନ୍ଦନାଟ୍ୟ-ପରିଷଦ, ଓଡ଼ିଆ ସମାଜ ଓ କେତେକ ମାଡ଼ବାରୀ ଆସି ସାହାଯ୍ୟ ଦେଇଥିଲେ । ଜିଲ୍ଲା ବୋର୍ଡ଼ ୫ଟି ଗୋଦାମ ସ୍ଥାପନ କରିଥିଲେ । ଅଭାବକୁ ଗ୍ଭହିଁ ଏତକ ଯଥେଷ୍ଟ ନ ଥିଲା । ସମୁଦ୍ରକୁ ଗଙ୍ଗେ ସଣା । ଲୋକଙ୍କର ଦୁଃଖ ବେଳକୁ ବେଳ ବଢ଼ିଲା । ବେସରକାରୀ ସଭ୍ୟମାନେ ସ୍ୱାଧୀନ ଭାବରେ ଅବସ୍ଥା ତଦନ୍ତ କରି ଅନାହାର ମୃତ୍ୟୁ ରିପୋର୍ଟ କଲେ । ପ୍ରଚୁର ଅର୍ଥ ସଂଗୃହୀତ ନ ହେଲେ ଲୋକ-ଙ୍କର ଅଭାବ ମେଣ୍ଟିବ ନାହିଁ ଦେଖାଗଲା । ତହୁଁ ଗୋପବନ୍ଧୁ ପୁରୀ ସିଂହଦ୍ୱାର ଆଗରେ ୧୯ ୧୯ ମସିହା ଜୁନମାସ ତା୧୯ରିଖରେ ଏକ ବିରାଟ ସାଧାରଣ

ସଭାର ଆୟୋଜନ କଲେ । ତହିଁରେ ନିଜେ ସଭାପତି ହୋଇଥିଲେ । ପ୍ରସ୍ତାବ ହେଲା, ପୁରୀର ଗୋପ, କାଲିଅନ୍ତା ଥାନାରେ ଏବଂ ଖୋର୍ଦ୍ଧାର ବାଣପୁରରେ ସରକାର ଦୁର୍ଭିକ୍ଷ ଘୋଷଣା କରନ୍ତୁ ଏବଂ ନିମ୍ନଲିଖିତ ବିଷୟଗୁଡ଼ିକ ସରକାର ନିକଟକୁ ପଠାଯାଇ ଥିଲା ।

୧ —କଟକ ଦରେ ସେର ହିସାବରେ ମହାଜନମାନେ ଧାନ ବିକ୍ରି କରନ୍ତୁ । ଆବଶ୍ୟକ ହେଲେ, ସରକାର ସେମାନଙ୍କଠାରୁ ଧାନ ନେଇ ସାଧାରଣଙ୍କୁ ନିଜେ ବିକ୍ରି କରନ୍ତୁ ।

୨ —ଗ୍ରୁଇନ ଗୋଦାମମାନ ସ୍ଥାପିତ ହେଉ ।

୩ —ଦୁର୍ଭିକ୍ଷାକ୍ରାନ୍ତ ଲୋକମାନଙ୍କୁ ମଜୁରି ଯୋଗାଇବାପାଇଁ ନାନା ସ୍ଥାନରେ କାର୍ଯ୍ୟମାନ ଖୋଲା ଯାଉ ।

୪ —ତଗାବିଋଣ କମ୍ ସୁଧରେ ଆସନ୍ତା ବର୍ଷ ଫସଲ ଆମଦାନି ପର୍ଯ୍ୟନ୍ତ ଦିଆଯାଉ ।

୫ —ଲୋକମାନଙ୍କୁ ମୁଷ୍ଟି ସାହାଯ୍ୟ ଦିଆ ଯାଉ ।

୬ —ପ୍ରତ୍ୟେକ ଦୁର୍ଭିକ୍ଷାକ୍ରାନ୍ତ ସ୍ଥାନରେ କଲେରା ଡ଼ାକ୍ତର ରହନ୍ତୁ ।

୭ —ଆସନ୍ତା ଫସଲ ଆଦାୟ ପର୍ଯ୍ୟନ୍ତ ଖଜଣା ଆଦାୟ ବନ୍ଦ ରଖିବା ପାଇଁ ଜମିଦାର ମାନଙ୍କୁ ଆଦେଶ ଦିଆଯାଉ ।

ଉକ୍ତ ସଭାରେ ସଭାପତି ଥାଇ ନିଜେ ଦୁର୍ଭିକ୍ଷ ଅଂଚଳ ବୁଲି ନିଜ ଆଖିରେ ଲୋକଙ୍କ ଅବସ୍ଥା ଯାହା ଦେଖି ଆସିଥିଲେ, ତାହା ପ୍ରକାଶ କଲେ । ସେ କହିଥିଲେ,“ + + ମୁଁ ଦୁର୍ଭିକ୍ଷ ଅଂଚଳ କଥା ଜାଣି

ମେଜେଷ୍ଟ୍ରର ଯେପରି ବର୍ଣ୍ଣନା କରିଛନ୍ତି ସେପରି ଗୋଟି ଗୋଟିକରି ଏଠାରେ କହିବା ଆବଶ୍ୟକ ନାହିଁ । ମୁଁ ନିଜେ ଅବସ୍ଥା ଦେଖି ଆସିଛି । ଗାଁ ସବୁ ଶ୍ରୀହୀନ ହୋଇ ଗଲାଣି,କେତେକ ଜନଶୂନ୍ୟ ହେଲାଣି, ସୁସ୍ଥ ସବଳକାୟ ଲୋକ ମାନଙ୍କର କଣ୍ଠା ରହିଲାଣି,ବୃଦ୍ଧ ଓ ବାଳକ ମାନଙ୍କର ହାଡ ଦଖଣ୍ଡି କେବଳ ଅଛି । କେଉଁଠାରେ ପିଲାମାନେ ଗଛରୁ ଧାନ ଦୁହିଁ ଖାଉଛନ୍ତି । ବର' ଅଶ୍ୱତ୍ଥ ଫଳ ଲୋକମାନଙ୍କର ଖାଦ୍ୟ ହେଲାଣି । କ୍ଷେତରେ ଶସ୍ୟ ନାହିଁ ସବୁ ପଦା ପଡ଼ିଛି । କେବଳ ଲୋକଙ୍କ ମୃତ୍ୟୁ ସଂଖ୍ୟା କ୍ରମେ ବଢୁଛି । ନଖାଇ ମରୁଛନ୍ତି ବୋଲି କହିବାକୁ କାହାରି ସାହସ ନାହିଁ । * * ଇତ୍ୟାଦି"

୧୯୧୯ ଜନ୍‌ମାସର ଅବସ୍ଥା ବର୍ଷା ପୂର୍ବରୁ ଏହିପରି ଥିଲା । ଏହି ସଭାର ପ୍ରସ୍ତାବମାନ ଓ ସଭାପତି ବକ୍ତୃତା ନକଲ ସରକାରଙ୍କଠାକୁ ପଠାଗଲା; ତହିଁର ଜବାବରେ ସରକାର କହିଲେ,କମିଶନର ଓ ମେଜେଷ୍ଟ୍ରର ସାହେବ-ମାନେ ଦୁର୍ଭିକ୍ଷ ଘୋଷଣା କରିବାପାଇଁ ସରକାରଙ୍କୁ ଲେଖିଲେ ଦୁର୍ଭିକ୍ଷ ଘୋଷଣା କରି ଯାଇପାରେ । ଏହି ଜବାବରେ ହତାଶ ହୋଇ ଗୋପବନ୍ଧୁ ତାଙ୍କର ସହକର୍ମୀମାନଙ୍କ ସହିତ ପୂର୍ବ ପରି ମୁଠି ସାହାଯ୍ୟ ଚଳାଇଲେ । ଜିଲାବୋର୍ଡ ଚଳାଉଥିବା କାର୍ଯ୍ୟ ମାନଙ୍କୁ ମଜୁରି କମ୍ ହେବୁ କେହି ଲୋକ ଗଲେ ନାହିଁ । ଏହିପରି ଅବସ୍ଥାରେ ଲୋକେ ପଡିଛନ୍ତି, ବିପଦ ଉପରେ ପୁଣି ବିପଦ ଆସି ଉପସ୍ଥିତ ।

ପେଟକୁ ପୁଞ୍ଜେ ନ ଖାଇ ଖରି ବର୍ଷାରେ ଲାଗି ପଡ଼ି ଜମି ଚଷି ଫସଲ ଆଶାରେ ବସିଛନ୍ତି । ଜମିରେ ଶ୍ରେଷ୍ଠ ଶ୍ରେଷ୍ଠ ଧାନଗଛ ଦେଖା ଦେଲାଣି । ଏହିପରି ସମୟରେ ଭୟଙ୍କର ବନ୍ୟାରେ ଭାର୍ଗବୀ ଓ କୁଶଭଦ୍ରାର ନଦୀ ବନ୍ଧମାନ ଭାଙ୍ଗିଯାଇ ସମୁଦାୟ ଜିଲାକୁ ଜଳରେ ବୁଡାଇ ରଖିଲା । ବନ୍ଧ ଭାଙ୍ଗିବାର ୧୫ ଦିନପର୍ଯ୍ୟନ୍ତ ଦେଶର ଅବସ୍ଥା ପ୍ରତି ଜିଲା ମେଜେଷ୍ଟ୍ରରଙ୍କ ଦୃଷ୍ଟି ପଡ଼ି ନ ଥିଲା । ଶେଷରେ ବନମାଳୀ ବାବୁ ସେ ସ୍ଥାନକୁ ଯାଇ ଅବସ୍ଥା ତଦନ୍ତ କରି

ଗୋପବନ୍ଧୁଙ୍କ ନିକଟକୁ ଲେଖିଲେ । ଗୋପବନ୍ଧୁ ଚିଠିପାଇ ଜିଲା ମେଜେଷ୍ଟ୍ରରଙ୍କୁ ଜଣାଇଲେ ଏବଂ ହଠାତ୍ ସେ ସ୍ଥାନରେ ଯାଇ ଉପସ୍ଥିତ ହେଲେ । ଜିଲା ମେଜେଷ୍ଟ୍ର ଗୋପବନ୍ଧୁଙ୍କ ପତ୍ରପାଇ ତାଙ୍କ ପଛେ ପଛେ ସେଠାରେ ପହଞ୍ଚିଲେ । ସେତେବେଳର ଅବସ୍ଥା ବଡ଼ ଭୟଙ୍କର । ତିନିସପ୍ତାହ ହେଲା ପାଣି ଚାରିଆଡେ ବୁଡ଼ିରହିଛି । ଚାରିଆଡେ ଶ୍ରେଷ୍ଠଶ୍ରେଷ୍ଠ ଶସ୍ୟ ଉପରେ ପ୍ରାୟ୧୦ ହାତ, ୧୨ହାତ ପାଣି ଜମା ହୋଇ ରହିଛି । କେତେଘରସବୁ ଭାସିଗଲାଣି । ଏ ଗାଁରୁ ସେ ଗାଁକୁ ଯିବା ରାସ୍ତାମାନ ବନ୍ଦ । ଗାଈଗୋରୁ ମନୁଷ୍ୟମାନେ ଅନାହାରରେ ମଲେଣି । କେତେକ ଦଳ ଓ ଶାଗ ଖାଇ ଜୀବନ ଧରିଛନ୍ତି ମାତ୍ର । ଏ ସମସ୍ତ ଅନିବାର୍ଯ୍ୟ ମୃତ୍ୟୁ ଖବର ଶୁଣାଗଲା । ବଢ଼ି କେତେଦିନ ପର୍ଯ୍ୟନ୍ତ ଲାଗିରହିଲା । ଆସ୍ତେ ଆସ୍ତେ ବହୁସଂଖ୍ୟକ ଲୋକ ମଲେ । ନାନା ଖବର କାଗଜରେ ଆଲୋଚନା ଚାଲିଲା; ଗୋପବନ୍ଧୁ ବ୍ୟବସ୍ଥାପକ ସଭାରେ ପ୍ରଶ୍ନ କଲେ । ସରକାର ସେଥିରେ ମାନିଲେ, ପାଞ୍ଚଜଣ ଲୋକ ପହଁରି ନ ଜାଣି ମରିଛନ୍ତି, ମାତ୍ର ଲୋକେ ଅନାହାରରେ ମରିଥିବାର ଜିଲା ମେଜେଷ୍ଟ୍ରର ଜାଣିଛନ୍ତି । ଏହି ସମୟରେ ବେସରକାରୀ ସଭ୍ୟମାନଙ୍କ ଯତ୍ନରେ ଏ ବିପଦରୁ ଲୋକଙ୍କୁ ରକ୍ଷା କରିବା ପାଇଁ କେତେକ ପ୍ରସ୍ତାବ ଚାଲିଲା । କିନ୍ତୁ ଫଳରେ କିଛି ହେଲା ନାହିଁ କେବଳ କେତେ ଖଣ୍ଡ ଡଙ୍ଗା ଲୋକମାନଙ୍କ ସୁବିଧା ପାଇଁ ଯୋଗାଇ ଦିଆଯାଇଥିଲା ।

ବେସରକାରୀ ସଭ୍ୟମାନେ ଯେସବୁ ମୁଠି ସାହାଯ୍ୟ ଦେଉଥିଲେ କ୍ରମେ ସେ ସମସ୍ତ ସାହାଯ୍ୟ ବଢ଼ିବାକୁ ଲାଗିଲା । ବନ୍ୟା ପୀଡ଼ିତ ଅଂଚଳରେ ଏତେ ଲୋକଙ୍କୁ ସାହାଯ୍ୟ ଦେବା ଅସମ୍ଭବ ହୋଇ ପଡ଼ିଲା । ସେତେବେଳେ କାଉନ୍ସିଲର ବୈଠକ ସମୟ । ଗୋପବନ୍ଧୁ କାଉନ୍ସିଲରେ ଏହି ଅବସ୍ଥା ଜଣାଇ ପ୍ରତିକାରର ଆଶା ରଖି ରାଞ୍ଚି ଗମନ କଲେ । ବାଟରେ କମିଶନର ଗ୍ରୀନ୍ ସାହେବଙ୍କ ସଙ୍ଗରେ ଖଡ଼ଗପୁରଠାରେ ଦେଖାହେଲା । ଗୋପବନ୍ଧୁ ତାହାଙ୍କୁ ବନ୍ୟାଅଂଚଳର ଅବସ୍ଥା ବିଷୟ କହିଲେ । ଗ୍ରୀନ୍ ସାହେବ କହିଲେ, ସେ କଟକଠାରେ ଏ ବର୍ଷ ବଢ଼ିର ଅବସ୍ଥା ଦେଖିଅଛନ୍ତି । ସେ ନିଶ୍ଚୟ କରି ଜାଣନ୍ତି ଯେ, ବଢ଼ି ଲୋକଙ୍କର କୌଣସି ପ୍ରକାର କ୍ଷତି କରି ନ ଥିବ ।

ଗୋପବନ୍ଧୁ ନିଜ ଆଖିରେ ଦେଖି ଆସିଥିବା କଥା ସେ ବିଶ୍ୱାସ କଲେ ନାହିଁ । କମିଶନର ସାହେବ ନଦୀବୃଦ୍ଧିର ପରିମାଣ କଟକଠାରେ ଦେଖିଛନ୍ତି । ଗୋପବନ୍ଧୁ ଆଉ କିଛି କହିବାକୁ ଆରମ୍ଭ କରିବାରୁ ସେ ବିରକ୍ତ ହେଲେ । ଗୋପବନ୍ଧୁ ଯାଇ ରାଞ୍ଚି ଠାରେ ଗ୍ରେଟଲାଟଙ୍କ ସହିତ ଘରୋଇ ଭାବରେ ଦେଖା କଲେ । ତାଙ୍କୁ ଏ ବନ୍ୟା ବିପତ୍ପାତ ଖବର ଦେଲେ, ମାତ୍ର କାହିଁ କେତେ ଫଳ ହେଲା ନାହିଁ; ତହୁଁ କାଉନ୍‌ସିଲରେ ପ୍ରଶ୍ନ ଉଠାଇଲେ । ସରକାର ତହିଁର ଜବାବରେ କହିଲେ, ତିନିଗୋଟି ଥାନା କେବଳ (ତାଲଚେରା, ନିମାପଡ଼ା, ଗୋପ) ବନ୍ୟା ଦ୍ୱାରା ଆକ୍ରାନ୍ତ ହୋଇଅଛି । ସେ ଅଂଚଳମାନ କିଛି କ୍ଷତ ହୋଇ ନାହିଁ; ବରଂ ପଟୁ ପଡ଼ି ଜମି ଉର୍ବର ହୋଇଅଛି ।

ବଡ଼ି ହେଲେ ସୁଦ୍ଧା ସରକାରଙ୍କର ନିଦ ଭାଙ୍ଗିଲା ନାହିଁ । ଲୋକମାନେ ଅନାହାରରେ ବେଶି ମଲେ । ଗ୍ରାମମାନ ଜନଶୂନ୍ୟ ହେଲା । ଶସ୍ୟକ୍ଷେତ୍ରରେ ଧାନଗଛର ଚିହ୍ନ ରହିଲା ନାହିଁ, ମାତ୍ର ସରକାର କହିଲେ, ପଟୁ ପଡ଼ି ଉର୍ବର ହେଲା । ଘର ପୋଡି ଗଲା ନା ମଣି ମରିଗଲେ । ଲୋକମାନଙ୍କ ଆଶା ଥିଲା, ରବି ଫସଲ ହେଲେ ଦୁର୍ଦଶା-ଘୁଞ୍ଚି ଯିବ । ମାତ୍ର ନଭେମ୍ବର ମାସରେ ଭୟଙ୍କର ବର୍ଷା ହେବାରୁ ରବି ଫସଲ ହେଲା ନାହିଁ । କ୍ରମେ ବେସରକାରୀ ଲୋକମାନେ ଦେଉଥିବା ସାହାଯ୍ୟ ସରିଗଲା । ମେକେଞ୍ଜିର ସାହେବ ଧାନକଟା ସମସ୍ତ ତୋଲି କହି ଝୁସି ବାସିରେ ରହିଲେ । ସୁତରାଂ ନଭେମ୍ବର ଡିସେମ୍ବର ମାସରେ ଲୋକେ ପୁଣିଆଉ ଅସହାୟ ଅବସ୍ଥାରେ ପଡ଼ିଲେ । ଡିସେମ୍ବର ଶେଷ ସପ୍ତାହରେ ଉତ୍କଳସମ୍ମିଳନୀର ବୈଠକ ପୁରୀଠାରେ ହୋଇଥିଲା । ସେଠାରେ ପୁରୀର ଦୁର୍ଭିକ୍ଷ ନେଇ ଆଲୋଚନା ଚାଲିଲା । ନିମ୍ନଲିଖିତ ପ୍ରସ୍ତାବ ଆଗତ କରି ଗୋପବନ୍ଧୁ ଦୁର୍ଭିକ୍ଷ-ପୀଡ଼ିତ ଲୋକମାନଙ୍କୁ ସମ୍ମିଳନୀ ମଣ୍ଡପରେ ଦେଖାଇ ଗୋଟିଏ ଦୀର୍ଘ ବକ୍ତୃତା ଦେଇଥିଲେ । ସେଥିରେ ସମସ୍ତେ ଲୋକେ ନ କାନ୍ଦି ରହି ପାରି ନ ଥିଲେ । ସେ କହିଥିଲେ, "ଆଜି ନୀଳାଚଳ ଧାମରେ ଉତ୍କଳ ସମ୍ମିଳନୀର ବୈଠକ ।

ମାତୃପୂଜାର ଉତ୍ସବରେ ମାଳାଚଳ ଓଡ଼ିଆର ବୁକୁ କୁଣ୍ଢେ ମୋଟ ହୋଇ ଯାଇଥାଆନ୍ତା, ହୃଦୟରେ ଆନନ୍ଦ ଉଚ୍ଛୁଳି ପଡୁ ଥାଆନ୍ତା । ମାତ୍ର କାହିଁ, ପ୍ରାଣରେ ସେ ଉନ୍ମାଦ କାହାର ନାହିଁ । କାହିଁକି ? ଆମ୍ଭେମାନେ ବରାବର କହୁଁ, ମାଆମଙ୍ଗଳା ପିଲାର ଷଠୀଘର କଅଣ ? ଖାଇବା ବିନା ଯେଉଁଠାରେ ଲୋକେ ସ୍ଥାନେ ପ୍ରାଣତ୍ୟାଗ କରୁଛନ୍ତି, ଶୀତଲୁଗା ଅଭାବରେ ଯେଉଁଠାରେ ଲୋକେ ଫୁଲି ଯାଇ ଅଶେଷ ରୋଗବ୍ୟାଧିରେ ଏତେ ସଢ଼ୁଛନ୍ତି ଏବଂ ଭୋଗି ମରୁଛନ୍ତି, ସେଠାରେ ଆଉ ଆନନ୍ଦ ଉତ୍ସବ କଣ ? ଏ ଅବସ୍ଥାରେ ସମ୍ମିଳନୀ ଯେ ପୁରୀରେ ହେଲା ଏହା ଆଶ୍ଚର୍ଯ୍ୟ । ଭାଇମାନେ, ନାନାସ୍ଥାନରୁ ଆସିଛନ୍ତି, ଦେଖିଯାନ୍ତୁ ପୁରୀର କି ଅବସ୍ଥା ! ପୁରୀ କାଳେ ଅନ୍ନ ଛତ୍ର ଦେଇ କେତେ ଦେଶର ପଥିକ ଯାତ୍ରୀମାନଙ୍କୁ ବଞ୍ଚାଇଛି । କେତେଭାବରେ ରାଜାଦରିଦ୍ରତ୍ୟାଗୀ ଭକ୍ତ ଆସି ଏଠାରେ ଆଶ୍ରୟ ନେଇଛନ୍ତି । ଆହା ! ଆଜି ସେହି ପୁରୀ ଦରିଦ୍ରଗ୍ରସ୍ତ ! ଆଜି ସେହି ପୁରୀର ଅଧିବାସୀମାନେ ହା ଅନ୍ନ ବୋଲି ପ୍ରାଣ ହରାଉଅଛନ୍ତି ! ଓଡ଼ିଶାର ଚତୁର୍ଦ୍ଦିଗରେ ଊଣା ଅଧିକେ ଏହି ଅବସ୍ଥା । ମାତ୍ର ପୁରୀର ଦଶା ସବୁଠାରୁ ବଳେ । ଏହି ଅବସ୍ଥାରେ ପୁରୀବାସୀ କି ଉପଗୃହରେ ମା'ଙ୍କର ପୂଜା କରିବେ, କି ସାମଗ୍ରୀରେ ଭାଇମାନଙ୍କର ସମ୍ବର୍ଦ୍ଧନା କରିବେ ? ମାତୃ ପୂଜା ମଣ୍ଡପରେ ପୁରୀବାସୀର ହୃଦୟରୁ ଉନ୍ମାଦନା ବାଣୀ ବାହାରିବ ନାହିଁ— ଆଜି କେବଳ ବିଳାପ । ଓଡ଼ିଶାର ସର୍ବତ୍ର ଏ ବର୍ଷ ଦାରୁଣ ବିପତ୍ପାତ । ଅଜସ୍ର ମନୁଷ୍ୟ ମରୁଛନ୍ତି, ମାତ୍ର ପୁରୀର ବିପତ୍ପାତ ସର୍ବାପେକ୍ଷା ଅଧିକ । ମାସେ ଧୋଇରେ ଲୋକଙ୍କର ଘର ଭାଙ୍ଗିଗଲା । ଗୋରୁ ଗାଈ ମରିଗଲେ, ମନୁଷ୍ୟ ମଧ୍ଯ ମଲେ । ମରୁଡ଼ିରେ ଦେଶ ଛାରଖାର ହୋଇଗଲା । ଅନେକ ଗାଁ ଏକାବେଳକେ ପଦା ହୋଇ ଯାଇଛି । କେତେ ପରିବାର ଧ୍ୱଂସ ହୋଇଗଲା । କୃଷକ କୁଳର ସର୍ବନାଶ ହେଲା । ବର୍ତ୍ତମାନ ପୁଷମାସ, ଫସଲ ଆମଦାନି ସମୟ । ପୁଷମାସରେ ମୂଲିଆ ହାଣ୍ଡିରେ ପେଜ; ମାତ୍ର ପୁରୀ ଜିଲ୍ଲାର କୌଣସି ଅଂଚଳରେ ଆଜି ଭଲ ଭଲ ଲୋକଙ୍କ ଘରେ ଧଳାବାସି ଝୋଡ଼ାଣି ଟୋପାଏ ଦେଖିବାକୁ ସପନ । ଦେଶର ଜନ ସାଧାରଣଙ୍କ

ଯତ୍ନରେ କିଛି କିଛି ସାହାଯ୍ୟ ଦିଆଯାଉଥିଲା । ଲୋକେ ବଡ଼ ମୁହଁ ବଡ଼ କାନରେ କଲମେକେଷ୍ଟରଙ୍କୁ ସେଥିରେ ନାସ୍ତିକ କଲେ । ସରକାରଙ୍କ ଆଜ୍ଞା କିଛି ମୂଠି ମିଳିଲା । ଫଳରେ ସରକାରୀ କାଇଦାରେ କାମ ଚାଲିଲା । କଲେକ୍ଟର ମେକେଷ୍ଟର ସାଧାରଣ ସଭାର ମାଲିକ ହୋଇ ସାଧାରଣ ଚାନ୍ଦା ବନ୍ଦ କଲେ ସୁଦ୍ଧା ସରକାରଙ୍କ ଦୁର୍ଭିକ୍ଷ ଆଇନ ଧରି ନ ଚାଲିଲେ ତାଙ୍କର ଗତି ନାହିଁ । ଠିକ୍ ସ୍ୱର୍ଗକୁ ଗଲେ ଧାନ କୁଟେ । ସରକାରଙ୍କର ଦୁର୍ଭିକ୍ଷ ଆଇନରେ ଅଛି ଯେ, ଫସଲ ଆମଦାନି ହେଲେ ଆଉ ସାହାଯ୍ୟ ଦିଆଯିବ ନାହିଁ । ଫସଲ ଆମଦାନି ସମସ୍ତ ହେଲା । ଫସଲ ଆମଦାନି ହେଉ ବା ନ ହେଉ ଆଇନରେ ଯେତେବେଳେ ବିଧାନ ଅଛି ଆଉ ଦୁର୍ଭିକ୍ଷ ସାହାଯ୍ୟ ଦିଆଯିବ କିପରି ? ଫଳରେ ଯାହା ମୂଠିଏ ମୁଠିଏ ନାମକୁ ମାତ୍ର ପାଉଥିଲେ ତାହା ଏକାବେଳକେ ଏବେ ମାସେ ହେଲା ବନ୍ଦ ଅଛି । ଏହି କଲମର ଧୋଇଆ ଅଂଚଳରେ ଏବେ ମୂଠି ମଦରଙ୍ଗା ମିଳୁ ନାହିଁ । ଘର ଶୂନ୍ୟ, ବିଲ ଶୂନ୍ୟ, ଦଣ୍ଡଗ ଶୂନ୍ୟ । ଯେଉଁଠାରେ ସକଳ ଶ୍ରେଣୀ ଲୋକଙ୍କୁ ଏପରି ଅନ୍ନକଷ୍ଟ ବାଧୁଛି, ସେଠାରେ ଆନନ୍ଦ ଉତ୍ସବ କଣ ? ଓଡ଼ିଶାରେ କିପରି ଲୋକ ମରୁଛନ୍ତି, ଆମ୍ଭେମାନେ ସରକାରୀ ରିପୋର୍ଟରୁ ତାହା ସମାଜ ସ୍ତମ୍ଭରେ ଏଥି ପୂର୍ବେ ବାରମ୍ବାର ଦେଖାଇ ଆସିଅଛୁ । ଏହି ଅବସ୍ଥାରେ ଲୋକେ ନ ମରିବେ ତ ଆଉ ସେମାନଙ୍କର ଗତି କଣ ? ଆମ୍ଭେମାନେ କହୁଁ, ଦେଶର ସାନବଡ଼ ସବୁ ଲୋକେ ମିଳିଲେ ଗୋଟିଏ ଯେ ବିରାଟ ଶକ୍ତି ହେବ, ତାହାହିଁ ଆମ୍ଭମାନଙ୍କ ଜାତିର ମୁକ୍ତି ବିଧାନ କରିବ । ଓଡ଼ିଶାରେ ଆଉ ସାନବଡ଼ ରହୁଛନ୍ତି କାହିଁ ? ଦେଶର ପ୍ରକୃତ ସାର ଏବଂ ଶକ୍ତି ପ୍ରଜାକୁଳ ତ କ୍ରମେ ଲୋପ ପାଇଲେ । ଆଜ ଆମ୍ଭମାନଙ୍କର ଜାତୀୟ ଉଦ୍ୟମର ଆସ୍ଫାଳନ କାହାପାଇଁ, କେଉଁ ଆଶାରେ ? ବିଲାତରେ ସଂସ୍କାର ଆଇନ ଜାରି ହୋଇଗଲା, ସମ୍ରାଟଙ୍କର ମଂଜୁର ହୋଇଗଲା, ଦେଶର ପ୍ରଜାମାନଙ୍କୁ ରାଜନୈତିକ ଅଧିକାର ମିଳିଗଲା; ମାତ୍ର ଏ ଅଧିକାର ଭୋଗିବାକୁ ଆମ ଦେଶରେ କେତେ ଜଣ ପ୍ରଜା ରହୁଛନ୍ତି ? ଆଜ ମାତୃପୂଜା ମଣ୍ଡପରେ ଏହି·

ପର ନାନା ଦୁଃଖ ଦୁଶ୍ଚିନ୍ତା କାହା ହୃଦୟକୁ ଅଧୀର ଏବଂ ବ୍ୟାକୁଳ ନ କରିବ ? ମା ଉତ୍କଳଭୂମି, ଦିନେ ଯେଉଁ କୃଷି ଓ ଶ୍ରମଜୀବୀମାନେ ସୈନିକ ହୋଇ ଦିଗଦିଗନ୍ତରରେ ତୋହର ବିଜୟ ବାନା ଉଡ଼ାଉଥିଲେ, ଆଜି ସେମାନଙ୍କର ଏହି ଦଶା ! ଅନ୍ନ ବସ୍ତ୍ର ବିନା ଗଣି ଗଣି ମରି ଶ୍ମଶାନରେ ଶିଆଳ କୁକୁରଙ୍କ ମୁଖରେ ପଡ଼ୁ-ଅଛନ୍ତି ! ମା, ତୋର ଛିନ୍ନମସ୍ତା ମୂର୍ତ୍ତି ତ ଚିରପ୍ରସିଦ୍ଧ । ସେଥିରେ ଆଜି ପୁଣି ବିକଟ ନୃମୁଣ୍ଡମାଳିନୀ କଙ୍କାଳିନୀ ଭୀମାବେଶରେ ତୁ ମହାଶ୍ମଶାନରେ ଉଭା ହୋଇଅଛୁ । ତୋର ଏହି ମୂର୍ତ୍ତି ଦେଖି ସହୁ ନାହିଁ, ବୁକୁ ଫାଟି ଯାଉଛି; ଦେଖାଅ ମା ! ତୋର ସେହି ଶ୍ୟାମସୁନ୍ଦର ମଧୁର ମୂର୍ତ୍ତି ! ଆସୁ ଆରାମ, ଆସୁ ଆଶ୍ୱାସନା କରୁଣ ଏ ଶତ ଶତ ଶିଶୁ ପ୍ରାଣେ ।"

ସେ ପ୍ରସ୍ତାବ କରିଥିଲେ (କ) ଓଡ଼ିଶାର ବିଭିନ୍ନ ଅଂଚଳରେ ବିଶେଷତଃ ପୁରୀ ସଦର ସବ୍‌ଡ଼ିଭିଜନରେ ବନ୍ୟା ଓ ଦୁର୍ଭିକ୍ଷଦ୍ୱାରା ଯେ ଭୀଷଣ କ୍ଷତି ଓ ଲୋକକ୍ଷୟ ହୋଇଅଛି, ଲୋକସାଧାରଣଙ୍କ ପକ୍ଷରୁ ନାନାସୂତ୍ରରେ ସରକାରଙ୍କୁ ତାହା ଗୋଚର କରାଯାଇଥିଲେ ମଧ୍ୟ ସେଥିପ୍ରତି ସରକାର ତରଫରୁ କୌଣସି ପ୍ରକାର ପ୍ରତୀକାର ହୋଇ ନ ଥିବା ଆତୁର ଏବଂ ବିପନ୍ନ ପ୍ରଜାମାନଙ୍କ ପ୍ରତି କର୍ତ୍ତବ୍ୟରେ ତ୍ରୁଟି ବୋଲି ଏ ସମିତି ଦୃଢ଼ ଭାବରେ ବ୍ୟକ୍ତ କରୁ ଅଛନ୍ତି ।

(ଖ) ଉକ୍ତ ଅଂଚଳ ମାନଙ୍କରେ ଦୁର୍ଭିକ୍ଷ ସାହାଯ୍ୟ ବିଆଯିବା ଏବଂ ବର୍ତ୍ତମାନ ଅବସ୍ଥା ପରିବର୍ତ୍ତନ ନ ହେବା ଯାଏ ଚଉକିଦାରୀ ଟିକସ ଓ ରାଜସ୍ୱ ଆଦାୟ ରହିତ ଦେବା ନିମନ୍ତେ ଏ ସମିତି ସରକାରଙ୍କୁ ପ୍ରାର୍ଥନା କରୁଅଛନ୍ତି ।

(ଗ) ବନ୍ୟା-ପୀଡ଼ିତ ଲୋକମାନଙ୍କ ଅବସ୍ଥା ଅଦ୍ୟାପି ପୂର୍ବପରି ରହିଅଛି । ପ୍ରକୃତ ଅବସ୍ଥା ଜାଣି ତହିଁର ବିହିତ ପ୍ରତୀକାର ବିଧାନ ନିମନ୍ତେ ସରକାରୀ ଓ ବେସରକାରୀ ସଭ୍ୟମାନଙ୍କ ଦ୍ୱାରା ଗଠିତ ଏକ କମିଟି ଦ୍ୱାରା

ଅନୁସନ୍ଧାନ କରାଯିବା ଉଚିତ ବୋଲି ଏ ସମିତିଣୀ ବିବେଚନା କରନ୍ତି ଏବଂ ଏ ନିମନ୍ତେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଏକ କମିଟି ଗଠନ କରୁଅଛନ୍ତି । ଏହି ଅନୁସନ୍ଧାନ କାର୍ଯ୍ୟ ସମ୍ପାଦନ ନିମନ୍ତେ କର୍ତ୍ତୃପକ୍ଷଙ୍କୁ ଜଣାଇବା ଏବଂ ଅନ୍ୟାନ୍ୟ ପ୍ରୟୋଜନୀୟ ବିହିତ ପନ୍ଥା ଅବଲମ୍ବନ କରିବାର କ୍ଷମତା ତାଙ୍କ ଉପରେ ରହିଲା ।

— ମାନ୍ୟବର ଶ୍ରୀଯୁକ୍ତ ଗୋପବନ୍ଧୁ ଦାଶ

,, ଫଣି ଭୂଷଣ ରଥ

,, ଲକ୍ଷ୍ମୀ ନାରାୟଣ ସାହୁ

,, ବନମାଳୀ ଦାଶ

,, ଜଗବନ୍ଧୁ ସିଂହ

ସମିତିମାର ପ୍ରସ୍ତାବ ଅନୁସାରେ ଉକ୍ତ କମିଟିର ସଭ୍ୟମାନେ ସରକାରୀ କର୍ମଚାରୀ ସେମାନଙ୍କ ସଙ୍ଗେ ମିଶି ଅନୁସନ୍ଧାନ କରିବାପାଇଁ ସରକାରଙ୍କୁ ପ୍ରାର୍ଥନା କରିଥିଲେ, ମାତ୍ର ସରକାର ସେଥିରେ ମାନିଲେ ନାହିଁ । କହିଲେ, ସେପରି ଅନୁସନ୍ଧାନ ଦ୍ୱାରା କିଛି ଲାଭ ନାହିଁ । ତହିଁ ଉକ୍ତ କମିଟିର ସଭ୍ୟ ମାନେ ନାନା ସ୍ଥାନ ବୁଲି ପ୍ରକୃତ ଅବସ୍ଥା ଦେଖିବାକୁ ଲାଗିଲେ । ସଭ୍ୟମାନେ କମିଶନର ସାହେବଙ୍କୁ କେତେକ ସ୍ଥାନ ଦେଖିବା ପାଇଁ ପ୍ରାର୍ଥନା କରିଥିଲେ । କମିଶନର ସେଥିରେ ସ୍ୱୀକୃତ ହୋଇ ଗୋପ, ନିମାପଡା, ପିପିଲି ପ୍ରଭୃତି କେତେକ ସ୍ଥାନ ୩ଘଣ୍ଟା ମଧ୍ୟରେ ଦେଖି ଫେରି ଆସିଲେ; ମାତ୍ର ଅବସ୍ଥା ଶୋଚନୀୟ ହୋଇଥିବା ସ୍ଥାନକୁ ସେ ଯାଇ ନଥିଲେ ଉକ୍ତ ବେସରକାରୀ ସଭ୍ୟମାନେ ତାଙ୍କ ପାଖକୁ ଲେଖିବାରେ ସେ ଜବାବ ଦେଲେ, ଯାହା କରିବାର କଥା ସେ କଲେକ୍ଟରଙ୍କଠାକୁ ଲେଖିଛନ୍ତି ।

ବନମାଳୀବାବୁ କଲେକ୍ଟରଙ୍କୁ ପଚାରିବାରେ ଦୁର୍ଭିକ୍ଷ-ପୀଡ଼ିତ ଲୋକଙ୍କ କଥା କମିଶନର କିଛି କହି ନାହାନ୍ତି ବୋଲି କହିଲେ । ତହୁଁ ବନମାଳୀବାବୁ ଆଉଥରେ କମିଶନରଙ୍କୁ ଲେଖିଲେ; କୌଣସି ଜବାବ ମିଳିଲା ନାହିଁ । କମିଶନର ସାହେବ ସିଧା ରାସ୍ତାରେ ମଟରରେ ଯାଇ ଯେ କେତେ ସ୍ଥାନ ଦେଖିଥିଲେ ତାହା ତାଙ୍କ ଭ୍ରମଣ ରିପୋର୍ଟରେ ଲେଖିଛନ୍ତି ;—

“ * * * *

ଯେଉଁ ମାନେ ଦୁର୍ଭିକ୍ଷ ବୋଲି ଡାକ ପକାଉଛନ୍ତି ସେମାନେ ଫର୍ମିଜମାର ଏକ ଦଳ । ମୁଁ ଯିବାବେଳେ ବାଟରେ ଗୋଟିଏ ଦୁର୍ଭିକ୍ଷାକ୍ରାନ୍ତ ଲୋକ ଦେଖିଲି ନାହିଁ । ପିଲାମାନେ ସୁସ୍ଥ ସବଳ ଥିବାର ଦେଖିଲି । ସ୍ତ୍ରୀ ଓ ବାଳିକାମାନେ ସୁନାଖଡ଼ୁ ଲଗାଇ ଥିବାର ଦେଖିଲି । କୌଣସି ଠାରେ କିଛି ଦରକାର ନାହିଁ । ଯେଉଁମାନଙ୍କୁ ଦୁର୍ଭିକ୍ଷ ଘୋଟିଛି ବୋଲି କହୁଛନ୍ତି ସେମାନେ ଉପାସୀ । ଫର୍ମିଜମାର ଲୋକେ ଯେ ସବୁ ରିପୋର୍ଟ ଦେଉଛନ୍ତି ତାହା ସମସ୍ତ ମିଥ୍ୟା * * * ।”

ବିହାର ଓଡ଼ିଶା ବ୍ୟବସ୍ଥାପକ ସଭା ୧୯୨୦ ମସିହା ମାର୍ଚ୍ଚ ତା ୧୩ରିଖରେ ବସିବାର ଥିଲା । ସେ ବୈଠକରେ ଗୋପବନ୍ଧୁ କେବଳ ଓଡ଼ିଶାରୁ ଉପସ୍ଥିତ ଥିଲେ । ସେ ପ୍ରସ୍ତାବ କରିଥିଲେ କି, ଆଗାମୀ ବର୍ଷ ବଜେଟରେ ଦୁର୍ଭିକ୍ଷ ସାହାଯ୍ୟ ନିମନ୍ତେ ୧୯ହଜାର ଟଙ୍କା ମାତ୍ର ରଖା ଯାଇଅଛି । ତାକୁ ୫୦ ହଜାର କରା ଯାଉ । ଏହି ଟଙ୍କା ୩୧ ହଜାର ପୁଲିଶ ବିଭାଗ ଖରଚରୁ କଟାଯାଉ । ଦୁର୍ଭିକ୍ଷ ସାହାଯ୍ୟ ନିମନ୍ତେ ଯେ ଖର୍ଚ୍ଚ ହୁଏ ପ୍ରାଦେଶିକ ସରକାର ତହିଁର ଚାରିଭାଗରୁ ଏକଭାଗ ଦିଅନ୍ତି । ବାକି ତିନିଭାଗ ଭାରତ ସରକାର ଦିଅନ୍ତି । ଗୋପବନ୍ଧୁଙ୍କ ପ୍ରସ୍ତାବ ଅନୁସାରେ ପ୍ରାଦେଶିକ ବଜେଟରେ ୫୦ ହଜାର ରଖା ଯାଇଥିଲେ ଭାରତ ସରକାର ଆଉ ଲକ୍ଷେ ପଚାଶ ହଜାର ଦେଇଥାନ୍ତେ; ମୋଟରେ ଦୁର୍ଭିକ୍ଷ ସାହାଯ୍ୟ ଲାଗି

ଆଗାମୀ ବର୍ଷ ଦୁଇଲକ୍ଷ ଟଙ୍କା ବଜେଟ ହୋଇଥାନ୍ତା । ଏହି ପ୍ରସ୍ତାବ କରିବାକୁ ଯାଇ ଗୋପବନ୍ଧୁ ପୁରୀ ଦୁର୍ଭିକ୍ଷ ପ୍ରସଙ୍ଗ କାଉନ୍‌ସିଲରେ ଉଠାଇଲେ । ପୁରୀଜିଲାର ଦୁର୍ଭିକ୍ଷ-ପୀଡ଼ିତ ଅଂଚଳ ଲୋକେ ଏକବର୍ଷରୁ ଅଧିକ ହେଲା ଦାରୁଣ କଷ୍ଟ ଉପରେ ଭୋଗୁଛନ୍ତି, ତାହା ସେ ବର୍ଣ୍ଣନା କରିଥିଲେ । ସେ କହିଥିଲେ, ସରକାର ଏ ହତଭାଗ୍ୟ ଲୋକଙ୍କ ପ୍ରତି ଉଚିତ କର୍ତ୍ତବ୍ୟ କରି ନାହାନ୍ତି । ଏ ଦୁର୍ଭିକ୍ଷପୀଡ଼ିତ ଲୋକେ ଏବେ ଯାହା ଖାଉଛନ୍ତି ସେ ଖାଦ୍ୟର ନମୁନା (ମୁଠିଶାଗ, କୁଣ୍ଡା ) ଗୋପବନ୍ଧୁ ଲାଟ ସଭାରେ ଦେଖାଇଥିଲେ ବକ୍ତୃତା ଦେଲାବେଳେ ଦୁର୍ଭିକ୍ଷ ଗ୍ରସ୍ତ ଲୋକଙ୍କର ଗୋଟିଏ ଚିତ୍ର (Photo) ମଧ୍ୟ ଦେଖାଇଥିଲେ । ତାହା ଶୁଣି ସଦସ୍ୟମାନେ ଦେଖିଲେ, ସ୍ୱୟଂ ଲାଟ ଦେଖିଲେ । ଏହିପରି ପ୍ରମାଣ ସହିତ ଗୋପବନ୍ଧୁ କାନ୍ଦି କରି ଉଚ୍ଛଳଭାବରେ ଯେଉଁ ବିବରଣ ଦେଲେ ତାହା ପ୍ରତ୍ୟେକ ହୃଦୟକୁ ବିଗଳିତ କରିଥିଲା, ବଶୀଭୂତ କରିଥିଲା । ଏ ବିଷୟର ବିହିତ ପ୍ରତୀକାର ହେବା ଉଚିତ ବୋଲି ସମସ୍ତେ କହିଥିଲେ । ଓଡ଼ିଶା ବିଭାଗର କମିଶନର ଗ୍ରୁନିଂ ସାହେବ ସଭାରେ ଉପସ୍ଥିତ ଥିଲେ, ସେ ଗୋପବନ୍ଧୁଙ୍କ କଥାର ପ୍ରତିବାଦ କରି କହିଥିଲେ—ଗୋପବନ୍ଧୁ ବାବୁ କଥାକୁ ବଡ଼ ବେଶି ବଢ଼ାଇ କରି କହୁଛନ୍ତି । ସେ ନିଜେ ନିକଟରେ ଦୁର୍ଭିକ୍ଷପୀଡ଼ିତ ଅଂଚଳକୁ ଯାଇଥିଲେ । ଯାହା ଦେଖିଥିଲେ, ସେଭଳି ଗୁରୁତର ନୁହେ ବୋଲି ପ୍ରକାଶ କଲେ । ପୁରୀ ଜିଲାବୋର୍ଡ ଭାଇସ୍ ଚେୟାରମାନ୍ ଫମିନ କମିଟିର ସେକ୍ରେଟରି, ତାଙ୍କୁ କହିଛନ୍ତି ଯେ ମୋଟେ ଦୁଇ ହଜାର ଲୋକ ଦୁର୍ଭିକ୍ଷ ସାହାଯ୍ୟ ପାଇବା ଯୋଗ୍ୟ । କେବଳ ଟିକା ଇଉନିଅନରେ ଅତି ଅଳ୍ପ ଲୋକଙ୍କୁ ଦୁର୍ଭିକ୍ଷ ବାଧିଛି । ପୁରୀ ମେଜେଷ୍ଟ୍ରର ଯାହା କରିବାର କରୁଛନ୍ତି । କମିଶନର ସାହେବ ସେମାନଙ୍କୁ ପରାମର୍ଶ ଦେଇ ଯେତେ ଦୂର ସାହାଯ୍ୟ ଦେବାର, ଦୁର୍ଭିକ୍ଷ ଅଂଚଳରେ ଦେଉଛନ୍ତି । ଏହିପରି କେତେକ ତର୍କ ବିତର୍କ ପରେ ସରକାର ତରଫରୁ ଉତ୍ତର ମିଳିଲା କି, ଦୁର୍ଭିକ୍ଷ ନିମନ୍ତେ ବଜେଟରେ ଅଧିକ ଟଙ୍କା ରଖିବା ବର୍ତ୍ତମାନ ପ୍ରୟୋଜନ ନାହିଁ । ଟଙ୍କାଦେବା ଅବସ୍ଥାକୁ ଗଲେ ସରକାର ପରେ

ସ୍ୱରେ ଯେ କୌଣସି ଆଜ୍ଞା ଦିଆଯିବ । ଶେଷରେ ଗୋପବନ୍ଧୁ ଗ୍ରୁନ୍‌ସାହେବ କଥାରେ ଜବାବ ଦେଇ କହିଲେ କ ଗ୍ରୁନ୍‌ ସାହେବ ଦୁର୍ଭିକ୍ଷ –ପୀଡ଼ିତ ଅଂଚଳକୁ ଥରେମାତ୍ର ଯାଇଛନ୍ତି,ତାହା ଏହି ଗୃହରେ ଅଦିନ ତଳେ । ସେଥିରେ ପୁଣି ସିଧା ସିଧା ଯାଇ ମଟରରେ ଫେରିଛନ୍ତି । ଯେଉଁ ଗାଁମାନଙ୍କୁ ଦେଖି ବାଧିଛି, ସେହି ଗାଁମାନଙ୍କୁ ଯାଇ ନାହାନ୍ତି; ମାତ୍ର ଗୋପବନ୍ଧୁ ନିଜେ ସେ ଅଂଚଳକୁ ଯାଇ ଗୃହରେ ଥରେ ସେ ଗାଁମାନ ଦେଖିଛନ୍ତି । ଏ କଥାରେ ଗ୍ରୁନ୍‌ ଉଠି କହିଲେ, ଘଡ ଘଡ଼ି ତଡ଼ ଚଡ଼ି ମାରି ବାଟ ଖରାପ ହୋଇଯିବାରୁ ତାଙ୍କ ମଟର ଚଳିଲା ନାହିଁ । ଗୋପବନ୍ଧୁ ବାବୁ ତାଙ୍କୁ ଅନୁରୋଧ କରିଥିଲେ ସୁଦ୍ଧା ସେ ଅତି ଖରାପ ଅଂଚଳକୁ ଯାଇପାରିଲେ ନାହିଁ । ଗୋପବନ୍ଧୁ କହିଲେ ସରକାର ଯେବେ ସଂମିଳନୀର ବେସରକାରୀ ସଭ୍ୟଙ୍କ ସଙ୍ଗେ ଦୁର୍ଭିକ୍ଷ ବିଷୟ ଅନୁସନ୍ଧାନ କରିବା ଲାଗି କୌଣସି ସରକାରୀ ସଭ୍ୟଙ୍କୁ ଦେଇଥାନ୍ତେ, ତାହାହେଲେ ପ୍ରକୃତ ଅବସ୍ଥା ସମ୍ବନ୍ଧେ ଆଉ ଆପତ୍ତି କରି ନ ଥାନ୍ତେ । ଗ୍ରୁନ୍‌ସାହେବ ସେଠାରେ Overdrawn ବୋଲି କରି କହୁଛନ୍ତି ବୋଲି କହି ନ ଥାନ୍ତେ । ଗୋପବନ୍ଧୁ କହିଲେ ଏହା Over-drawn ,indrawn ବା Outdrawn ଯାହା ହୋଇପାରେ,ଦୁର୍ଭିକ୍ଷ–ପୀଡ଼ିତ ଯାଗା ଯେତେ ଅଳ୍ପ ହେଉ ବା ଲୋକଙ୍କ ସଂଖ୍ୟା ଯେତେ କମ୍ ହେଉ ପଛକେ ଏହି ପ୍ରଦେଶର କୌଣସି ଅଜ୍ଞାତ କୋଣରେ କେହି ଜଣେ ପ୍ରଜା ଯଦି ସମ୍ରାଟଙ୍କ ବିଶାଳରାଜ୍ୟ ମଧ୍ୟରେ ନ ଖାଇ ମରେ, ସେ ପାତକ ମୋ ଉପରେ କାଉନ୍‌ସିଲର ସମସ୍ତ ସଭ୍ୟମାନଙ୍କ ଉପରେ, ଏପରି କ ବ୍ରିଟିଶ ରାଜତ୍ୱ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଯେଉଁମାନେ ସମ୍ପୃକ୍ତ, ସେମାନଙ୍କ ଉପରେ ଲାଗିବ । ଏହା କହି ସେ ପ୍ରସ୍ତାବଟି ଉଠାଇ ଆଣିଥିଲେ । ତାଙ୍କର ଶେଷ ଭାଷଣରେ ସେ ଇଂରାଜୀରେ ଯାହା କହିଥିଲେ, ତାହା ତଳେ ଦିଆଗଲା :—

" Well, five unions. I am not definite about the number of unions that are affected. But in answer to a question of mine in the Council the

information that I was supplied with, justified me in saying that in three thanas nearly 250 villages are more or less affected. Of course there is no use discussing over a matter on which the officials. and an humble non-official like myself could not come to a definite agreement, specially when people are dying. I have seen things in my own eyes and I can not disbelieve my senses. Beyond this I can not say anything. The Hon'ble member in charge has given me assurance that money will be found if a proper case would be made out for the declaration of famine. Declare famine or not but save the human lives there. That is my earnest prayer. The Hon'ble Mr. Grunning has said that every thing that could be done has been done and is being done. All right, I do not find fault with Government officers for what they have done, but I urge for what they can do even now. Well, it is said that only a small tract in a little district is affected and for this there is no reason that in the Provincial Budget the expenditure should be raised. But it does not matter whether it is a little tract or big tract. If any human being in an unknown corner of this Province within the great empire of His Majesty dies for want of food, I think that his blood will be upon me and upon all

those who are directly or indirectly responsible for conducting the administration. With these words I leave the matter in your Honour's hand."

ଗୋପବନ୍ଧୁଙ୍କର ଏହି କାତର ଉକ୍ତିରେ ବିଗଳିତ ଓ ବିଚଳିତ ହୋଇ ବିହାର ଓଡ଼ିଶାଲାଟ ମାନ୍ୟବର ଗେଟ ସାହେବ ଅପ୍ରେଲ ତା୨୭ରିଖରେ ଦୁର୍ଭିକ୍ଷ ଅଂଚଳ ଦେଖିବାକୁ ଆସିଥିଲେ । ସେ ଆସିବା ଦିନର ୨ଟା ପର୍ଯ୍ୟନ୍ତ ସ୍ଥାନୀୟ ହାକିମମାନେ ବେସରକାରୀ ସଭ୍ୟମାନଙ୍କୁ ଲାଟସାହେବଙ୍କ ଗସ୍ତ ନିର୍ଘଣ୍ଟ ଲୁଚାଇ ରଖିଥିଲେ । ଗୋପବନ୍ଧୁଙ୍କର ପତ୍ରରେ ଲାଟସାହେବ ତାଙ୍କୁ ତାଙ୍କ ସଙ୍ଗରେ ଦୁର୍ଭିକ୍ଷ ଅଂଚଳକୁ ଯିବା ପାଇଁ ଡାକିଥିଲେ । ଲାଟସାହେବ ନିଜେ ଦୁର୍ଭିକ୍ଷ-ପୀଡ଼ିତ ଲୋକଙ୍କ ଘରକୁ ଯାଇ ଘରେ ଘରେ ପଶି ଅବସ୍ଥା ଦେଖିଲେ । ଯେଉଁଠାକୁ ଗ୍ରୁନ୍‌ସାହେବଙ୍କର ମଟର ଚଳି ନ ଥିଲା ସେଠାକୁ ଲାଟସାହେବ ଯାଇଥିଲେ । ଲୋକେ କିପରି ଘାସ ସିଝାଇ ଖାଉ ଛନ୍ତି, କିଆ କନ୍ଦା ମୁଠିଏ ଶାଗରେ କିପରି ପ୍ରାଣ ରଖିଛନ୍ତି, ଘରଦ୍ୱାର କିପରି ଭାଙ୍ଗିଗଲାଣି, ବସ୍ତ୍ରଅଭାବରୁ ଲଜ୍ଜାରେ ଘରୁ ବାହାରି ପାରୁ ନାହାନ୍ତି, ଗାଁ ଗାଁ କିପରି ଜନଶୂନ୍ୟ ହେଲାଣି, ସମସ୍ତ ନିଜ ଆଖିରେ ଦେଖିଥିଲେ । ଗ୍ରୁନ୍‌ ସାହେବଙ୍କ କଳ୍ପିତ ସୁନାଖଣ୍ଡ ମଧ୍ୟ ସେ ଦେଖିଥିଲେ । ଶେଷରେ କହିଲେ, "ଗୋପବନ୍ଧୁ, ସରକାରର ଯାହା କରିବାର ଥିଲା ସେ କରି ନାହିଁ ।"

ଲାଟସାହେବଙ୍କର ଏ ଆଶ୍ୱାସନା ସତ୍ତ୍ୱେ ସରକାର ଦୁର୍ଭିକ୍ଷ ଘୋଷଣା କଲା ନାହିଁ । କେବଳ ତିନଗୋଟି ଥାନାରେ ୨୫୦୦ ଲୋକଙ୍କୁ ମୁଠି ସାହାଯ୍ୟର ବ୍ୟବସ୍ଥା କଲା । ସେହିଦିନଠାରୁ ଗୋପବନ୍ଧୁଙ୍କର ସରକାରରୁ ବିଶ୍ୱାସ ତୁଟିଗଲା । ତହୁଁ ସେ ପୂର୍ବୋକ୍ତ ବେସରକାରୀ ସଭ୍ୟମାନଙ୍କୁ ନେଇ ସମଗ୍ର ଭାରତରେ ଏହି ବିପନ୍ନ ଲୋକଙ୍କ ଦୁଃଖ ଘୁଞ୍ଚାଇବା ପାଇଁ ଏକ ନିବେଦନ କଲେ ଏବଂ ସ୍ଥାନେ ସ୍ଥାନେ ସଭାସମିତି କରି ପୁରୀ ଲୋକଙ୍କର ଅବସ୍ଥା ଓ ସରକାରଙ୍କର ଅନାସ୍ଥା ଭାବ ବୁଝାଇବାକୁ ଲାଗିଲେ । ସନ ୧୯୨୦ମସିହା ଅପ୍ରେଲମାସ ତା୧୨ରିଖରେ ପାଟଣାଠାରେ ଏକ ସଭାରେ

ଗୋପବନ୍ଧୁ ଏହି ପୁରୀ ଦୁର୍ଭିକ୍ଷ ନେଇ ଏକ ବକ୍ତୃତା କରିଥିଲେ । ଏହିପରି ଆବେଦନ ନିବେଦନ ସଭା ସମିତି ବକ୍ତୃତା ଆଲୋଚନା ଆଦିର ଫଳରେ ପୁରୀ ଦୁର୍ଭିକ୍ଷ ଖବର ଭାରତବର୍ଷର ଚାରିଆଡ଼େ ବାଜିଗଲା । ମହାତ୍ମାଗାନ୍ଧୀଙ୍କ ନଜର ଏ ଆଡ଼େ ଫେରିଲା । ସେ ଟଙ୍କା ସାହାଯ୍ୟ ଦେଲେ । ଭାରତ ସେବକ-ସମାଜର ମାନନୀୟ ଶ୍ରୀଯୁକ୍ତ ଅମୃତଲାଲ୍ ଭାଇ ଠକରଙ୍କୁ ପୁରୀର ଦୁର୍ଭିକ୍ଷ ଅଂଚଳରେ କାମ କରିବା ପାଇଁ ପଠାଇଲେ । ସେ ଦୁର୍ଭିକ୍ଷ-ପୀଡ଼ିତ ଅଂଚଳରେ କେତେକ ସ୍ଥାନ ବୁଲି ଦେଖି ଆସିବା ପରେ ଲୋକମାନଙ୍କୁ ସାହାଯ୍ୟ ଦେବା କାରଣ ପୁରୀରେ 'ଦୁର୍ଭିକ୍ଷ ସାହାଯ୍ୟ ଲୋକସଭା' **Peoples' Famine Relief Committee** ନାମରେ ଏକସ୍ୱତନ୍ତ୍ରକମିଟି ଗଠିତ ହେଲା । ତହିଁରେ ଗୋପବନ୍ଧୁ ସଭାପତି ଓ ଠକର ସାହେବ ସମ୍ପାଦକ ରହିଲେ । ବିପନ୍ନଅଂଚଳମାନଙ୍କରେ କେନ୍ଦ୍ରମାନ ଖୋଲି ଶୃଙ୍ଖଳାମତେ କାର୍ଯ୍ୟ ଆରମ୍ଭ କଲେ । ସ୍ୱେଚ୍ଛା ସେବକମାନେ ଚାରିଆଡ଼ୁ ଆସି କାର୍ଯ୍ୟରେ ଯୋଗ ଦେଲେ । ଠକର ସାହେବ ନିଜ ଆଖିରେ ଯାହା ସବୁ ଦେଖିଥିଲେ ତାହା ଭାରତର ପ୍ରଧାନ ପ୍ରଧାନ ଖବର କାଗଜମାନଙ୍କରେ ବାହାର କଲେ । ସମ୍ମିଳନୀ ତରଫରୁ ବେସରକାରୀ ଅନୁସନ୍ଧାନ କମିଟିଙ୍କର ରିପୋର୍ଟ ମଧ୍ୟ ଖବର କାଗଜମାନଙ୍କରେ ଆଲୋଚନା ହେଲା । ବମ୍ବେଇ,ମାନ୍ଦ୍ରାଜ,କଲିକତା, ପାଟଣା ପ୍ରଭୃତି ବଡ଼ ବଡ଼ ସହରର ପ୍ରଧାନ ଦୈନିକ, ସାପ୍ତାହିକ ଏବଂ ମାସିକ ପତ୍ରିକାମାନ ନିତାନ୍ତ ଆକ୍ଷେପ କରି ଲେଖିଲେ । ସରକାରର ଘୋର ନିନ୍ଦା ହେଲା । ଭାରତର ନାନାସ୍ଥାନରୁ ସମସ୍ତଙ୍କ ଯତ୍ନରେ ପ୍ରାୟ ଦୁଇଲକ୍ଷ ଟଙ୍କା ସଂଗୃହୀତ ହେଲା । ଦେଶର ଦାନଶୀଳ ଧନାଢ଼୍ୟ ବ୍ୟକ୍ତିମାନେ ଅଜସ୍ର ଧନ ଦାନ କଲେ । ବେସରକାରୀ ସଭ୍ୟମାନଙ୍କ ସାହାଯ୍ୟରେ ଦୁର୍ଭିକ୍ଷ-ପୀଡ଼ିତ ଅଂଚଳରେ ନିଜେ ବୁଲି ନିଜର ସତ୍ୟବାଦୀଇସ୍କୁଲର ସହକର୍ମୀ ଓ ଛାତ୍ରମାନଙ୍କୁ ସଙ୍ଗରେ ନେଇ ମାସ ମାସ ଧରି ଅକ୍ଳାନ୍ତ ପରିଶ୍ରମ କରି ଲୋକଙ୍କୁ ମୁଠି ଦେଇ ବଞ୍ଚାଇ ଗୋପବନ୍ଧୁ ଯେ ସାହାଯ୍ୟ କାମ ଆରମ୍ଭ କରିଥିଲେ,ତାହା ଓଡ଼ିଶାରେ କେହି କେବେ କୁତ୍ରାପି କରି ନ ଥିଲା ।

ଏ ପ୍ରସଙ୍ଗରେ ସରକାରର ଉଦାସୀନତା କେବଳ ଓଡ଼ିଶାରେ ସମ୍ଭବ, ବଙ୍ଗଳା ବା ଅନ୍ୟ କୌଣସି ଦେଶରେ ନୁହେଁ। କାରଣ ଓଡ଼ିଆ ନିରକ୍ତି।

ଓଡ଼ିଶାରେ ଯେ ପ୍ରତ୍ୟେକ ବର୍ଷ ଦୁର୍ଭିକ୍ଷ ଲାଗିଛି ତାହାର ପ୍ରଧାନ କାରଣ ନଦୀବୃଦ୍ଧି। ନଅଙ୍କ ଦୁର୍ଭିକ୍ଷର ପୂର୍ବରୁ ଯେ ଭୀଷଣ ବନ୍ୟା ହୋଇଥିଲା ତାହା ସମସ୍ତେ ଜାଣନ୍ତି। ୧୯୧୯—୨୦ ସାଲର ପୁରୀ ଦୁର୍ଭିକ୍ଷରେ ବନ୍ୟା ଯୋଗେ ଲୋକମାନଙ୍କର ଅବସ୍ଥା ଗୁରୁତର ହୋଇଥିଲା। ପ୍ରାକୃତିକ ଦୁର୍ଘଟଣା ସମସ୍ତ ସମୟରେ ହୋଇପାରେ; ମାତ୍ର ଓଡ଼ିଶାରେ ବନ୍ୟା ସର୍ବଦା ଲାଗି ରହିଅଛି। ଆଜିକାଲି ଓଡ଼ିଶାରେ ଯେ ବର୍ଷକୁ ବର୍ଷ ବନ୍ୟାବିପ୍ଳବ ହେଉଛି, ସେଥିରେ କିଏ କେତେ ସତର୍କ ହେବ ? ବନ୍ୟା ସାହାଯ୍ୟ କାମ ଚାଲିଛି, ତା ଉପରେ ପୁଣି ବନ୍ୟା ଆସି ଉପସ୍ଥିତ। ପୂର୍ବେ ଏପରି କେବେ ହେଉ ନ ଥିଲା। ଗୋଟିଏ ବର୍ଷ ଭଲ ଫସଲ ହେଲେ ସେଥିରେ ଲୋକେ ଦୁଇବର୍ଷ ଚଳିଯାଉଥିଲେ, ମାତ୍ର ଲାଗେ ଲାଗେ ଲୋକଙ୍କର ଫସଲ ହାନି ହେଲେ ଲୋକଙ୍କୁ କିଏ ରକ୍ଷା କରିପାରେ ? ଏହାର ଉଚିତ ପ୍ରତିକାର ପାଇଁ ଗୋପବନ୍ଧୁ ୧୯୨୦ ମସିହାରେ ବ୍ୟବସ୍ଥାପକ ସଭାରେ ଏକ ପ୍ରସ୍ତାବ ଆଣିଥିଲେ। ସେ କହିଥିଲେ,ଓଡ଼ିଶାର ସମସ୍ତ ବନ୍ୟା-ପ୍ରପୀଡ଼ିତ ଜିଲ୍ଲାମାନ ସର୍ଭେ କରାଯାଇ ବନ୍ୟାର ସ୍ଥାୟୀ ପ୍ରତିକାର କରାଯାଉ। ତାହାଁର ଫଳରେ ୧୯୨୨—୨୩ ମସିହାରେ ଗୋଟିଏ ବନ୍ୟା ତଦନ୍ତ କମିଟି ବସିଲା। ଦଳେ ଇଞ୍ଜିନିଅର ଓଭରସିଅର ଲାଗି କଟକ, ପୁରୀ, ବାଲେଶ୍ୱର ଜିଲାର କେତେକ ସ୍ଥାନ ମାପିଲେ। ସେମାନଙ୍କ ରିପୋର୍ଟ ବିଚାର ଲାଗି ସରକାରୀ ବେସରକାରୀ ଲୋକଙ୍କୁ ନେଇ ଏକ କମିଟି ହେଲା। ତିନିବର୍ଷ ଲାଗି ଇଞ୍ଜିନିଅର ଓଭରସିଅର ଦଳ ପିଛା ଯାହା ଖର୍ଚ୍ଚ ହେଲା, ତାକୁ ଛାଡ଼ି ଖାଲି ଏହି କମିଟିରେ ୭୦ହଜାର ଟଙ୍କା ସରକ ବ୍ୟୟ ହେଲା। କମିଟିରେ ଯାହା ସ୍ଥିର ହେଲା ସେଥିରେ କେତେକ କାର୍ଯ୍ୟ ବହୁବ୍ୟୟସାଧ୍ୟ ବୋଲି ସରକାର ଉପେକ୍ଷା କଲା, ବାକି କେତେକ ମଂଜୁର କଲା। ଏବେ ପ୍ରାୟ ୫ବର୍ଷ ବିତିଗଲାଣି, ଏ ବିଷୟରେ କାଉନ୍‌ସିଲରେ କେତେ ପ୍ରଶ୍ନ ଉଠିଲାଣି,କିନ୍ତୁ ସରକାର କିଛି

ମଂଜୁର କରିବା ପ୍ରସ୍ତାବ ମାନଙ୍କ ମଧ୍ୟରୁ କେତୋଟା କାର୍ଯ୍ୟରେ କରିଛୁ ବୋଲି ଆମ୍ଭେମାନେ ପଢ଼ିଛୁଁ ।

ପ୍ରାଦେଶିକ ଲାଟସଭାକୁ ଦେଶ ସେବାର ଗୋଟିଏ ପ୍ରଧାନ ସ୍ଥାନ ବୋଲି ଗୋପବନ୍ଧୁ ସେତେବେଳେ ମଣିଥିଲେ । ସେଠାରେ ଦେଶସେବା ପାଇଁ ନିଜର ଶକ୍ତି ସମସ୍ତ ଏକାବେଳକେ ଢ଼ାଳି ଦେଇଥିଲେ । ସେ ଦେଶର ହିତ ଉଦ୍ଦେଶ୍ୟରେ ସମଗ୍ର ମାନବ ସମାଜର କଲ୍ୟାଣ ବାଞ୍ଛା କରି ନାନା ପ୍ରକାର ପ୍ରଶ୍ନ ଓ ପ୍ରସ୍ତାବମାନ ଆଣୁଥିଲେ । ସେ ସମୟରେ ଗୋପବନ୍ଧୁ ପାଟଣା ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍ ସଭାର ମେମ୍ବର ଥାଇ ଦେଶରେ ଉନ୍ନତ ଶିକ୍ଷାର ପ୍ରସ୍ତର ନିମନ୍ତେ ଯତ୍ନବାନ୍ ଥିଲେ (କାଉନ୍ସିଲ, ସିନେଟ ପ୍ରଭୃତିର କାର୍ଯ୍ୟ ତାଙ୍କର ଲେଖି ବସିଲେ ସ୍ୱତନ୍ତ୍ର ପୁସ୍ତକ ହେବ) ଏବଂ ପୁରୀ ଜିଲ୍ଲା ବୋର୍ଡର ମେମ୍ବର ଥାଇ ଜିଲ୍ଲାର ନାନା ଅସୁବିଧାମାନ ଦୂର କରିବା ପାଇଁ ଲାଗିଥିଲେ । ଗୋପବନ୍ଧୁ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରେ ଥାଇ ଯେ କାର୍ଯ୍ୟ କରିଥିଲେ ତାହା ଚିରକାଳ ଲୋକଙ୍କ ସ୍ମୃତିପଟରେ ଲେଖା ହୋଇ ରହିବ । କାଉନ୍ସିଲରେ ତାଙ୍କର ବିଚକ୍ଷଣତା, ବାଗ୍ମିତା ସେ ଅନେକ ଘଟଣାରେ ଦେଖାଇଥିଲେ । ଏହିପରି ପ୍ରଶ୍ନ ଓ ପ୍ରସ୍ତାବମାନ ଆଣି ସରକାରୀ କର୍ମଗ୍ରହୀମାନଙ୍କର ଦୋଷ ଦେଖାଇ, ନାନା ଘଟଣାରେ ବିଶେଷତଃ ପୁରୀ ଦୁର୍ଭିକ୍ଷରେ ସରକାରଙ୍କୁ ଅପଦସ୍ତ କରାଇ ଲୋକଙ୍କ ସାହାଯ୍ୟରେ ପ୍ରବର୍ତ୍ତାଇବା ପ୍ରଭୃତି କାର୍ଯ୍ୟମାନ, ଅନ୍ୟାନ୍ୟ ଅନେକ କ୍ଷୁଦ୍ର ବଡ଼ କାର୍ଯ୍ୟ କରିଥିଲେ । ସବୁଥିରେ ଆଶାଜନକ ଫଳ ନ ପାଇବାରୁ ସରକାର-ଠାରୁ ତାଙ୍କର ବିଶ୍ୱାସ କ୍ରମେ ତୁଟିଥିଲା; ଶେଷରେ ପୁରୀ ଦୁର୍ଭିକ୍ଷ ସଙ୍କଟରେ ତାଙ୍କର ଆଉ ଏ ବ୍ରିଟିଶ ଶାସନରେ ବିଶ୍ୱାସ ରହିଲା ନାହିଁ । କ୍ରମେ ସେ ବୁଝିଲେ ଯେ, ବ୍ୟବସ୍ଥାପକ ସଭାର ବାହାରେ ରହି ସେ ଦେଶସେବା ଉତ୍ତମ-ରୂପେ କରିପାରିବେ । ୧୯୧୭ ମସିହା ଉତ୍କଳ ସମ୍ମିଳନୀରେ ଉତ୍କଳର ଦେଶ-ମିଶ୍ରଣ ସମସ୍ୟା ସମାଧାନ ସମ୍ପର୍କରେ ଦେଇଥିବା ବକ୍ତୃତାରେ ସେ କହିଥିଲେ ଯେ, ସରକାର ଏଥିର ବିହିତ ପ୍ରତୀକାର ନ କଲେ ସେ ସରକାର ସମ୍ପର୍କ

ଲୁଟାଇବେ । ବର୍ତ୍ତମାନ ଦୁର୍ଭିକ୍ଷରେ ତାଙ୍କର ମନ ଅନୁଯାୟୀ କାର୍ଯ୍ୟ ନ ହେବାରୁ ସେ ସରକାର ସଂପର୍କ ଏକାବେଳକେ ଲୁଟାଇ ଦେବାର ସ୍ଥିର କଲେ ।

## ୧ ୩

ସନ ୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାଠାରେ ଭାରତ ଜାତୀୟ ମହାସଭାର ଏକ ବିଶେଷ ଅଧିବେଶନ ହୋଇଥିଲା । ସେଥିରେ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ବାର୍ତ୍ତା ପ୍ରସ୍ତାବିତ ହୋଇଥିଲା । ମତଦ୍ୱୈଧ ଥାଇ କଂଗ୍ରେସରେ ଗୃହୀତ ହୋଇଥିଲେ ସୁଦ୍ଧା ସଂପୂର୍ଣ୍ଣରୂପେ ଦେଶବାସୀ ତାହା ଗ୍ରହଣ କରି ନ ଥିଲେ । ମାତ୍ର ଗୋପବନ୍ଧୁ ଅସହଯୋଗ ଦୀକ୍ଷା ଗ୍ରହଣ କରିବାପାଇଁ ପଶ୍ଚାତ୍ପଦ ହୋଇ ନ ଥିଲେ । ସେ ବାଲ୍ୟକାଳରୁ ସେହି ଦୀକ୍ଷାରେ ଦୀକ୍ଷିତ ଥିଲେ । ସରକାରୀ ପାଠ ପଢି ନାନା ବିଳାସ ଓ ବ୍ୟସନ ମଧ୍ୟରେ ଆସୁଥିଲେ ସୁଦ୍ଧା ସେ ସର୍ବଦା ମୋଟା ପିନ୍ଧି ଜାତୀୟ ଶକ୍ତି ଜାଗ୍ରତ କରିବାଲାଗି ସମସ୍ତଙ୍କୁ ବୁଝାଉଥିଲେ । କଲିକତାରେ ବି. ଏଲ ପଢିବାକୁ ଗଲାବେଳେ ତାଙ୍କର ସ୍ୱଦେଶୀ ଭାବ ଦେଖି କଲିକତା ବାସିନ୍ଦା ଦେଶୀବାବୁ-ମାନେ ତାଙ୍କୁ ଘୃଣା କରୁଥିଲେ । ସେତେବେଳେ ଗୋପବନ୍ଧୁ ସ୍ୱଦେଶୀର ଉପକାରିତା ନିଜର ସହାଧ୍ୟାୟୀମାନଙ୍କୁ ବୁଝାଇଥିଲେ । ବି,ଏଲ୍, ପାସ କରିବା ପରେ ସନ୍ନ୍ୟାସୀ ବେଶରେ ମଫସଲରେ ଲୋକମାନଙ୍କ ମଧ୍ୟରେ କିପରି ସ୍ୱଦେଶୀ ଭାବ ପ୍ରଚାର କରୁଥିଲେ, ତାହା ସମସ୍ତଙ୍କର ମନେ ଅଛି ! ସତ୍ୟବାଦୀ ଇସ୍କୁଲରେ ଜାତୀୟ ଜୀବନ ଗଢିବା ଲାଗି ସେ ଯେପରି ଆତ୍ମୋତ୍ସର୍ଗ କରିଥିଲେ ତାହା କେହି ଭୁଲି ନାହାନ୍ତି । ବର୍ତ୍ତମାନ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ବାର୍ତ୍ତା ଦେଶରେ ପ୍ରଚାର କରିବାପାଇଁ ସେ କି ପଶ୍ଚାତ୍ପଦ ହୁଅନ୍ତେ ? ଗୋପବନ୍ଧୁ ବହୁକାଳରୁ ବରାବର କଂଗ୍ରେସଭକ୍ତ ଥାଇ ତହିଁରେ ଯୋଗ ଦେଉଥିଲେ । କଲିକତା କଂଗ୍ରେସର ମତଭେଦ ହେଲେ

ସୁଦ୍ଧା ତାଙ୍କ ମନକୁ ଏହି ଅସହଯୋଗ ଦୀକ୍ଷା ପୂର୍ଣ୍ଣମାତ୍ରାରେ ପାଇଥିଲା । ସେ ବହୁ ଚିନ୍ତା ଓ ଭାବନା ପରେ ନିଜେ ଏ ଦୀକ୍ଷା ଗ୍ରହଣ କରିବାପାଇଁ ସଂକଳ୍ପ କଲେ । କଲିକତାରୁ ଫେରି ଓଡ଼ିଶାରେ ସେ ଭାବ ପ୍ରଚାର କରିବା ପାଇଁ ଲାଗି ପଡ଼ିଲେ । ଗୋପବନ୍ଧୁ କାଉନ୍‌ସିଲ ସମ୍ପର୍କ ତୁଟାଇବା କଥା ଶୁଣି ମାନ୍ୟବର ଶେଠ ସାହେବ ପୁରୀରେ ଅବସ୍ଥାନ ସମୟରେ ଗୋପବନ୍ଧୁଙ୍କୁ ଘରୋଇଭାବରେ ଡ଼ାକି କହିଥିଲେ, "ଗୋପବନ୍ଧୁ ! ତୁମ୍ଭେ କାଉନ୍‌ସିଲରେ ଥାଇ ତୁମ୍ଭର ସାଧୁ ଉଦ୍ୟମ ଫଳରେ ଦେଶରେ ଯେତେଗୁଡ଼ିଏ କାର୍ଯ୍ୟ କରି ପାରୁଥିଲ, ଅସହଯୋଗ ଦ୍ୱାରା ତାହା କରିପାରିବ କି ? ସେଗୁଡ଼ିକ ଫଳରେ ଲୋକଙ୍କ ହିତ ହିଁ ନା ! ନିଷ୍ଠାର ସହିତ ଯେ କାର୍ଯ୍ୟ ଆରମ୍ଭ କରିଛ ତାହାହିଁ କରି ନିଶ୍ଚୟ ଫଳ ଫଳିବ । ଅସହଯୋଗ ଏଥିର ପନ୍ଥା ନୁହେଁ ।" ଗୋପବନ୍ଧୁ ତାହାଁର ଉତ୍ତରରେ କହିଥିଲେ, "ଆପଣଙ୍କ ହୃଦୟ ମହତ୍ ହୋଇପାରେ । ଆପଣ ଧାର୍ମିକତା ସରଳତା ବୁଝିପାରନ୍ତି । ଆପଣଙ୍କ ପ୍ରାଣରେ ଲୋକଙ୍କ ପାଇଁ ବା କିଛିଏ ସ୍ନେହ ସହାନୁଭୂତି ଥାଇପାରେ । କିନ୍ତୁ ଆପଣଙ୍କର ଏ ଶାସନଯନ୍ତ୍ର ଯେ ଲୁହାଠାରୁ ବଳି କଠିନ, ପଥରରୁ ବଳି ନିର୍ମମ । ମୋର ଗୁରିବର୍ଷ କାଳ କାଉନ୍‌ସିଲରେ କରୁଣପ୍ରାର୍ଥନାରେ କି ଫଳ ହେଲା ? ବନ୍ୟା ପ୍ରତୀକାରର କୌଣସି ଉଦ୍ୟମ ହେଲା ନାହିଁ । ଲୁଣ ପ୍ରୋକ୍ଲାମର କୌଣସି ବିଚାର ହେଲା ନାହିଁ । ଯଥାର୍ଥ ଶିକ୍ଷା ପ୍ରଚାର ମଧ୍ୟ ଏ ଶାସନଯନ୍ତ୍ର ପକ୍ଷରେ ଅସମ୍ଭବ । ଆପଣ ନିଜେ ପୁରୀଜିଲା ବୁଲି ଦେଖିଲେ । ଏ ପୁରୀ ଦୁର୍ଭିକ୍ଷରେ ଲୋକେ କପର ପୋକ ମାଛି ପରି ମଲେ । ତଥାପି ଆପଣଙ୍କ ଶାସନଯନ୍ତ୍ର କହିଲା—ଏହା ଦୁର୍ଭିକ୍ଷ ନୁହେ । ଏ ଅବସ୍ଥାରେ ଅଧିକଦିନ ଏ ସରକାର ସଙ୍ଗେ ଖୋଷାମଦ ହେଲେ କିଛି ଫଳ ଫଳିବ କି ? ଅସହଯୋଗ ସାଧନାର ପନ୍ଥା । ଏ ଦେଶ ଲୋକେ ଯଦି ଏ ସାଧନାରେ ବ୍ରତୀ ହୁଅନ୍ତି, ଏମାନଙ୍କ ହୃଦୟରେ ଯଦି ଶକ୍ତି ସାମର୍ଥ୍ୟ ପ୍ରକାଶ ପାଏ, ତେବେ ଆପଣଙ୍କ ସରକାର ସେମାନଙ୍କର ଦାବୀକୁ ଆଉ ଉପେକ୍ଷା କରିପାରିବ ନାହିଁ । ମୁଁ ଯଥାର୍ଥରେ ବୁଝିଛି, 'ନାୟମାତ୍ମା ବଳହୀନେନ ଲଭ୍ୟଃ' ।"

କଂଗ୍ରେସ ବା ଭାରତଜାତୀୟ ମହାସଭା ଓଡ଼ିଶା ଇତିହାସରେ ଏକ ନୂତନ ଅଧ୍ୟାୟ ଫିଟାଇଲା । ଓଡ଼ିଶା ଏ ପର୍ଯ୍ୟନ୍ତ କଂଗ୍ରେସର ସମ୍ପର୍କରେ ଆସି ନ ଥିଲା । ଏହାର କୌଣସି ଜିଲାରେ କଂଗ୍ରେସର ଶାଖାସମିତି ହୋଇ ନ ଥିଲା । କଟକରେ କେବଳ ଓଡ଼ିଶା ଆସୋସିଏସନ୍ କଂଗ୍ରେସର ଅନ୍ତର୍ଗତ ଥିଲା । ଏହି ଆସୋସିଏସନ୍ ତରଫରୁ ପ୍ରତିବର୍ଷ କଂଗ୍ରେସକୁ ସଭ୍ୟ ନିର୍ବାଚିତ ହେଉଥିଲେ । କେତେବେଳେ ସେମାନଙ୍କ ମଧ୍ୟରୁ କେହି କେହି ଯାଉଥାନ୍ତି, ମାତ୍ର କଂଗ୍ରେସ କାର୍ଯ୍ୟ ଏ ପର୍ଯ୍ୟନ୍ତ ଓଡ଼ିଶାରେ ଆରମ୍ଭ ହୋଇ ନ ଥିଲା କହିଲେ ଚଳେ । କଂଗ୍ରେସରେ ଓଡ଼ିଶାର ଯୋଗ ଦେବା ଉଚିତ ନୁହେଁ ବୋଲି ଇତିପୂର୍ବରୁ ଅଧିକାଂଶଙ୍କର ମତ ଥିଲା । ଏବେ କେତେଦିନ ହେଲା ସେ ମତ ବଦଳିଥିଲା । କଂଗ୍ରେସରେ ଯୋଗ ନ ଦେବା ଓଡ଼ିଶାର ଭୁଲ୍ ହୋଇ ଅଛି ବୋଲି ଓଡ଼ିଶାର ଶିକ୍ଷିତ ଯୁବକମାନେ ବୁଝି ପାରିଥିଲେ । ଉତ୍କଳ ସମ୍ମିଳନୀକୁ କଂଗ୍ରେସ ସାମିଲ କରିବା କଥା ଗଲା ଦୁଇ ବର୍ଷ ସମ୍ମିଳନୀ ଅଧିବେଶନ ସମୟରେ ଉଠିଥିଲା । ତାହା ଅବଶ୍ୟ ସେ ପର୍ଯ୍ୟନ୍ତ ଧାର୍ଯ୍ୟ ହୋଇ ନ ଥିଲା । ମାତ୍ର ଗୋପବନ୍ଧୁ କଲିକତା କଂଗ୍ରେସରେ ଯୋଗ ଦେଇ ଆସି ଉତ୍କଳରେ କଂଗ୍ରେସବାର୍ତ୍ତା ପ୍ରଚାର କରିବାପାଇଁ ପ୍ରତିଜିଲାରେ କଂଗ୍ରେସ କମିଟିମାନ ଗଢ଼ିବାକୁ ଲାଗିଲେ । ୧୯୨୦ ମସିହା ଅଗଷ୍ଟ ତା୩୦ରିଖରେ ପୁରୀର ମହନ୍ତ ମହାଜନ ଓକିଲ ମୁକ୍ତାର ଇତ୍ୟାଦି ୨୫ ଜଣଙ୍କୁ ନେଇ ଜିଲାକଂଗ୍ରେସ କମିଟି ଗଠିତ ହେଲା । ସେଥିରେ ଗୋପବନ୍ଧୁ ନିଜେ ସଭାପତି ରହିଲେ । ବଡ଼ଦିନ ଛୁଟିରେ ନାଗପୁରଠାରେ କଂଗ୍ରେସର ଅଧିବେଶନରେ ଯୋଗଦେବା ପାଇଁ ଗୋପବନ୍ଧୁ ଓଡ଼ିଶାର ସମସ୍ତ ଲୋକଙ୍କୁ ପ୍ରତ୍ୟେକ ଜିଲାରେ ଜିଲାକଂଗ୍ରେସ କମିଟିମାନ ଗଠନ କରି ନାଗପୁର କଂଗ୍ରେସକୁ ଉପଯୁକ୍ତ ସଂଖ୍ୟାରେ ପ୍ରତିନିଧି ପଠାଇବାପାଇଁ ଉପଦେଶ ଦେଲେ । ଓଡ଼ିଶାର ପ୍ରତ୍ୟେକ ଜିଲାରେ ଜିଲାସମିତିମାନ ସ୍ଥାପିତ ହେଲା । ଉତ୍କଳସମ୍ମିଳନୀ ଭାରତଜାତୀୟ ମହାସମିତିର ଅନ୍ତର୍ଭୁକ୍ତ ହେବା ପାଇଁ ପ୍ରସ୍ତାବମାନ ଚାଲିଲା । ଖବରକାଗଜ ମାନଙ୍କରେ ସେ ବିଷୟରେ ଆନ୍ଦୋଳନ ହେଲା । ଓଡ଼ିଆମାନେ ସେତେବେଳକୁ ବୁଝିଲେଣି ଯେ ସେମାନେ କପଟ

ଏକପକ୍ଷୀୟ ହୋଇ ଅଛନ୍ତି । ଭାରତର କୌଣସି କାର୍ଯ୍ୟରେ ସେମାନଙ୍କର ଯୋଗ ନାହିଁ, କୌଣସି ଆନ୍ଦୋଳନରେ ସମ୍ବନ୍ଧ ନାହିଁ, ଭାରତର କୌଣସି କାର୍ଯ୍ୟରେ ଓଡ଼ିଶାର ନାମ ଗନ୍ଧ ପଡ଼ୁ ନାହିଁ । ଏହା ଭାରତର ଅନ୍ୟାନ୍ୟ ପ୍ରଦେଶର ଲୋକେ କହୁ ଆସୁଛନ୍ତି । ସୁଖର କଥା ଓଡ଼ିଆମାନଙ୍କ ମଧ୍ୟରୁ ଅନେକେ ଏବେ ଏକଥା ବୁଝି ସାରିଲେଣି । ଭାରତଠାରୁ ଅଲଗା ରହିବା ସୁନ୍ଦର ନୁହେଁ କି ଶ୍ରେୟସ୍କର ନୁହେଁ । ସେତେବେଳେ ସବୁ ଓଡ଼ିଆ ଶିକ୍ଷିତ ଯୁବକଙ୍କ ମୁଖରୁ ଏ କଥା ଶୁଣା ଯାଉଥିଲା । ସଂମିଳନୀରେ ଭାରତୀୟ ପ୍ରସଙ୍ଗ ଆଲୋଚନା ହେଉ ଏବଂ ସମ୍ମିଳନୀକୁ ଭାରତଜାତୀୟ ମହାସମିତିର ଅନ୍ତର୍ଭୁକ୍ତ କରାଯାଉ ବୋଲି ମଞ୍ଜୁଷା କମିଟି ଉତ୍କଳ ସଂମିଳନୀର ସ୍ଥାୟୀ ସଂପାଦକ ଶ୍ରୀଯୁକ୍ତ ଜଗବନ୍ଧୁ ସିହ୍ନଙ୍କ ନିକଟକୁ ପ୍ରସ୍ତାବ ପଠାଇଥିଲେ । ୧୯୧୮ମସିହା ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ସଭାପତି ଗୋପବନ୍ଧୁ ତାଙ୍କ ବକ୍ତୃତାରେ ଏ ପ୍ରସ୍ତାବ କରିଥିଲେ, ମାତ୍ର ସମ୍ମିଳନୀରେ ବିଧିମତେ ତହିଁର ଆଲୋଚନା ହୋଇପାରି ନ ଥିଲା । ୧୯୧୯ ମସିହାରେ ଉତ୍କଳ ସମ୍ମିଳନୀର ପୁରୀ ବୈଠକରେ ସଭାପତି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ବେହେରା ମଧ୍ୟ ଏହି ମତ ବ୍ୟକ୍ତ କରିଥିଲେ । ପଞ୍ଜାବ ଅତ୍ୟାଚାର ବିଷୟରେ ପୁରୀ ସମ୍ମିଳନୀରେ ମଧ୍ୟ ନିର୍ଦ୍ଧାରଣ କରା ଯାଇଥିଲା । ଗୋପବନ୍ଧୁ କଲିକତା କଂଗ୍ରେସରେ ଯୋଗ ଦେଇ ଆସି ଅସହଯୋଗ ବାର୍ତ୍ତା ଉତ୍କଳର ଘରେ ଘରେ ପ୍ରଚାର କରିବାକୁ ଆରମ୍ଭ କଲେ । ଲୋକମାନେ ବହୁ ସଂଖ୍ୟାରେ ତାଙ୍କ ସଂଗରେ ଏକମତ ହୋଇ ଭାରତ ଜାତୀୟ ମହାସଭା ସହିତ ଯୋଗ ଦେବା ପାଇଁ ଏବଂ ଉତ୍କଳ ସଂମିଳନୀକୁ ଏହା ସହିତ ଅନ୍ତର୍ଭୁକ୍ତ କରିବା ପାଇଁ ପ୍ରତିଶ୍ରୁତ ହେଲେ । ପରେ ଉତ୍କଳସଂମିଳନୀର ଚକ୍ରଧରପୁର ଅଧିବେଶନରେ ସଂମିଳନୀ କଂଗ୍ରେସର ନୀତି ଗ୍ରହଣ କରିବ ବୋଲି ଦେଶରେ ଆନ୍ଦୋଳନ ଚାଲିଲା । ଗୋପବନ୍ଧୁ ଅସହଯୋଗ ନୀତି ପ୍ରଚାର କରିବା ସମୟରେ ନୂତନ ଶାସନ ସଂସ୍କାର ଫଳରୁ ବ୍ୟବସ୍ଥାପକ ସଭାକୁ ମେମ୍ବର ନିର୍ବାଚିତ ହୋଇ ଯାଉଥିଲେ । ସେତେବେଳେ ଗୋପବନ୍ଧୁ ବ୍ୟବସ୍ଥାପକ ସଭା ଓ ଉପସ୍ଥିତ ନିର୍ବାଚନର ଅସାରତା ଲୋକଙ୍କୁ ବୁଝାଇ

ଭୋଟ କାହାରକୁ ନ ଦେବାପାଇଁ କହିଲେ । ନଜେ ଗୃହବର୍ଷ କାଳ ବ୍ୟବସ୍ଥାପକ ସଭାରେ ରହି କପରି ଫଳ ପାଇଅଛନ୍ତି ତାହା ଲୋକମାନଙ୍କୁ ବୁଝାଇଲେ । ଓଡ଼ିଶା ଭାରତରୁ ଅଲଗା ନୁହେଁ, ଭାରତର ବାଣୀ ଓଡ଼ିଶାର ମାନିବା ଉଚିତ । ଭାରତ ଜାତୀୟ ମହାସଭା ଓ ମୁସଲମାନ ମହାସମିତିଙ୍କର ଆଦେଶ ପାଳନ କରିବା ଦେଶବାସୀଙ୍କର କର୍ତ୍ତବ୍ୟ ବୋଲି ବୁଝାଇଥିଲେ । ଯେଉଁ ଦେଶରେ ଲୋକେ, ଖାଇବା ବିନା ମରୁଛନ୍ତି, ବସ୍ତ୍ରବିନା ଥରୁଛନ୍ତି, ବନ୍ୟା ବତ୍ୟାପାତରେ ହାହାକାର କରୁଛନ୍ତି, ସେଠାରେ ଭୋଟ ଦେଲେ ପେଟ ପୂରିବ ନାହିଁ କି ଦୁଃଖ ଦୂରିବ ନାହିଁ ବୋଲି ସେ ଭାବଥିଲେ । ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ ତୀବ୍ର ଗତିରେ ଚାଲିଲା । ଭାରତର ଅନ୍ୟାନ୍ୟ ପ୍ରଦେଶରେ ଅସହଯୋଗ ନୀତି ଏହିପରି ପ୍ରସାରିତ ହେଲା । ଅନେକ ସରକାରୀ ଚାକିରିଆ ଓ ଓକିଲ ବାରିଷ୍ଟରମାନେ ଗାନ୍ଧିଙ୍କ ଅସହଯୋଗ ନୀତିରେ ବିରୁଦ୍ଧ ବାଦୀ ହେଲେ । କହିଲେ, ମହାତ୍ମା ଗାନ୍ଧି କେତେକ ସ୍କୁଲପିଲା ଓ ବଜାରି ଲୋକଙ୍କୁ ଧରି ଅସହଯୋଗ ପ୍ରସ୍ତାବ କଲିକତା କଂଗ୍ରେସରେ ପାସ କରାଇ ନେଇଛନ୍ତି । ଏହା ଜନସାଧାରଣଙ୍କର ମତ ନୁହେଁ । ସେଥିପାଇଁ ଦେଶର ଚାରିଆଡେ ଆନ୍ଦୋଳନ ଚାଲିଲା । ବହୁସଂଖ୍ୟକ ଲୋକ କଂଗ୍ରେସକୁ ଯିବାପାଇଁ ଚେଷ୍ଟିତ ହେଲେ । ଅସହଯୋଗ ନୀତି ବିଫଳ କରିବା ଉଦ୍ଦେଶ୍ୟରେ ବହୁ ବିପକ୍ଷ ଲୋକ କଂଗ୍ରେସରେ ଯୋଗ ଦେଲେ । ଏଥର କଂଗ୍ରେସର ୩୫ଶ ଅଧିବେଶନ ନାଗପୁର-ଠାରେ ଅନୁଷ୍ଠିତ ହୋଇଥିଲା । ୩୫ ବର୍ଷ ପୂର୍ବରୁ ଏହି ଜାତୀୟ ମହାସମିତି ହେଲେ ସୁଦ୍ଧା ଏଥର ବୈଠକପରି ଏତେ ଜନତା ଓ ଉତ୍ସାହ କେବେ ଦେଖା ଯାଇ ନ ଥିଲା । କଂଗ୍ରେସ ଉପଲକ୍ଷରେ ନାଗପୁରକୁ ପ୍ରାୟ ଅର୍ଦ୍ଧଲକ୍ଷ ଲୋକ ଆସିଥିଲେ, କଲିକତା, ବମ୍ବେଇ, ମାନ୍ଦ୍ରାଜ, ପ୍ରଭୃତିରୁ କେତେ ସ୍ପେଶାଲ ଗାଡ଼ି ( Special trains ) ନାଗପୁର ଅଭିମୁଖରେ ଚାଲୁଥିଲା । ନାଗପୁର ସେତେ ବଡ଼ ସହର ନୁହେଁ । ଏତେ ଲୋକଙ୍କୁ ଜାଗା ମିଳିବା ଅସମ୍ଭବ । ତେଣୁ କଂଗ୍ରେସଲୋକଙ୍କ ଲାଗି କାଉଁଶ ତାଟିରେ ସ୍ୱତନ୍ତ୍ର ବସାଘର ହୋଇଥିଲା । ଏଥର କଂଗ୍ରେସରେ

ଗୋଟିଏ ନୂତନ ସହର ସ୍ଥାପିତ ହୋଇ ଥିଲା । ଏହାର ନାମ କଂଗ୍ରେସ ସହର ଦିଆଯାଇଥିଲା । ସେଥିରେ ପାଣିକଳ ଓ ବିଜୁଳି ଆଲୁଅର ବନ୍ଦୋବସ୍ତ କରାଯାଇଥିଲା । ଏତେ ଜନାକୀର୍ଣ୍ଣ ହୋଇଥିଲା ଯେ, ସମୟ ସମୟରେ କେତେକଙ୍କ ପକ୍ଷରେ ବସା ଖୋଜି ପାଇବା ଅତି କଷ୍ଟକର ହୋଇଥିଲା । କଂଗ୍ରେସ ସହରରେ ଦିନରାତି ସମାନ । କେତେବେଳେ ବକ୍ତୃତା, କେତେବେଳେ ତର୍କ ବିତର୍କ, କେଉଁଠାରେ ନାଟକ ଅଭିନୟ, କାହିଁ ବା ସଂକୀର୍ତ୍ତନ, ଏହିପରି କୋଳାହଳ ବରାବର ଲାଗି ରହିଥିଲା । ମୋଟ ଉପରେ କହିବାକୁ ଗଲେ ଏଥର କଂଗ୍ରେସ ମହାଭାରତୀୟ ଜାତୀୟ ଉତ୍ସବ ବୋଲି ପ୍ରତୀୟମାନ ହେଉଥିଲା । ଏହାର ମୂଳରେ ଅସହଯୋଗ ନୀତି ବିଦ୍ୟମାନ ଥିଲା । ଏଥିରେ ଆମ୍ଭମାନଙ୍କ ଓଡ଼ିଶାରୁ ଗୋପବନ୍ଧୁ ପ୍ରମୁଖ ୩୫ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଗଲା୩୫ବର୍ଷ ମଧ୍ୟରେ ଓଡ଼ିଶାରୁ ଏତେ ପ୍ରତିନିଧି କେବେ ଯାଇ ନଥିଲେ । ପୁରୀ,ଗଂଜାମ, ସଂବଲପୁର, କଟକ,ବାଲେଶ୍ୱର, ସବୁ ଜିଲାରୁ ଊଣା ଅଧିକେ ଯାଇଥିଲେ । ଗୋପବନ୍ଧୁ ବାବୁ ଓ ଜଗବନ୍ଧୁ ବାବୁ ବିଷୟ ନିର୍ବାଚନ ସଭାରେ ଉପସ୍ଥିତ ଥିଲେ । ଏହିଥର କଂଗ୍ରେସରେ ଭାଷା ଅନୁସାରେ ପ୍ରାଦେଶିକ କଂଗ୍ରେସ କମିଟି ଗଠନ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ଏହି ପ୍ରସ୍ତାବରେ ଉତ୍କଳର ସ୍ୱତନ୍ତ୍ରତା ପ୍ରକାଶ କରା ଯାଇଥିଲା । ସେହିଦିନଠାରୁ ଓଡ଼ିଶା ଭାରତ ଜାତୀୟ ମହାସମିତି ସଙ୍ଗେ ସଂପୃକ୍ତ ହେଲା । ଭାରତ ଜାତୀୟମହା ସମିଳନୀରେ ଏହାର ଅଧିକାର ରହିଲା । ଏଣିକି ଓଡ଼ିଶାରୁ ପ୍ରତିବର୍ଷ ପ୍ରତିନିଧି କଂଗ୍ରେସକୁ ଯିବେ । ଏହିଠାରୁ ଦେଶବାସୀ ବୁଝିଲେ ଯେ, ଘର କୋଣରେ ବସି ଭାରତ ଜାତୀୟ ମହାସମିତି ସଙ୍ଗେ ନ ମିଶିଲେ, ନିଜେ ମନେ ମନେ ବଡ଼ ହୋଇ ରହିଲେ ସେମାନଙ୍କୁ କେହି ପଚାରିବେ ନାହିଁ ।

କଲିକତା କଂଗ୍ରେସରେ ମହାତ୍ମାଗାନ୍ଧିଙ୍କର ଅସହଯୋଗ ନୀତିର ପ୍ରତିବାଦ ଯେଉଁମାନେ କରିଥିଲେ, ସେମାନେ ନାଗପୁର କଂଗ୍ରେସରେ ଆଗ୍ରହର ସହିତ ତାହା ଗ୍ରହଣ କଲେ । ପଞ୍ଜାବ ଅତ୍ୟାଚାରର କାହାଣୀ

ପ୍ରତ୍ୟେକ ଲୋକର ହୃଦୟ-ତନ୍ତ୍ରୀରେ ଆଘାତ ଦେଲା । ମୁସଲମାନ ଭାଇମାନଙ୍କ ପ୍ରତି ଖିଲାଫତ ସମସ୍ୟାରେ ଯେ ଅତ୍ୟାଚାର ହୋଇଅଛି, ତାହା ପ୍ରତ୍ୟେକ ଦେଶବାସୀ ବୁଝିଲେ । ସରକାର ସହିତ ସଂପର୍କ ନ ରଖିବା ପାଇଁ ସମସ୍ତେ ଏହିଠାରେ ପ୍ରତିଶ୍ରୁତ ହେଲେ । ଭଗୀରଥ ସ୍ୱର୍ଗରୁ ମର୍ତ୍ତ୍ୟକୁ ଗଙ୍ଗା ଆଣିଲା ପରି ମହାତ୍ମାଗାନ୍ଧିଙ୍କ ତପସ୍ୟା ଫଳରେ ଏହି ମହାସ୍ରୋତ ଭାରତରେ ପ୍ରବର୍ତ୍ତି ଅଛି, ଏହା ସମସ୍ତଙ୍କର ବିଶ୍ୱାସ ହେଲା । ଭଗୀରଥଙ୍କ ପରି ଗାନ୍ଧି ଆଗେ ଆଗେ ଚାଲି ଏହାର ବାଟ କଡାଉଅଛନ୍ତି ସମସ୍ତେ ଜାଣିଲେ, ପଞ୍ଜାବ ଅତ୍ୟାଚାରର କଳଙ୍କ ଏହି ପୁଣ୍ୟସ୍ରୋତରେ ଧୋଇହୋଇ ପରିଷ୍କୃତ ହେବ, ମୁସଲମାନ ପ୍ରାଣର ଦାବାନଳ ଏଥିରେ ଶୀତଳ ହେବ, ଏହି ଅସହଯୋଗ ଜାହ୍ନବୀ ଭାରତରେ ସ୍ୱର୍ଗ ରାଜ୍ୟ ସ୍ଥାପନ କରିବ, ଏହା ଭାବି ସମଗ୍ର ଦେଶବାସୀ ଭାରତ ଜାତୀୟ ମହାପୀଠରେ ସରକାର ସହିତ କୌଣସି ସମ୍ପର୍କ ରଖିବେ ନାହିଁ ବୋଲି ପ୍ରତିଶ୍ରୁତ ହେଲେ

ଗୋପବନ୍ଧୁ ଏହି ଭାବରେ ଅନୁପ୍ରାଣିତ ହୋଇ ନାଗପୁରଠାରୁ ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନରେ ଆସି ଯୋଗ ଦେଲେ । ଆଗରୁ ଉତ୍କଳ ସମ୍ମିଳନୀ ଭାରତ ଜାତୀୟ ମହାସଭାର ଅନ୍ତର୍ଭୁକ୍ତ ହେବ ବୋଲି ଆଲୋଚନା ଚାଲିଥିଲା । ଏଥର ଉତ୍କଳ ସମ୍ମିଳନୀରେ ସମ୍ମିଳନୀ ଭାରତ ଜାତୀୟ ମହାସଭାର ଅନ୍ତର୍ଭୁକ୍ତ ହେବା ପାଇଁ ସ୍ଥିର ହେଲା ; ସମଗ୍ର ମହାଭାରତୀୟ ପ୍ରଶ୍ନ ଏହିଠାରୁ ଉତ୍କଳ ସମ୍ମିଳନୀରେ ଆଲୋଚିତ ହେଲା । ଏ ସଂମିଳନୀ ରାଜନୈତିକ ଅନୁଷ୍ଠାନ ନୁହେଁ, ଏ ଧାରଣା ସମସ୍ତଙ୍କ ମନରୁ ଦୂରୀଭୂତ ହେଲା । ଗୋପବନ୍ଧୁ ତାଙ୍କର 'ବନ୍ଦୀର ଆତ୍ମକଥା' ରେ ଏହାକୁ ଲକ୍ଷ୍ୟ କରି ଲେଖିଛନ୍ତି :—

   

"ଭାରତେ ଉତ୍କଳ ମହାପୁଣ୍ୟଧାମ
ଭାରତ ପାଞ୍ଜିରେ ନ ଥିଲା ତା ନାମ ।
ସାହସ, ସାହିତ୍ୟ, ଧନ, ମାନ, ବଳେ
ଉତ୍କଳର ନାମ ସମସ୍ତଙ୍କ ତଳେ ।
ଭାରତ ଜାତୀୟ ମହା ସଂମିଳନେ,
ନ ବସେ ଉତ୍କଳ ସ୍ୱତନ୍ତ୍ର ଆସନେ ।
ତେଣୁ ଜଗନ୍ନାଥ କରୁଣା ନିଧାନ
କରୁଣା କଟାକ୍ଷେ କଲେ ଅବଧାନ ।
ଅସହଯୋଗର ପବିତ୍ର ସରିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧୀ ଭଗୀରଥ ନିଜ ପୁଣ୍ୟ ବଳେ
ଆଣିଲେ ଅମୃତ ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଧରି
କୁମାରିକା ଯାଏ ଖେଳିଲା ଲହରୀ ।
ଉତ୍କଳେ ସେ ପୁଣ୍ୟସ୍ରୋତ ଶତଧାରେ
ବହେ ପୁରପଲ୍ଲୀ କାନ୍ତାରେ ପ୍ରାନ୍ତରେ ।"

ଗୋପବନ୍ଧୁ ପୂର୍ବ କଂଗ୍ରେସଭକ୍ତ ଥିଲେ। ସେ ସବୁ କଂଗ୍ରେସ ବୈଠକରେ ଯୋଗ ଦେବାକୁ ଯାଉଥିଲେ। କଂଗ୍ରେସର ଅଧିବେଶନ ଉତ୍କଳରେ ଅନୁଷ୍ଠିତ ହେବାପାଇଁ ତାଙ୍କର ବହୁଦିନରୁ ବାସନା ଥିଲା ସେଥିପାଇଁ ସେ ଗତ କଂଗ୍ରେସର ଅଧିବେଶନମାନଙ୍କରେ ପ୍ରସ୍ତାବ ଉଠାଇ ଥିଲେ। ମାତ୍ର ଦୁର୍ଭାଗ୍ୟକୁ ତାଙ୍କର ସେ ବାସନା ଚରିତାର୍ଥ ହୋଇ ପାରି

ନଥିଲା । ଉତ୍କଳ ସମ୍ମିଳନୀରେ ଅସହଯୋଗ ପ୍ରସ୍ତାବ ଗୃହୀତ ହେବାରୁ ଦେଶର ଚାରିଆଡେ ଦାବାନଳ ପ୍ରାୟ ଏହା ବ୍ୟାପିଗଲା । ଅଧିକାଂଶ ଛାତ୍ର ସ୍କୁଲ କଲେଜ ଛାଡ଼ିଲେ । ଓକିଲ ମୁକ୍ତାର ଅଦାଲତ ଯିବା ବନ୍ଦକଲେ । ଚାରିଆଡେ ସଭା ସମିତି ବସିଲା । ପୁରୀରେ, କଟକରେ, ବାଲେଶ୍ୱରରେ, ସମ୍ବଲ-ପୁରରେ, ଗଂଜାମରେ ଆଶ୍ରମମାନ ସ୍ଥାପିତ ହେଲା । ସ୍ୱଦେଶୀ ସର୍ବତ୍ର ପ୍ରଚାରିତ ହେଲା । ଲୋକେ ବିଲାତି ବର୍ଜନ ପାଇଁ ପ୍ରସ୍ତୁତ ରହିଲେ । ଅରଟର ଆଦର ସବୁଆଡେ ବଢ଼ିଲା । କଟକରେ ଗୋପବନ୍ଧୁ ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ ନାମକ ଏକ ବିଶ୍ୱବିଦ୍ୟାଳୟ ସ୍ଥାପନ କଲେ । ତାର ଅଧୀନରେ ସମ୍ବଲପୁର,ସତ୍ୟବାଦୀ,ବାଣପୁର,ଚକ୍ରଧରପୁର,କଟକର ଜାତୀୟ ବିଦ୍ୟାଳୟ-ମାନ ରହିଲା । ଗୋପବନ୍ଧୁ ଉତ୍କଳର ବିଭିନ୍ନ ସ୍ଥାନମାନଙ୍କରେ ଜାତୀୟ ବିଦ୍ୟା-ଳୟର ପ୍ରତିଷ୍ଠା ପାଇଁ ସର୍ବଦା ଯତ୍ନବାନ୍ ଥିଲେ । ସମ୍ବଲପୁର ଜାତୀୟ ବିଦ୍ୟାଳୟରେ ନିଜର ସହକର୍ମୀ ନୀଳକଣ୍ଠ ବାବୁଙ୍କୁ ରଖାଇଥିଲେ । ଅନ୍ୟ-ତମ କର୍ମୀ ଗୋଦାବରୀଶ ବାବୁଙ୍କୁ ଚକ୍ରଧରପୁର ଜାତୀୟ ବିଦ୍ୟାଳୟର କାର୍ଯ୍ୟ ଚଳାଇବା ପାଇଁ ପଠାଇଥିଲେ ; ଏବଂ ସତ୍ୟବାଦୀରେ ନିଜର ଅନ୍ୟ ସହ-କର୍ମୀମାନେ ବିଦ୍ୟାଳୟ କାର୍ଯ୍ୟ ଚଳାଉଥିଲେ । ନିଜେ କଟକରେ ରହି ଉତ୍କଳସ୍ୱରାଜ୍ୟ ଶିକ୍ଷା ପରିଷଦର ତତ୍ତ୍ୱ ନେଉଥିଲେ ଏବଂ ନାନା ସ୍ଥାନରେ ବୁଲି ଲୋକମାନଙ୍କ ମଧ୍ୟରେ ଅସହଯୋଗର ପ୍ରକୃତ ତଥ୍ୟ ବୁଝାଉ ଥିଲେ । ଏଥି ପୂର୍ବରୁ ପ୍ରଥମେ ସତ୍ୟବାଦୀ ବିଦ୍ୟାଳୟକୁ ଯେତେବେଳେ ଜାତୀୟ ବିଦ୍ୟାଳୟରେ ପରିଣତ କରିବାର କଥା ପଡ଼ିଲା, ଠିକ୍ ତା ପୂର୍ବରୁ ସରକାର କୋଡ଼ିଏ ହଜାର ଟଙ୍କା ସ୍କୁଲକୁ ଦେବେ ବୋଲି ପ୍ରତିଶ୍ରୁତ ଥିଲେ । ସେ ସବୁ ମାୟା ମମତା ତୁଟାଇ ଗୋପବନ୍ଧୁ ଯେତେବେଳେ ସତ୍ୟବାଦୀର କର୍ମୀ-ମାନଙ୍କୁ କହିଥିଲେ :—

"ସରକାର ସତ୍ୟବାଦୀ ଇସ୍କୁଲକୁ କୋଡ଼ିଏ ହଜାର ଟଙ୍କା ସାହାଯ୍ୟ ଦେବା ପାଇଁ ପ୍ରତିଶ୍ରୁତ ହୋଇଅଛି । ଲୋକମତ ଦୃଷ୍ଟିରେ ଏ ସ୍କୁଲକୁ ବିଶ୍ୱ-ବିଦ୍ୟାଳୟ ସଙ୍ଗେ ଯୋଗ କରାଯାଇଛି । ଏ ଅବସ୍ଥାରେ ମୋର ଅସହଯୋଗ

ଶିକ୍ଷା ଗ୍ରହଣ କିମ୍ବା ସଂସାର ଦୃଷ୍ଟିରେ ଏ ସ୍କୁଲମାନେ ଷଡ଼କାରକ ହୋଇ ପାରେ । କିନ୍ତୁ ମୁଁ ବୁଝୁଛି, ସରକାରର ସହାନୁଭୂତି ପାଇବା ବା ଆମର କ୍ଷମତା ଅଧିକାର ବଢ଼ାଇବା, କେତୋଟି ପିଲାଙ୍କୁ ଇଂରାଜୀ ଚାରି ଅକ୍ଷର ପଢ଼ାଇ ପାସ୍ କରିଦେବା ଆମ୍ଭମାନଙ୍କର ଲକ୍ଷ୍ୟ ନୁହେଁ । ଓଡ଼ିଶାର ଜନ ସାଧାରଣଙ୍କର ଶିକ୍ଷା, ସେବା ଓ ଉନ୍ନତି ଆମ୍ଭମାନଙ୍କର ଲକ୍ଷ୍ୟ । ସତ୍ୟବାଦୀ ଇସ୍କୁଲ ସେ ଲକ୍ଷ୍ୟର ଆଂଶିକ ବିକାଶ ମାତ୍ର । ତେଣୁ ଏ ଜାତୀୟ ଯୁଦ୍ଧ ବେଳେ ଏ ଶାନ୍ତି-ମୟ ପବିତ୍ର ଆନ୍ଦୋଳନ ବେଳେ ପଛଘୁଞ୍ଚା ଦେଇ ରହିବା କଦାପି ଉଚିତ ନୁହେଁ । ମୁଁ ବୁଝୁଛି— ଏ ପଥରେ ସାଧନା ବଡ଼ କଠିନ । ବହୁ ଦୁଃଖ କଷ୍ଟ ସହିବାକୁ ହେବ । ହୁଏ ତ ଯାହା ଗଢ଼ିଥାଇଁ ତାହା ଭାଙ୍ଗିଯିବ । ତେଣୁ ମୁଁ ତୁମ୍ଭମାନଙ୍କୁ ଏଥିରେ ପ୍ରବର୍ତ୍ତାଉ ନାହିଁ । ମୁଁ ମୋର ଯାହା କର୍ତ୍ତବ୍ୟ ସ୍ଥିର କରିଛି, କହିଲି । ତୁମ୍ଭେମାନେ ସମସ୍ତେ ଶିକ୍ଷିତ ବିଚାରବାନ୍ ଲୋକ; ଭାବି ଚିନ୍ତି ନିଜ ନିଜ କର୍ତ୍ତବ୍ୟ ସ୍ଥିର କର । ”

ଯେ ଏ ଅନୁଷ୍ଠାନର ମୂଳ, ଯାହାଙ୍କ ପ୍ରେରଣା ଓ ଉତ୍ସାହରେ ଏ କାର୍ଯ୍ୟ ହେଉଛି, ଯାହାଙ୍କୁ ସମସ୍ତେ ଗୁରୁ ବୋଲି ମାନିଥାନ୍ତି, ତାଙ୍କଠାରୁ କି ସେମାନେ ଭିନ୍ନ ହୋଇ ରହିପାରନ୍ତି ? ସମସ୍ତଙ୍କର ମତ ସମାନହେଲା; ଛାତ୍ରମାନଙ୍କର ମତ ନିଆଗଲା ଏବଂ ସେମାନଙ୍କର ଅଭିଭାବକଙ୍କ ନିକଟକୁ ମଧ୍ୟ ପତ୍ର ଲେଖାଯାଇ ମତ ସଂଗୃହୀତ ହେଲା । ଶେଷରେ ଦେଖାଗଲା, ସମସ୍ତଙ୍କର ମତ ହେଲା ସତ୍ୟବାଦୀ ସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହେଉ । ଗୋପବନ୍ଧୁଙ୍କ ନେତୃତ୍ୱରେ ଓଡ଼ିଶାର ଚତୁର୍ଦ୍ଦିଗରେ କଂଗ୍ରେସ ଆନ୍ଦୋଳନ ତୁମୁଳ ଭାବରେ ଚାଲିଲା ।

ଉତ୍କଳରେ ଅସହଯୋଗର ଉଦ୍ଦେଶ୍ୟ ପ୍ରଚାର ପାଇଁ ଗୋପବନ୍ଧୁ ମହାତ୍ମା ଗାନ୍ଧିଙ୍କୁ ଉତ୍କଳକୁ ଆହ୍ୱାନ କରିଥିଲେ । ସେ ୧୯୨୧ ମସିହା ମାର୍ଚ୍ଚ ତା୨୩ରେ ଉତ୍କଳରେ ପଦାର୍ପଣ କରିଥିଲେ । କଟକର କାଠଯୋଡ଼ି ବାଲିରେ ମହାତ୍ମାଙ୍କ ଅଭ୍ୟର୍ଥନା ପାଇଁ ଯେଉଁ ସଭା ହୋଇଥିଲା, ସେଥିରେ ଗୋପବନ୍ଧୁ ମୁଖବନ୍ଧ-ସ୍ୱରୂପ କହିଥିଲେ :—

"ଭାଇମାନେ, ଯେଉଁ ମହାତ୍ମା ଗାନ୍ଧିଙ୍କୁ ଆପଣମାନେ ଦେଖିବେ ବୋଲି ଏତେଦିନ ବ୍ୟାକୁଳ ହେଉଥିଲେ, ସେ ଆଜି ଆପଣମାନଙ୍କ ସମ୍ମୁଖରେ ବିଦ୍ୟମାନ । ସେ ଭାରତର ଘରେ ଘରେ ଗ୍ରାମେ ଗ୍ରାମେ ଆବାଳବୃଦ୍ଧ-ବନିତାଙ୍କ ନିକଟରେ ପରିଚିତ, ଅତଏବ ତାଙ୍କର ପରିଚୟ ଦେଇ ସଭାର ବିଧି ରକ୍ଷା କରିବା ମୋପକ୍ଷରେ ବିଡମ୍ବନା ମାତ୍ର । ଉତ୍କଳରେ ପ୍ରତ୍ୟେକ ସ୍ତ୍ରୀ ପୁରୁଷ ଏ ମହାପୁରୁଷଙ୍କୁ ଜାଣନ୍ତି । ରାଜନୀତି କ୍ଷେତ୍ରରେ ଉତ୍କଳ ଭାରତରେ ଆଶାନୁରୂପ ଅଗ୍ରସର ହୋଇ ନାହିଁ, କିନ୍ତୁ ଧର୍ମ ବିଷୟରେ ଏହା ଅଗ୍ରସ୍ଥାନ ଚିରକାଳ ପାଇ ଆସୁଅଛି । ଏ ପର୍ଯ୍ୟନ୍ତ ଯେ ସମସ୍ତ ମହାପୁରୁଷ ଭାରତରେ ଜନ୍ମଗ୍ରହଣ କରି ନିଜର କୀର୍ତ୍ତି ଏ ପୁଣ୍ୟ ଭୂମିରେ ଗ୍ରନ୍ଥି ଯାଇ ଅଛନ୍ତି, ସେମାନେ ସମସ୍ତେ ଉତ୍କଳରେ ପଦାର୍ପଣ କରି ଯାଇଅଛନ୍ତି । ବୁଦ୍ଧଦେବଙ୍କ ଠାରୁ ଆରମ୍ଭ କରି କବୀର, ରାମାନୁଜ, ଶଙ୍କର, ନାନକ, ଚୈତନ୍ୟ ପ୍ରଭୃତି ଯେ ସମସ୍ତ କ୍ଷଣଜନ୍ମା ଏ ପବିତ୍ର ଭାରତରେ ଜନ୍ମ ଗ୍ରହଣ କରିଥିଲେ, ସମସ୍ତେ ଉତ୍କଳରେ ନିଜର ଚିହ୍ନ ରଖି ଯାଇଅଛନ୍ତି । ଆହୁରି ମଧ୍ୟ ଆଜକୁ ପ୍ରାୟ ୩୦୦ ବର୍ଷତଳେ ଠିକ୍ ଆଜିର ଦୋଳପୂର୍ଣ୍ଣିମା ତିଥିରେ ଚୈତନ୍ୟ ମହାପ୍ରଭୁ ଏହି ନଦୀର ବାଲୁକାରେ ପ୍ରେମଧର୍ମ ପ୍ରଚାର କରିଥିଲେ । ଆଜି ଅନ୍ୟ ମହାପୁରୁଷ ପୁଣି ୩୦୦ ବର୍ଷ ପରେ ଏହି ବାଲୁକାରେ ସେହି ତିଥିରେ ରାଜନୈତିକ ପ୍ରେମଧର୍ମ ପ୍ରଚାର କରିବାକୁ ଆସିଛନ୍ତି । ଆମ୍ଭର ଉତ୍କଳ ଧର୍ମ ନିମନ୍ତେ ଯୁଗେ ଯୁଗେ ପ୍ରତିଷ୍ଠା ପାଇଅଛି । ଆଜି ପୁଣି ଏହି ମହାତ୍ମାଙ୍କ ଯୋଗୁଁ ରାଜନୀତି ପୁଣି ଧର୍ମ ଉପରେ ପ୍ରତିଷ୍ଠିତ । ଏହି ଧର୍ମାତ୍ମା ଏବଂ ପୁଣ୍ୟାତ୍ମାଙ୍କ ରାଜନୀତିରେ କୂଟ ରାଜନୀତିର ସତ୍ତା ନାହିଁ । ତାଙ୍କ ପ୍ରଚାରିତ ଭାରତବାସୀଙ୍କ ଦ୍ୱାରା ଗୃହୀତ ନୀତିକୁ ଆପଣମାନେ ମନଃସ୍ଥ ହୋଇ ଅନୁସରଣ କରିବାକୁ ପ୍ରସ୍ତୁତ । ଉତ୍କଳ ଯୁଗେ ଯୁଗେ ଉଦାରତା ଦେଖାଇ ଅଛି । ନାନା ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟର ଲୋକେ ଉତ୍କଳରେ ଏକୀଭୂତ । ପୁରୀଧାମରେ ଜାତିଭେଦ ନାହିଁ । ଆଜି ମହାତ୍ମା ଗାନ୍ଧିଙ୍କ ଶୁଭାଗମନ ଉତ୍କଳ ଇତିହାସରେ ଏକ ନୂତନ ଚିରସ୍ମରଣୀୟ ଘଟଣା । ଆପଣମାନେ ଉତ୍କଳୀୟଙ୍କ ପୂର୍ବ ଗୌରବ ଓ ଧର୍ମ ଉଦାରତା ସ୍ମରଣ ରଖି ମହାତ୍ମାଙ୍କ କଥା ଶ୍ରବଣ କରନ୍ତୁ ।"

ଏହା ଗୋପବନ୍ଧୁଙ୍କର ପୂଜ୍ୟପୂଜାର ପରିଚୟ । ମହାତ୍ମାଗାନ୍ଧୀଙ୍କୁ ଉତ୍କଳରେ ସେ କିପରିଭାବରେ ଗ୍ରହଣ କରିଥିଲେ ତାହା ତାଙ୍କ ଲିଖିତ ବକ୍ତବ୍ୟରୁ ସ୍ପଷ୍ଟ ଜଣାପଡେ । ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କୁ ସେଠାରୁ ସଙ୍ଗରେ ନେଇ ନିଜର ସତ୍ୟବାଦୀ ଆଶ୍ରମ ଦେଖାଇବା ପାଇଁ ସତ୍ୟବାଦୀ ଗଲେ । ସେଠାରେ ଏକ ବିରାଟସଭା ହୋଇଥିଲା । ମହାତ୍ମାଜୀ ତାଙ୍କ ପ୍ରସ୍ତାବିତ ଧର୍ମ ସମସ୍ତଙ୍କୁ ଭଲରୂପେ ବୁଝାଇଥିଲେ । ସତ୍ୟବାଦୀ ଇସ୍କୁଲର ଛାତ୍ରମାନଙ୍କୁ ମହାତ୍ମା ମଧ୍ୟ ଏକ ସୁନ୍ଦର ସାରଗର୍ଭକ ବକ୍ତୃତା ଦେଇଥିଲେ । ସେଠାରେ ବକୁଳବନରେ ଛାତ୍ରମାନଙ୍କ ସହିତ ଆନନ୍ଦରେ ଗୋଟିଏ ଦିନ କଟାଇ ମହାତ୍ମାଜୀ ଗୋପବନ୍ଧୁଙ୍କୁ ସଙ୍ଗରେ ନେଇ ପୁରୀ ବିରାଜମାନ କଲେ । ପୁରୀର ଶରଧାବାଲିରେ ଏକ ବିରାଟ ଜନତା ମଧ୍ୟରେ ଗୋପବନ୍ଧୁ ପ୍ରଥମେ କହିଲେ :—

"ଭାଇମାନେ, ତାଳ ମାରିବା ବନ୍ଦକର । ବିହାର ସରକାର ଏବେ ସରକ୍ୟୁଲାରରେ ଶାନ୍ତିଭଂଗର ଆଶଙ୍କା କରିଅଛନ୍ତି । କିନ୍ତୁ ମୁଁ କହେ, ଆମ୍ଭମାନଙ୍କର ଅସହଯୋଗ ଆନ୍ଦୋଳନ ଶାନ୍ତିପୂର୍ଣ୍ଣ ସାଧନାରେ ପ୍ରତିଷ୍ଠିତ । ଯେଉଁଦିନ ଅସହଯୋଗ ଆନ୍ଦୋଳନରେ ଶାନ୍ତିଭଙ୍ଗ ହେବ, ସେ ଦିନ ସେ ଆନ୍ଦୋଳନର ନାଶ ହେବ । କେବଳ ଆମ୍ଭମାନଙ୍କ ସମ୍ମତିରେ ବେଳେବେଳେ ତାଳ ମରିଯାଏ । ଏହି ତାଳମରିକୁ ଯେବେ ଶାନ୍ତିଭଙ୍ଗ ମଧ୍ୟରେ ଗ୍ରହଣ କରିଯାଏ, ତେବେ ମୁଁ ସ୍ୱୀକାର କରୁଛି ଯେ, ଅସହଯୋଗରେ ଶାନ୍ତିଭଙ୍ଗ ଅଛି । ପ୍ରକୃତରେ ସରକାର ତାଳ ମରିକୁ ଆଶଂକା କରନ୍ତି । କାରଣ ତିରିଶି କୋଟି ଭାରତବାସୀ ତାଳ ମାରିଦେଲେ ଲଣ୍ଡନ ଇଂରାଜଙ୍କ ସତ୍ତା ରହିବ ନାହିଁ । କଟକରେ ଜଣେ କଲେକ୍ଟର ଓ ମୋହରିଆରେ ଜଣେ ଭଦ୍ରଲୋକ ସାହେବ କୁକୁର ଭୁକା ଓ ସଂକୀର୍ତ୍ତନ ଶବ୍ଦରେ ତାଙ୍କ ନିଦ ଭାଙ୍ଗିଯାଏ ବୋଲି ଫୌଜଦାରୀ ମକଦ୍ଦମା ଆଣିଥିଲେ । ଯାହାହେଉ ତାଳମରି ଟିକକ ବନ୍ଦ କରିଦେଲେ ଆମ୍ଭର ଶାନ୍ତିଭଙ୍ଗ ଆଶଂକାର ଆଉ କିଛି କାରଣ ନାହିଁ ।

"ମୁଁ ମହାତ୍ମାଗାନ୍ଧିଙ୍କୁ ଆପଣଙ୍କ ନିକଟରେ କି ପରିଚୟ କରାଇବି ? ଏହି ମହାତ୍ମାଙ୍କ ଶରୀର ଏତେ କ୍ଷୀଣ, ଆକାର ଏତେ କୃଶ ! କିନ୍ତୁ ଏଥି-ମଧ୍ୟରେ କି ଶକ୍ତି ନିହିତ ଅଛି ଯେ, କେତେଦୂରରୁ ପଲ୍ଲୀଗ୍ରାମ ସହରରୁ ଏତେ ଏତେ ଲୋକଙ୍କୁ ଟାଣି ଆଣିଅଛି । ଏହି ଶକ୍ତି ଦକ୍ଷିଣ ଆଫ୍ରିକାରେ ଭାରତର ଜୟ ବୈଜୟନ୍ତୀ ଉଡାଇଥିଲା । ଏହି ଶକ୍ତି ଚମ୍ପାରନ ଜିଲାର ପ୍ରଜାଙ୍କୁ ନୀଳ ସାହେବଙ୍କ ଅତ୍ୟାଚାରରୁ ରକ୍ଷା କରିଥିଲା । ଏହି ଶକ୍ତି କାଇରାଜିଲାର ଦୁର୍ଭିକ୍ଷ-ପୀଡ଼ିତ ଲୋକଙ୍କୁ କରଜ୍ୱାଳାରୁ ମୁକ୍ତ କରିଥିଲା । ପୁରୀ ଜିଲା କଥା ବା କିଣ କହିବି ? ମହାତ୍ମାଙ୍କ ନାମ ଆଜି ଗୃହେ ଗୃହେ କୀର୍ତ୍ତିତ । ସେ ମନୁଷ୍ୟ ନୁହନ୍ତି; ଦେବତା ବା ଦେବଦୂତ । ଆପଣ ଜାଣନ୍ତି, ପୁରୀର ଗତ ଦୁର୍ଭିକ୍ଷରେ କେତେ୨ ଲୋକ ମଲେ, କେତେ ଝଡ଼ ଝଞ୍ଜା ସହିବାକୁ ହେଲା, ସରକାରଙ୍କ ନିକଟରେ ପ୍ରାର୍ଥନା କରାଗଲା । ଶେଷରେ ଲାଟସାହେବଙ୍କ ଆସନ ଟଳିବାରୁ ସେ ନିଜେ ଆସି କହିଲେ, ଯାହା ହେବାର ଉଚିତ ଥିଲା, ତାହା ହୋଇ ନାହିଁ । କିନ୍ତୁ ଫଳରେ ହେଲା ଯେ, ଦୁର୍ଭିକ୍ଷ ଘୋଷଣା କରିବାର ସମୟ ହୋଇ ନାହିଁ । ସରକାରୀ ଲାଟ ତ ଏପରି କଲେ;କିନ୍ତୁ ଏହି ପୁରୀର ଠିକ୍ ପଶ୍ଚିମରେ ଦ୍ୱାରକା-ଧାମରେ ଆମ୍ଭମାନଙ୍କର ହୃଦୟର ଲାଟ [ମହାତ୍ମା ଗାନ୍ଧି ଗୁଜରାଟରେ ଥାଇ ପୁରୀକୁ ନ ଦେଖି ନ ଆସି ପୁରୀଜିଲାର ଦୁର୍ଭିକ୍ଷ ଘୋଷଣା କଲେ । ସେ ଘୋଷଣା ସଙ୍ଗେ ସଂଗେ ସହସ୍ର ସହସ୍ର କୋଶଦୂରରୁ, କେବଳ ଗୁଜରାଟରୁ ନୁହେ ସମସ୍ତ ଭାରତରୁ ରାଶି ରାଶି ଟଙ୍କା ଜମାହେଲା । ସରକାରଙ୍କ ସ୍ତୋକଦାନ ଏହା ତୁଳନାରେ କିଛି ନୁହେ । ମହାତ୍ମାଙ୍କ ବଳରେ, ଆଶ୍ୱାସନାରେ ଦୁର୍ଭିକ୍ଷ-ପୀଡିତ ଲୋକ ନବଜୀବନ ପାଇଛନ୍ତି । ଦେଖ ପୁରୀବାସି ! ଆମ୍ଭ ପ୍ରାଣଦାତ ହୃଦୟର ବଡ଼ଲାଟ ଏଠାରେ ବିଦ୍ୟମାନ । ମୁଁ ସେହି ଦୁର୍ଭିକ୍ଷ ସମୟରେ ତୁମ୍ଭମାନଙ୍କୁ ଦେଖିଛି, ମୋର ଚକ୍ଷୁ ଆଗରେ ଲୋକ ମରିଯିବାର ମୁଁ ମଧ୍ୟ ଦେଖିଛି । ଏହି ଦୁର୍ଭିକ୍ଷରେ ଯେଉଁ ଲୋକ ମରିଅଛନ୍ତି, ସେଥିର ପାତକ ଗଭର୍ଣ୍ଣମେଣ୍ଟଙ୍କ ଉପରେ । ପଞ୍ଜାବ ସମସ୍ୟା ଭାରତରେ ଏକ ବ୍ୟାପାର । ଖିଲାଫତ ସମସ୍ୟା ଜଗତର ଧର୍ମମଣ୍ଡଳରେ ଆଉ ଏକ ବ୍ୟାପାର । କିନ୍ତୁ ଆମ ଆଖି ଆଗରେ ଘରେ ଯେଉଁ ଦୁର୍ଭିକ୍ଷ ବ୍ୟାପାର ଲାଗିରହିଛି, ହେ ପାପହିକାଶେ

ବାନ୍ଧୀ କଏ ? ମୁଁ ମଧ କାଉନ୍ସିଲରେ କହିଥିଲି ଯେ, ଏ ପ୍ରଦେଶରେ କୌଣସି ନିର୍ଜନ କୋଣରେ ଯଦି କୌଣସି ସାମାନ୍ୟ ଲୋକ ନଖାଇ ମରିଯାଏ, ତେବେ ତା ସକାଶେ ପାପ ସରକାରଙ୍କୁ, ସରକାରଙ୍କ କଳର ପ୍ରତ୍ୟେକ ଶୃଙ୍ଖଳକୁ ଓ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ଏହି କାଉନ୍ସିଲ ମୁଣ୍ଡରେ ଲଦା ହେବ । ମୁଁ ସେତେବେଳେ କାଉନ୍‌ସିଲରେ ଥିଲି । ମୁଁ ମଧ ସେ ପାପର ଭାଗୀଦାର । ରାଜ୍ୟ ପାପ ରାଜାମୁଣ୍ଡରେ; ସେ ହେତୁ ଏ ଯେଉଁ ପାପ ହେଉଅଛି, ତାର ସମ୍ପର୍କ ଛାଡିବାକୁ ମହାତ୍ମାଜୀ ଏକ ନୂତନ ଧର୍ମ ପ୍ରଚାର କରୁଛନ୍ତି । ଏହାହିଁ ଅସହଯୋଗ । ସମ୍ପର୍କ ତ୍ୟାଗଧର୍ମ ଭାରତ ଜାତୀୟ ମହାସମିତି ଏକ ବାକ୍ୟରେ ଗ୍ରହଣ କରିଅଛନ୍ତି ।”

୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତା ବିଶେଷ କଂଗ୍ରେସ ଅଧିବେଶନବେଳେ ଗୋପବନ୍ଧୁ ମହାତ୍ମାଜୀଙ୍କୁ ପୁରୀ ଆସିବା ପାଇଁ ପ୍ରାର୍ଥନା କରିଥିଲେ । ମହାତ୍ମାଜୀ ସେତେବେଳେ କହିଥିଲେ, ସେ ଓଡ଼ିଶାକୁ ଆସିଲେ ଅସହଯୋଗକୁ ଭୁଲି ଯାଇ ଆସିବେ; କାରଣ ଓଡ଼ିଶାରେ ସେ କେବଳ ଦୁର୍ଭିକ୍ଷର ବିକଟମୂର୍ତ୍ତି ଦେଖିବେ ବୋଲି କହିଥିଲେ । ଏହି ସମ୍ପର୍କରେ ଗୋପବନ୍ଧୁ ଉକ୍ତ ସଭାରେ କହିଲେ ;—

“ଆଜି ମହାତ୍ମାଙ୍କ ସମ୍ମୁଖରେ ମୁଁ କହୁଅଛି ଯେ, ଉତ୍କଳବାସୀ ପୁରୀବାସୀ ଦୁର୍ଭିକ୍ଷପ୍ରପୀଡ଼ିତ ହେଲେ ସୁଦ୍ଧା ସେମାନେ ଅସହଯୋଗ ମହା-ଯଜ୍ଞରେ ପ୍ରାଣ ବିସର୍ଜନ କରି ଜାତୀୟତାର ପ୍ରମାଣ ଦେଖାଇ-ଅଛନ୍ତି । ଉତ୍କଳ ଏତେ ନିର୍ଯ୍ୟାତନା ଭୋଗ କରି ଏତେ ଦିନ ଯେ ତିଷ୍ଠି ଅଛି ତାହା ବୃଥା ନୁହେ । ଏଥିର ଅବଶ୍ୟ ଉଦ୍ଦେଶ୍ୟ ଅଛି । ଭାରତ ଜାତୀୟ ମହାଯଜ୍ଞରେ ଏହାର ଅଂଶ ଅଛି । ଉତ୍କଳ ତାର ସହିଷ୍ଣୁତାର ଓ ନିର୍ଯ୍ୟାତନାର ସଫଳତା ଏତେ କାଳକେ ଦେଖାଉଛି । ପୁରୀ ପୁରାଣ-ପ୍ରସିଦ୍ଧ ସ୍ଥାନ । ଭାରତରେ ଯେତେ ଯେତେ ମହାତ୍ମା ଜନ୍ମିଛନ୍ତି, ସେମାନେ ପୁରୀକୁ ମହାଧାମ କରିଛନ୍ତି । ପୁରୀରେ ବୁଦ୍ଧଙ୍କର ଦନ୍ତ, କବୀରଙ୍କ ସମାଧି, ରାମାନୁଜଙ୍କର ମଠ ଓ ନାନକଙ୍କର ମଧୁମୟ ଗାନ ରହିଅଛି ।

ଚୈତନ୍ୟଙ୍କ ଲୀଳା ସବୁଜ ଉତ୍କଳରେ ବିଦ୍ୟମାନ । କବୀର ହିନ୍ଦୁ ମୁସଲମାନଙ୍କୁ ଏକ କରିବାକୁ ବସିଥିଲେ, ମାତ୍ର ତାଙ୍କ କାର୍ଯ୍ୟ ଅପୂର୍ଣ୍ଣ ହୋଇ ରହିଥିଲା । ଆଜ ଏ ଦ୍ୱିତୀୟ କବୀର ହିନ୍ଦୁ ମୁସଲମାନଙ୍କୁ ଏକତ୍ର କରିଅଛନ୍ତି । ଆଜ ଗଙ୍ଗା ଯମୁନା ସ୍ୱରୂପ ହିନ୍ଦୁ—ମୁସଲମାନଙ୍କ ଏକାଠି ମିଳାଇ ମହାତ୍ମା ଗାନ୍ଧି ଭାରତରେ ଏକ ମହାପ୍ରୟାଗ ସୃଷ୍ଟି କରିଅଛନ୍ତି । ଆଜ ମହାତ୍ମା ତାଙ୍କର ଈଶ୍ୱର ବାଣୀକୁ ଏହି ପବିତ୍ର ଧାମରେ ପ୍ରକାଶ କରନ୍ତୁ । ମୋର ପୂର୍ଣ୍ଣ ବିଶ୍ୱାସ, ପୁରୀବାସୀ ବର୍ଣ୍ଣଧର୍ମନିର୍ବିଶେଷରେ ଉକ୍ତ ଈଶ୍ୱର ବାଣୀକୁ ଗ୍ରହଣ କରିବାକୁ ପ୍ରାଣ ଉନ୍ମୁକ୍ତ କରିଅଛନ୍ତି । ଜଗନ୍ନାଥ ଆମ୍ଭମାନଙ୍କୁ ସାହାଯ୍ୟ କରନ୍ତୁ । ଆମ୍ଭମାନଙ୍କର ଉଦ୍ୟୋଗ ସଫଳ ହେଉ । ତାଙ୍କର ନୀଳଚକ୍ର ଓ ବାନା ତଳେ ଆମ୍ଭେମାନେ ଏକ ମହା ଭାରତୀୟ ଜାତି ହେଉଁ ।

ପୁରୀଠାରୁ ମହାତ୍ମା ଗାନ୍ଧିଙ୍କ ସଂଗରେ ଗୋପବନ୍ଧୁ ବରହମପୁର ଯାଇଥିଲେ । ସେଠାରେ ହିନ୍ଦୁ ମୁସଲମାନ ଓଡ଼ିଆ ତେଲଙ୍ଗା କଳି ଏବଂ ବୃହନ୍ନଳକୁ ଗ୍ରଡ଼ ମହାତ୍ମାଜୀଙ୍କୁ ଅଭ୍ୟର୍ଥନା କରିବାପାଇଁ ଗ୍ରାମବାସୀମାନଙ୍କୁ ଆହ୍ୱାନ କରିଥିଲେ । ସେଠାରେ ଏକ ବିରାଟ ସଭା ଅନୁଷ୍ଠିତ ହେବା ପରେ ମହାତ୍ମାଜୀ ଦକ୍ଷିଣକୁ ଯାତ୍ରାକଲେ । ମହାତ୍ମା ଗାନ୍ଧିଙ୍କ ଯିବାପରେ ଗୋପବନ୍ଧୁ ଓଡ଼ିଶାର ବିଭିନ୍ନ ସ୍ଥାନମାନ ବୁଲି ଅସହଯୋଗ ନୀତି ପ୍ରଚାର କଲେ । ସବୁଠାରେ ଗୋପବନ୍ଧୁଙ୍କର ଅଭ୍ୟର୍ଥନା ଅତି ସମାରୋହରେ ହେଉଥିଲା । ସମସ୍ତେ ଦେବତା ଆରାଧନା କଲାପରି ତାହାଙ୍କୁ ଫୁଲମାଳ ଦେଇ ବାଜା ବଜାଇ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କୁ ନେଇ ଯାଉଥିଲେ । ତାଙ୍କର ଗସ୍ତ ନିର୍ଘଣ୍ଟ ଆଗରୁ ଖବର-କାଗଜରେ ପ୍ରକାଶିତ ହେଉଥିଲା । ତାଙ୍କୁ ଦର୍ଶନ କରିବାପାଇଁ ସ୍ଥାନେ ସ୍ଥାନେ ସହସ୍ରାଧିକ ଲୋକ ଜମା ହେଉଥିଲେ । ନାନାସ୍ଥାନରେ ସଙ୍କୀର୍ତ୍ତନ-ମାନ ହୋଇଥିଲା । ଗୋପବନ୍ଧୁ ସବୁଠାରେ ଭାରତଜାତୀୟ-ମହାସଭାର ସଭ୍ୟ ହେବାପାଇଁ ସମସ୍ତଙ୍କୁ ବୁଝାଉଥିଲେ । ଘରେ ଘରେ ଅରଟ ଚଳାଇ ସୂତା କାଟିବାପାଇଁ ସମସ୍ତଙ୍କୁ ଉପଦେଶ ଦେଉଥିଲେ । ବାଡ଼ିରେ କପା କରିବା

ଗ୍ରାମରେ ପଂଚାଏତ ଗଠନ କରି ମାଲି ମୋକଦ୍ଦମା ଭାଙ୍ଗିବା, ମୋଟ ଉପରେ ନିଜ ନିଜ ମଧ୍ୟରେ ଏକତା ରଖି ସ୍ୱରାଜ୍ୟ ପାଇବା ଦିଗରେ ଅଗ୍ରସର ହେବା କାରଣ ସର୍ବଦା ପ୍ରଚାର କରୁଥିଲେ । ଗୋପବନ୍ଧୁ ଚରଖାର ପ୍ରଧାନ ଭକ୍ତ ଥିଲେ । ଚରଖାରେ ସ୍ୱରାଜ୍ୟ ମିଳିବ, ଏହି ଉକ୍ତିରେ ତାଙ୍କର ଦୃଢ ବିଶ୍ୱାସ ଥିଲା । ଚରଖା ସାହାଯ୍ୟରେ ଉତ୍କଳର ଚିରଦରିଦ୍ରତା ଘୁଞ୍ଚିବ ବୋଲି ସେ ସମସ୍ତଙ୍କୁ କହୁଥିଲେ । ସେ କହୁଥିଲେ, ଚରଖା ଓ ଢିଙ୍କି ଲକ୍ଷ୍ମୀଙ୍କର ଦୁଇପାଦ ସଦୃଶ । କୁଟି ଖାଇବା, କାଟି ପିନ୍ଧିବା ନୀତି ଓଡ଼ିଶାରେ ଚିରକାଳ ଥିଲା । ଚରଖାର ପୂଜା ମହାଲକ୍ଷ୍ମୀଙ୍କ ପୂଜା ସଙ୍ଗେ ସମାନ । ଚରଖାରେ ତାଙ୍କର କିପରି ପ୍ରଗାଢ ବିଶ୍ୱାସ ଥିଲା, ତାହା ତାଙ୍କର 'ବନ୍ଦୀର ଆତ୍ମକଥା' ରେ ସେ ଲେଖି ଯାଇଅଛନ୍ତି :—

* * * * *

"ଗୃହରେ ଚରଖା ଗ୍ରାମେ ପଂଚାଏତ,
ଗ୍ରାମବାସିଗଣ ମଧ୍ୟେ ଏକମତ,
ସ୍ୱରାଜ୍ୟ ସାଧନେ ଏହି ତିନିପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ ।
ଘୁଞ୍ଚିବ ଉତ୍କଳ ଦୁଖ ଦରିଦ୍ରତା
ଉଜ଼ଳିବ ଗ୍ରାମ, ହସିବେ ଦେବତା ।

* * * * *

ହେଉ ଗୃହନାଶ ଅବା କାରାବାସ
ଯାଉ ପଛେ ପ୍ରାଣ, ନ ଯାଉ ବିଶ୍ୱାସ ।
ସତ୍ୟ ଶାନ୍ତି ପଥେ ଥିଲ ଅବିରତ
ଗ୍ରାମେ ଗ୍ରାମେ ସବେ କର ପଂଚାଏତ ।

ଚଳାଅ ଅରଟ ସୁଖେ ମନୁ ହିତ
ତେଜ ଉଚ୍ଚ ନୀଚ ଘୃଣା ଭେଦନୀତ ।
ଘୃଣାର ନାଶ ଜଣା ଆଦ ଦୁର୍ବ୍ବାର
ନ କର ଦୂଷିତ ଗ୍ରାମ ପରିବାର ।
ଏ ଆଗ୍ରରେ ହେବ ଜଗତ ମଙ୍ଗଳ
ଯଥାକାଳେ ମେଘ ବରଷିବ ଜଳ ।"

ଉତ୍କଳ ସ୍ୱରାଜ୍ୟ ପାଣ୍ଠି ଆଦାୟ କାର୍ଯ୍ୟ ମଧ୍ୟ ସବୁଠାରେ ହେଉଥିଲା । ଯେ ଯାହା ଦେଉଥିଲା, ଆଗ୍ରହ ସହକାରେ ସେ ତାହା ଗ୍ରହଣ କରୁଥିଲେ । ସଭା ସମିତିମାନଙ୍କରେ ଟଙ୍କା ପଇସା ବ୍ୟତୀତ ଯେଉଁମାନେ ଅନ୍ୟ ଜିନିଷ-ମାନ ଦେଉଥିଲେ ତାହା ସବୁ ନିଲାମ ହୋଇ ନିଲାମ ଜରିସମନ ଟଙ୍କା ଉକ୍ତ ପାଣ୍ଠିରେ ଗଚ୍ଛିତ ହେଉଥିଲା । ଏହିପରି ନାନାସ୍ଥାନ ବୁଲି ଅସହଯୋଗ ନୀତି ପ୍ରଚାର କାର୍ଯ୍ୟ ଦୃଢ ଏବଂ ସ୍ଥାୟୀ ଭାବରେ ଚଳାଇବା ପାଇଁ ସେ ପ୍ରତ୍ୟେକ ଜିଲ୍ଲାରେ ଜିଲ୍ଲା ସମିତିମାନ ଗଠନ କରିଥିଲେ ଏବଂ ସମଗ୍ର ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟି ସ୍ଥାପନ କରି ତହିଁରେ ସଭାପତି ରହିଲେ । ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ମଧ୍ୟ ଥିଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିଙ୍କ ଅଧୀନରେ ଏକ 'ଉତ୍କଳ ସ୍ୱରାଜ୍ୟ ସେବକ ସଂଘ' ସ୍ଥାପନ କରି ଏହି ଯୁବକ ସଂଘର ସଭ୍ୟ ହେବା ନିମନ୍ତେ ଦେଶର ଯୁବକ-ମାନଙ୍କୁ ଆହ୍ୱାନ କରିଥିଲେ ଏବଂ ଦେଶରେ ପ୍ରଚାର କାର୍ଯ୍ୟ କରିବେ ବୋଲି ଦେଶବାସୀଙ୍କ ନିକଟରେ ଅର୍ଥ ସାହାଯ୍ୟ ଲାଗି ଏକ ନିବେଦନ କରିଥିଲେ । ଏହିପରି ଭାବରେ କର୍ମ କରିବାରୁ ସରକାରଙ୍କର କୋପଦୃଷ୍ଟିରେ ପଡ଼ିଲେ ।

ସରକାର ଗୋପବନ୍ଧୁଙ୍କର କାର୍ଯ୍ୟ ବନ୍ଦ କରିବା ପାଇଁ ଯତ୍ନଶୀଳ ହେଲେ । ଲୋକମାନଙ୍କୁ ସଭାରେ ଯୋଗ ନ ଦେବାପାଇଁ ପ୍ରବର୍ତ୍ତାଇଲେ ଏବଂ ନାନାପ୍ରକାର ଭୟ ଦେଖାଇଲେ । ସଭାସମିତି ପଟଆର ପ୍ରଦର୍ଶନୀମାନଙ୍କରେ

ପୁଲିସ ଜଗୁଆଳି ରହି ଲୋକମାନଙ୍କୁ ଆନ୍ଦୋଳନରୁ ନିବର୍ତ୍ତ କରିବାକୁ ଲାଗିଲେ । ସେଥିରେ ଲୋକମାନଙ୍କର ଉତ୍ସାହ ନ କମିବାରୁ ସରକାରର ଦମନ ନୀତି ଆରମ୍ଭ ହେଲା । ଦେଶର ନେତାମାନଙ୍କୁ ଜବତ କରିବା ଭାବ ପୁରୀ କଟକରେ ୧୪୪ ଧାରା କାଠଗୁଣ୍ଡ ଦେବତା ସାଜେ କଲେ । ଉତ୍କଳରେ ସମସ୍ତ କାର୍ଯ୍ୟ ପଣ୍ଡ କରିବା ପାଇଁ ଗୋପବନ୍ଧୁଙ୍କ ଉପରେ କଟକରେ ପୁରୀରେ ୧୪୪ ଧାରା ଜାରିହେଲା । ସେତେବେଳେ ସରକାର ଘର ଲୋକେ ସନ୍ତୁଷ୍ଟ ନଥିଲେ । ସେମାନେ ସର୍ବଦା ଗୋପବନ୍ଧୁଙ୍କୁ ଦବାଇବାପାଇଁ ଚେଷ୍ଟା କରୁଥିଲେ । ସର୍ବଦା ଗୋପବନ୍ଧୁଙ୍କର ଛିଦ୍ର ଖୋଜି ବୁଲୁଥିଲେ । ଗୋଏନ୍ଦା ପୁଲିସଙ୍କ ଦ୍ୱାରା ଗୋପବନ୍ଧୁଙ୍କ କାର୍ଯ୍ୟମାନ ଅନୁସନ୍ଧାନ କରାଯାଉଥିଲା । ଏହିପରି ସମୟରେ "ସମାଜ" କାଗଜରେ ତା ୧୩ । ୮ । ୨୧ ରେ "ସତ୍ୟ ହୋଇଥିଲେ ସାଂଘାତିକ" ବୋଲି ଗୋଟିଏ ଲେଖା ବାହାରିଥିଲା । ସେଥିରେ ବେଗୁନିଆ (ପୁରୀ) ପୁଲିସଙ୍କ ଅତ୍ୟାଚାର ସମ୍ପର୍କରେ କେତେକ କଥା ଲେଖା ଥିଲା । ବର୍ତ୍ତମାନ ଏହି ସୁବିଧା ପାଇ ତାକୁ ମିଥ୍ୟା ବୋଲି ପ୍ରମାଣ କରି 'ସମାଜ' ସମ୍ପାଦକ ଗୋପବନ୍ଧୁଙ୍କ ନାମରେ ଦଣ୍ଡବିଧି ଆଇନର ୫୦୦ଦଫାରେ ଫୌଜଦାରୀ ମାନହାନି ମକଦ୍ଦମା ଖୋର୍ଦ୍ଧା ସବଡ଼ିଭିଜନ ମେଜେଷ୍ଟ୍ରେଟ ଅଦାଲତରେ ଦାଏର କଲେ । ଗୋପବନ୍ଧୁ ସେତେବେଳେ ପ୍ରଚାର ସର୍ବତ୍ର ବୁଲି କାର୍ଯ୍ୟ କରୁଥିଲେ । ୧୯୨୧ ମସିହା ସେପ୍ଟେମ୍ବର ତା ୨୪ରିଖରେ ସେ ଝାରସୁଗୁଡ଼ାକୁ ଯାଇ ଲୋକମାନଙ୍କୁ ହିନ୍ଦୁ ମୁସଲମାନ ମିଳନ, ସରକାରଙ୍କର ଦମନନୀତି ସଂପର୍କରେ ବହୁତ କଥା ବୁଝାଇଥିଲେ । ତା୨୫ରିଖ ସକାଳେ ସମ୍ବଲପୁରରେ ପହଞ୍ଚିଲେ । ସମସ୍ତେ ଆଶଙ୍କା କରିଥିଲେ, ଗୋପବନ୍ଧୁଙ୍କ ଉପରେ ପୁରୀ କଟକ ପରି ସେଠାରେ ୧୪୪ଧାରା ନୋଟିସ ଜାରି ହେବ, କିନ୍ତୁ ତାଙ୍କର ଦୁର୍ଭାଗ୍ୟକୁ ଜିଲ୍ଲା ହାକିମଙ୍କ ଅନୁପସ୍ଥିତି ଯୋଗେ ତାଙ୍କର ମୁଖ ବନ୍ଦ ହୋଇ ପାରି ନ ଥିଲା । ସେଠାରେ ଗୋଟିଏ ବିରାଟ ଜନତା ମଧ୍ୟରେ ସ୍ୱଦେଶୀ ପ୍ରଚାରର ସୂଚନା ଦେଇ କେତେଗୁଡ଼ିଏ ଲୁଗା ପୋଡ଼ାଇ ଥିଲେ । ଗଂଜାମ ଓ ଭିଜାଗାପଟ୍ଟମ ଏଜେନ୍ସି ସଂବଧେ ଓଡ଼ିଆ ତେଲେଙ୍ଗା ସମସ୍ୟା ତଦନ୍ତ କରି ମୀମାଂସା କରିବା ନିମନ୍ତେ

ଉଭୟ ପ୍ରଦେଶର କଂଗ୍ରେସ କମିଟି ଯେ କମିଟି ନିଯୁକ୍ତ କରିଥିଲେ, ଗୋପବନ୍ଧୁ ସେହି କମିଟିର ମେମ୍ବର ରୂପେ ତା ୨୫ । ୯ ।୨୧ ରେ ସେଠାରୁ ବରହମପୁର ଅଭିମୁଖରେ ଯାତ୍ରା କଲେ । ତା ୨୭ରିଖ ସକାଳେ କଲିକତା ଓଡ଼ିଆ ଶ୍ରମଜୀବୀମାନଙ୍କର 'ହଲିଡେମଇଦାନର' ଏକ ସଭାରେ ସଭାପତି ହୋଇ ଲୁଗା ଓ ସୂତା କାମ କରୁଥିବା ଓଡ଼ିଆ ମଜୁରିଦାରମାନଙ୍କର ଦରମା ବୃଦ୍ଧି କରିବା କାରଣ କେତେକ ପ୍ରସ୍ତାବ କରିଥିଲେ । ତା ୨୮ରିଖ ସକାଳେ ମାନ୍ଦ୍ରାଜ ଡାକଗାଡ଼ିରେ କଲିକତାରୁ ଯାଇ ବ୍ରହ୍ମପୁରଠାରେ ପହଞ୍ଚିବା କ୍ଷଣି ପୁଲିଶ କର୍ମଚାରୀମାନେ ତାଙ୍କ ଉପରେ ୧୪୪ଧାରା ନୋଟିସ ଜାରୀ କଲେ । ଆଗରୁ ଯେ ଶାନ୍ତିଭଙ୍ଗ ଆଶଙ୍କାରେ ପୁରୀ କଟକରେ ଉକ୍ତ ନୋଟିସମାନ ଜାରୀ ହୋଇଥିଲା, ଏଥିରେ ମଧ୍ୟ ସେହି କାରଣମାନ ନିର୍ଦ୍ଦେଶ ଥିଲା । ବ୍ରହ୍ମପୁରଠାରେ ଉକ୍ତ କମିଟିର କାର୍ଯ୍ୟ ଶେଷ କରି କଟକ ଫେରିଲେ । ଅକ୍ଟୋବର ତା ୨ରିଖ ଉତ୍କଳ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ଯୋଗ ଦେଇ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିକୁ ଆନ୍ଧ୍ର ଉତ୍କଳ ସମସ୍ୟା ସମାଧାନ ପାଇଁ ଏବଂ ମଧ୍ୟ ପ୍ରଦେଶର ଉତ୍କଳ ସୀମା ନିରୂପିତ ହେବା ପାଇଁ ମଧ୍ୟ ପ୍ରଦେଶର ହିନ୍ଦୀ କଂଗ୍ରେସ କମିଟିକୁ ଲେଖା ଯିବାର ପ୍ରସ୍ତାବ ଧାର୍ଯ୍ୟ କଲେ । ଆସନ୍ତା ଧନଦିଆ ଓ କୁମାର ପୂର୍ଣ୍ଣିମୀରେ ସ୍ୱଦେଶୀ ପର୍ବ ପ୍ରଚାର କରିବା ପାଇଁ, ଘରେ ଘରେ ଚରଖା ଚଳାଇବା ପାଇଁ ପ୍ରଚାର କଲେ ଏବଂ ସମସ୍ତେ ସ୍ୱଦେଶୀ ଖଦଡ଼ ପିନ୍ଧିଲେ ଏକା ମହାତ୍ମା ଗାନ୍ଧିଙ୍କର ଜୟ ହେବ ଏବଂ ଦେଶରେ ସ୍ୱରାଜ୍ୟର ଜୟ ପତାକା ଉଡ଼ିବ: ଏହି ବିଶ୍ୱାସରେ ଉତ୍କଳର ଭାଇ ଭଉଣୀମାନଙ୍କ ପ୍ରତି ଏକ ନିବେଦନ କଲେ ।

## ୧୯

ସନ ୧୯୨୧ ମସିହା ଅଗଷ୍ଟ ମାସ ତା ୧୩ରିଖରେ "ସମାଜ"ରେ 'ସତ୍ୟ ହୋଇଥିଲେ ସଂଘାତକ' ଶୀର୍ଷକ ଲେଖାର ପ୍ରତିବାଦ କରି ତା ୨୭।୮।୨୧ରେ ଗୋପବନ୍ଧୁ ତାର ସତ୍ୟାସତ୍ୟ ଘଟଣା ବୁଝି ଦେଶବାସୀଙ୍କୁ

ଜଣାଇବା ପାଇଁ ପ୍ରକାଶ କରିଥିଲେ । ମାତ୍ର ସରକାରୀ କର୍ମଚାରୀମାନଙ୍କ ପ୍ରରୋଚନାରେ କେତେଜଣ କନଷ୍ଟେବଲ ଗୋପବନ୍ଧୁଙ୍କ ନାମରେ ଯେଉଁ ମକଦ୍ଦମା ଆଣିଥିଲେ ତାହା ଆଗରୁ କୁହା ଯାଇଅଛି । ଉକ୍ତ ମକଦ୍ଦମା ବିଚାର ପାଇଁ ୧୯୨୧ ମସିହା ଅକ୍ଟୋବର ମାସ ତା୨୮ରିଖ ଧାର୍ଯ୍ୟ ଥିଲା । ଖୋର୍ଦ୍ଧାର ଡ୍ରିଷ୍ଟ୍ର ଅଫିସର ବାବୁ ସୁରେଶ ଚନ୍ଦ୍ର ଘୋଷଙ୍କ ମହକୁମାରେ ଏହାର ବିଚାର ହୋଇଥିଲା । ସେ ଦିନ ପ୍ରାୟ ୧୨ଟା ବେଳେ ଗୋପବନ୍ଧୁ ଯାଇଁ କୋର୍ଟରେ ହାଜର ହେଲେ । ସେତେବେଳକୁ ପୁରୀଜିଲାର ଚାରିଆଡ଼ୁ ପ୍ରାୟ ତିନିହଜାର ଲୋକ ଜମା ହୋଇଥିଲେ । ମୁଦେଇମାନଙ୍କ ପକ୍ଷରୁ ପୁରୀର କୋର୍ଟ ଇନସ୍ପେକ୍ଟର ଯାଇ ମକଦ୍ଦମା ଚଳାଇଥିଲେ । ଗୋପବନ୍ଧୁ ଅସହଯୋଗ ଧର୍ମ ପାଳନ କରି ମୁଦେଇ ତରଫର ସାକ୍ଷୀମାନଙ୍କୁ ଜେରା କରି ନଥିଲେ । ଅନ୍ୟାନ୍ୟ ସାକ୍ଷୀମାନଙ୍କ ମଧ୍ୟରେ ପୁରୀର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବ ଜଣେ ପ୍ରଧାନ ସାକ୍ଷୀ ଥିଲେ । ସେ ତାଙ୍କ ମୁହଁରେ ମାନିଲେ ଯେ, ଏ ମକଦ୍ଦମା ତାଙ୍କର ପ୍ରସ୍ତାବ ଅନୁଯାୟୀ ଦାଏର କରା ଯାଇଥିଲା । ସେ ଦିନ ୪ଟା ବେଳେ ମକଦ୍ଦମା ୯ ତାରିଖକୁ ଧାର୍ଯ୍ୟ ହେଲା । ହାକିମ ଗୋପବନ୍ଧୁଙ୍କୁ ଜାମିନ କମ୍ବା ମୁଚୁଲ୍‌କାରେ ଯିବା ସକାଶେ କହିବାରୁ ଗୋପବନ୍ଧୁ କହିଲେ "ମୁଁ ଅସହଯୋଗୀ, ଧର୍ମତଃ ଜାମିନି ଦେଇ ନାହିଁ । ମୋ କଥାରେ ବିଶ୍ୱାସ ହୁଏ ତ ଛାଡ଼ି ଦିଅନ୍ତୁ, ନୋହିଲେ ମୁଁ ହାଜତ ଯିବାକୁ ତିଆର ଅଛି ।" ହାକିମ କଥାରେ ବିଶ୍ୱାସ କରି ଛାଡ଼ିବା ସରକାର ଘର ଆଇନରେ ଅଛି କି ନାହିଁ ଦେଖି ଘଣ୍ଟାଏ ପରେ ଜବାବ ଦେଲେ ଯେ, ଗୋପବନ୍ଧୁଙ୍କୁ ଜାମିନ ଦେବାକୁ ହେବ । ସେ କଥା ଗୋପବନ୍ଧୁଙ୍କୁ ଜଣାଇ ପୁରୀର ଓକିଲ ବାବୁ ବନମାଳୀ ଦାସ ତାଙ୍କର ବିନା ଅନୁମତିରେ ଜାମିନ [illegible] ଗୋପବନ୍ଧୁଙ୍କୁ ଖଲାସ ଆଣିଲେ । ସେଥିରେ ଗୋପବନ୍ଧୁ ବିରକ୍ତ ହୋଇ ହା[illegible]ଖରେ ନିଜେ ହାଜତରେ ରହିବା ପାଇଁ ଜବାବ ଦେଲେ । ସେଠାରୁ ଗୋପବ[illegible]ବସି ହାଜତ ଗଲେ । ପ୍ରାୟ ୨୦୦୦ ଲୋକ ସଂକୀର୍ତ୍ତନ ପଟୁଆରରେ ନେଇ [illegible] ଜେଲଖାନା ଦୁଆରରେ ଛାଡ଼ିଦେଇ ଆସିଲେ । ତା ୯ ରିଖ ୩ଟା ବେଳକୁ ମକଦ୍ଦମା

ପଡ଼ିଲା । ପ୍ରାୟ ୭।୮ ହଜାର ଲୋକ ଉପସ୍ଥିତ ଥିଲେ । ଗୋପବନ୍ଧୁ ଜେଲଖାନାରୁ କଚେରୀକୁ ଆସିଲାବେଳେ ଫାଟକଠାରୁ ଲୋକେ ତାଙ୍କୁ ପଟୁଆରରେ ଆଣିଥିଲେ । ଚାରିଆଡେ ପୁଷ୍ପ ବୃଷ୍ଟି ହେଉଥିଲା । ସମସ୍ତଙ୍କ ମୁହଁରେ'ମହାତ୍ମାଗାନ୍ଧିଙ୍କ ଜୟ'ଓ'ହରିବୋଲ' ଶବ୍ଦ ଶୁଣା ଯାଉଥିଲା । ଗୋପବନ୍ଧୁ କଚେରୀ ଅଗଣାରେ ପହଞ୍ଚିଲେ ବେଳେ ଚାରିଆଡ଼ ଜନତାରେ ଉଚ୍ଛୁଳି ପଡ଼ୁଥିଲା । ସମସ୍ତେ ଗୋପବନ୍ଧୁଙ୍କର ମକଦ୍ଦମା ଖବର ଶୁଣିବାକୁ ବ୍ୟାକୁଳ ଥିଲେ । ଗୋପବନ୍ଧୁ ହାକିମଙ୍କ ପାଖରେ ପ୍ରସ୍ତାବ କଲେ ଯେ,ଗୋଳ-ମାଳ ବନ୍ଦ କରିବା ପାଇଁ ଓ ଲୋକମାନଙ୍କୁ ଶାନ୍ତ ରଖିବା ପାଇଁ କଚେରୀ ପଡ଼ିଆର ଗଛମୂଳେ ବସୁ । ହାକିମ ଏ ପ୍ରସ୍ତାବ ମଂଜୁର କଲେ ଓ ଅଦାଲତ ହତା ଅଗଣା ଗଛ ମୂଳେ ବସିଲା । ଗୋଳମାଳ ହେବା ଦେଖି ଗୋପବନ୍ଧୁ ବେଞ୍ଚଉପରେ ଠିଆ ହୋଇ ଲୋକମାନଙ୍କୁ କହିଲେ, ''ଆପଣମାନେ ଶାନ୍ତିପୂର୍ଣ୍ଣ ଅସହଯୋଗ ଧାରା ଗ୍ରହଣ କରିଛନ୍ତି । ଯଦି ଗୋଳମାଳ ବନ୍ଦ ନ କରନ୍ତି ଓ ସ୍ଥିରଭାବରେ ନ ବସନ୍ତି,ତେବେ ନିନ୍ଦା ହେବ ।'' ଚାରିଆଡ଼ ନୀରବ ନିସ୍ତବ୍ଧ ହୋଇଗଲା । ସେ ଦିନ କେତେଜଣ ପୁଲିଶଙ୍କ ପକ୍ଷରୁ ସାକ୍ଷ ନିଆଗଲା । ମକଦ୍ଦମା ପୁଣି ତା୧୭ରିଖକୁ ତାରିଖ ହେଲା । ଏହିଦିନ ମଧ୍ୟ ଗୋପବନ୍ଧୁଙ୍କୁ ଫୁଲମାଳ ଦେଇ ପଟୁଆରରେ ଜେଲଖାନାରେ ଛାଡ଼ି ଦେଇ ଆସିଲେ । ସେ ଦିନ ମଧ୍ୟ ଖୋର୍ଦ୍ଧାରେ ଏକ ବିରାଟ ସଭା ହୋଇଥିଲା । ପଣ୍ଡିତ ନୀଳକଂଠ ଦାସ ଓ ପ୍ରସ୍ତାବକ ଅନନ୍ତ ମିଶ୍ର ପ୍ରଭୃତି ଅସହଯୋଗର ବାର୍ତ୍ତାମାନ ଲୋକଙ୍କୁ ଦେଇଥିଲେ । ସେ ଦିନ ଗାଇସ ସାହେବ ଅନନ୍ତମିଶ୍ରଙ୍କ ଉପରେ ୧୪୪ ଧାରା ମୁଖବନ୍ଦ ନୋଟିସ ଦୁଇମାସ ପାଇଁ ଜାରି କଲେ । ତା୧୭ରିଖ ଦିନ ପୁଣି ମକଦ୍ଦମା ପଡ଼ିଲା । ଏଥର କଚେରୀ ହତା ପଡ଼ିଆରେ ବସି ନ ଥିଲା ... ସାକ୍ଷୀମାନଙ୍କ ମଧ୍ୟରୁ କେତେକ ସମାଜ ଅକ୍ଷର ଚିହ୍ନି ... ପଢ଼ି ପାରି ସାତ ମିନିଟ ବିତିଗଲା । ଶେଷରେ ୫୦୦ଦଫା ... ରେ ଗୋପବନ୍ଧୁଙ୍କ ଉପରେ ମକଦ୍ଦମା ଗୃହୀତ ହେଲା । ଗୋପବନ୍ଧୁଙ୍କୁ ଜବାବ ମାଗିବାରେ ସେ ମନା କଲେ । ତା୨୧ରିଖରେ ରାୟ ଦିଆଯିବବୋଲି ହୁକୁମ ବାହାରିଲା, ଏହିଦିନପ୍ରାୟ ୧୦ହଜାରଲୋକ ରୁଣ୍ଡ ହୋଇଥିଲେ;ଅନ୍ୟ ଥରପରି ଜୟଧ୍ୱନି ଓ ପଟୁଆରରେ

ଗୋପବନ୍ଧୁଙ୍କର ଜେଲଖାନାକୁ ଯିବା ପରେ ଗୋଟିଏ ସଭା ହୋଇଥିଲା । ତା୨୧ରିଖ ଦିନ ସେହିପରି ଏକ ବିରାଟ ଜନତା ମଧ୍ୟରେ ଗୋପବନ୍ଧୁ କଚେରୀକୁ ଅଣା ହୋଇଥିଲେ । ହାକିମ ଗୋପବନ୍ଧୁଙ୍କୁ ସମୁଦାୟ ରାୟଟା ପଢ଼ିବେ କି ନାହିଁ ବୋଲି ପଚାରିବାରୁ ଗୋପବନ୍ଧୁ କହିଲେ, "ଲୋଡ଼ା ନାହିଁ, କେବଳ ଶେଷ କଥାଟା କହି ଦିଅନ୍ତୁ ।" ବଡ଼ ଆଶ୍ଚର୍ଯ୍ୟର କଥା, ଗୋପବନ୍ଧୁ ୫୦୦ ଦଫାରେ ଦୋଷୀ ନୁହନ୍ତି ବୋଲି କହି ହାକିମ ଖଲାସ ଦେଲେ । ଗୋପବନ୍ଧୁ ପୁଷ୍ପ ବୃଷ୍ଟି ଓ ଜୟଧ୍ୱନି ମଧ୍ୟରେ ଜେଲଖାନା ପାଖ ପଡ଼ିଆକୁ ଆସିଥିଲେ । ସେଠାରେ ସେ ଜନସାଧାରଣଙ୍କର ସ୍ନେହ ଓ ଧୈର୍ଯ୍ୟ ସକାଶେ ଧନ୍ୟବାଦ ଦେଇଥିଲେ । ଖୋର୍ଦ୍ଧାର ପୂର୍ବଇତିହାସ ବର୍ଣ୍ଣନା କରି ଖୋର୍ଦ୍ଧା-ବାସୀଙ୍କୁ ବିଶେଷ ଉତ୍ସାହ ଦେଇଥିଲେ । ସେ ଯେତେବେଳେ ଲୋକଙ୍କର ତାଙ୍କପ୍ରତି ସ୍ନେହ ମମତା କଥା ବର୍ଣ୍ଣନା କଲେ, ସମସ୍ତଙ୍କ ଆଖିରୁ ଲୁହ ଧାର ଧାର ଗଡ଼ି ପଡ଼ିଲା । ଗୋପବନ୍ଧୁ ଲୋକସାଧାରଣଙ୍କୁ ଅରଟରେ ସୂତା କାଟି ସ୍ୱରାଜ୍ୟଲାଭ କାରଣ ବୁଝାଇଥିଲେ । ସଭା ମଉଳିଲା ପରେ ସେ ପଟୁଆରରେ ସହରର ଚାରିଆଡ଼େ ବୁଲିଥିଲେ । ତା୨୨।୧୧।୨୧ ଦିନ ୩ଟା ଗାଡ଼ିରେ ଖୋର୍ଦ୍ଧାରୁ ପୁରୀ ଯିବା ସମୟରେ ଡେଲାଙ୍ଗ ଓ ସାକ୍ଷିଗୋପାଳ ଷ୍ଟେସନରେ ତାଙ୍କୁ ଫୁଲମାଳ ଦେଇ ଲୋକମାନେ ଅଭ୍ୟର୍ଥନା କରିଥିଲେ । ପୁରୀର ଜନ-ସାଧାରଣ ପ୍ରାୟ ପାଞ୍ଚହଜାର ସରିକି ତାଙ୍କୁ ପଟୁଆରରେ ଜଗନ୍ନାଥ ଦର୍ଶନକୁ ନେଇ ଯାଇଥିଲେ । ସେଠାରୁ ଫେରି ସମୁଦ୍ର କୂଳରେ ଏକ ସଭା ହୋଇଥିଲା

ଖୋର୍ଦ୍ଧାରୁ ଫେରିବା ପରେ ତାଙ୍କର ଆଉ ବିଶ୍ରାମ ନ ଥିଲା । ନଭେମ୍ବର ତା୨୯ରିଖରେ ପୁରୀ ଚାଉଳ ରପ୍ତାନି ବିଷୟରେ ପୁରୀ ଦାଣ୍ଡ ଚଉରାଠାରେ ହୋଇଥିବା ସାଧାରଣ ସଭାରେ ଯେଉଁ ସବ୍ କମିଟି ଗଠାହୋଇଥିଲା ଗୋପ-ବନ୍ଧୁ ତହିଁର ସଭ୍ୟ ରହିଲେ । ଜିଲ୍ଲା ବାହାରକୁ କେବେ ଚାଉଳ ବା ଅନ୍ୟ କୌଣସି ଶସ୍ୟ ରପ୍ତାନି ହେବ କି ନ ହେବ, ଜିଲ୍ଲାର ଅବସ୍ଥା ଦୃଷ୍ଟିରେ ସୁବିଧା ଅସୁବିଧା ବିବେଚନା କରି ଏହି କମିଟି କାର୍ଯ୍ୟ କରିବେ ବୋଲି ସ୍ଥିର ହୋଇଥିଲା । ସେହି ମାସ ଶେଷକୁ କଟକଠାରେ ଉତ୍କଳ ପ୍ରାଦେଶିକ

କଂଗ୍ରେସ କମିଟିର ବୈଠକରେ ସଭାପତି ଥାଇ ଅହମଦାବାଦ କଂଗ୍ରେସକୁ ବନ୍ଧୁସଂଖ୍ୟାରେ ପ୍ରତିନିଧି ଯିବାପାଇଁ ସ୍ଥିର କଲେ । କଟକ ଜିଲାର ବାଙ୍କି ଖାସମାହାଲରେ ଗୋପବନ୍ଧୁ ରାଜଦ୍ରୋହ ପ୍ରଚାର କରିବା ଆଶଂକାରେ କଟକ ଜିଲା ମେଜେଷ୍ଟ୍ରର ତାଙ୍କଉପରେ ୧୪୪ଧାରା ଜାରି କଲେ । ୧୯୨୧ ଡିସେମ୍ବର ତା୧୦ଶରେ ଓଡ଼ିଶାର ଭିନ୍ନ ଭିନ୍ନ ଜିଲାର ସଦର ମଫସଲ ସ୍ୱରାଜ୍ୟାଶ୍ରମ,କଂଗ୍ରେସଅଫିସ,କଂଗ୍ରେସକମିଟିଅଫିସମାନ ଖାନତଲାସହୋଇ ଥିଲା । ସତ୍ୟବାଦୀଇସ୍କୁଲରେଗୋପବନ୍ଧୁଙ୍କରହିବାଘରଦ୍ୱାରରେ ରାତର ପାଉଣ୍ଡ ସେ ଦିନ ମେଜେଷ୍ଟ୍ରର,ପୁଲିସ ସାହେବ ଓ କନଷ୍ଟେବଲମାନେ ଲମ୍ବା ଲାଠିମାନ ଧରି ସାଜସଜ୍ଜାରେ ଉପସ୍ଥିତ ହୋଇ ତାଙ୍କଘର ଖାନତଲାସକରିବା ସଙ୍ଗେସଙ୍ଗେ ଗ୍ରନ୍ଥ ବାସର ଅନ୍ୟାନ୍ୟ କୋଠରିମାନ ତଲାସ କଲେ । ତାଙ୍କ ଘର ତଲାସ ଲାଗିଥାଏ, ତାଙ୍କର ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିବାର ଥିବାରୁ ପୁଲିସଙ୍କ ମାରଫତ ଘର ଛାଡ଼ିଦେଇ ସେ କଟକ ଗଲେ । କଟକରେ ସ୍ୱରାଜ୍ୟାଶ୍ରମ ଓ ପ୍ରାଦେଶିକ କମିଟି ଅଫିସରେ ମଧ୍ୟ ସେହି ଘଟଣା ଶୁଣିଲେ । ପୁଲିସ ଫୌଜ ଶସ୍ତ୍ର ସୁସଜ୍ଜିତ ହୋଇ ଆସିଥିଲେ । ଓଡ଼ିଶାର ସବୁ ଜିଲା ସବଡିଭିଜନ ସଦର ଓ ପଲ୍ଲୀ ଗ୍ରାମମାନଙ୍କରେ ଏହିପରି ଘଟିଥିବାର ଟେଲିଗ୍ରାମ ଓ ଚିଠି ପାଇଲେ । କୌଣସିଠାରେ ଶାନ୍ତି ଭଙ୍ଗ ଯେପରି ନହୁଏ କର୍ମୀମାନଙ୍କୁ ଉପଦେଶ ଦେଲେ ଏବଂ ଉତ୍କଳର ନର ନାରୀ ଓ ଛାତ୍ର ସମାଜକୁ ଏହି ଅସହଯୋଗ ଧର୍ମଯୁଦ୍ଧରେ ଶତ ଶତ ସହସ୍ର ସହସ୍ର ଦଳ ହୋଇ ଯୋଗ ଦେବାକୁ ଆହ୍ୱାନ କଲେ; କହିଲେ, ଏହା ଜାତିର ଆହ୍ୱାନ, ଏହା ଦେଶର ଡାକ । ବଡ଼ ବଡ଼ ନେତା ଓ କଂଗ୍ରେସ କର୍ମୀମାନେ ବନ୍ଦୀ ହେବାପରେ ଏବଂ ନାନା ପ୍ରକାର ଦମନନୀତି ସରକାର ପ୍ରୟୋଗ କରିବା ସ୍ଥଳେ ଅନ୍ୟମାନେ ନିଷ୍କ୍ରିୟ ରହିବା ଅନୁଚିତ ଓ ଅସୁନ୍ଦର ବୋଲି ସେ ମନେ କରିଥିଲେ । ଏତେବେଳେ ଆଉ ବିଚାର ନକରି ଶାନ୍ତି ମନ୍ତ୍ର ଘେନି ସ୍ୱଦେଶୀ ଆୟୁଧ ଧରି ସ୍ୱରାଜ୍ୟ ଫଳଲାଭ ପାଇଁ ଏହି କୁରୁକ୍ଷେତ୍ର ଧର୍ମକ୍ଷେତ୍ରକୁ ଧାଇଁ ଆସିବା ପାଇଁ ସେ ଉତ୍କଳବାସୀଙ୍କ ନିକଟରେ ସବିନୟ ନିବେଦନ କରିଥିଲେ । ଡିସେମ୍ବରଶେଷସପ୍ତାହରେ ଗୋପବନ୍ଧୁ ଅହମଦାବାଦ କଂଗ୍ରେସକୁ

ଯାଇଥିଲେ । କଂଗ୍ରେସରୁ ଫେରି ୧୯୨୨ ଜାନୁଆରୀ ତା୧୧ ରେ କଟକ କାଠଯୋଡ଼ୀ ବାଲିରେ ଅହ୍ମଦାବାଦ କଂଗ୍ରେସରେ ନିର୍ଦ୍ଧାରିତ ହୋଇ-ଥିବା ବିଷୟ ପ୍ରସଙ୍ଗରେ କେତେକ କଥା ସେ କହିବେ ବୋଲି ଆଗରୁ ନୋଟିସ ଦିଆ ଯାଇଥିଲା । ମାତ୍ର ତା୯ଂ ରିଖ ଠାରୁ ତାଙ୍କ ଉପରେ ୧୪୪ ଧାରା ନୋଟିସ ଜାରୀ ହେଲା । ତହିଁରେ ସେ ସାଧାରଣ ସଭାରେ ବକ୍ତୃତା ଦେଇ ପାରିବେ ନାହିଁ କି ଉପସ୍ଥିତ ହୋଇ ପାରିବେ ନାହିଁ ବୋଲି ଲେଖା ଥିଲା । ଗୋପବନ୍ଧୁ ଉକ୍ତ ସଭାକୁ ତା୧୧ରିଖ ଦିନ ତାଙ୍କର ଲିଖିତ ସନ୍ଦେଶ ପଠାଇଲେ । ଉପସ୍ଥିତ ଲୋକେ ସେଥିରୁ ଅନେକ ଖଣ୍ଡ ମଧ୍ୟ କିଣି ନେଇ ଥିଲେ । କଟକ ଜିଲା ମେଜେଷ୍ଟ୍ରର ବୋଧ ହୁଏ ଅପମାନ ବୋଧ କଲେ । ୧୩ ତାରିଖ ଦିନ ପୁଣି ୧୪୪ ଧାରା ହୁକୁମ ଆସିଲା ଯେ ଲିଖିତ ବକ୍ତୃତା ସୁଦ୍ଧା ସେ ଦେଇ ପାରିବେ ନାହିଁ । ସେଠାରୁ ସିଂହଭୂମି ଗଲେ । ସିଂହଭୂମିରେ ପହଞ୍ଚିଲା ବେଳକୁ ସେଠା ଖୋଦ ମାଲିକ ନ ଥିଲେ । ବୃକୁଲିଆ ଓ ଜାମ-ସେଦପୁରରେ ସଭା କାର୍ଯ୍ୟ ଶେଷ କରି କୋଲାହାନକୁ ଯିବା ବାଟରେ ଜିଲାର ଅସ୍ଥାୟୀ ହାକିମଙ୍କ ସଂଗେ ଦେଖା କରିବା ପାଇଁ ଖଣ୍ଡେ ପତ୍ର ପାଇଲେ । ହାକିମଙ୍କ ପାଖକୁ ଗଲେ । ହାକିମ ଆଶଂକା କରିଥିଲେ ଯେ, ଖଜଣା ବନ୍ଦ କରିବା ବିଷୟରେ ଏଥର ଗୋପବନ୍ଧୁ ଲୋକଙ୍କୁ ପ୍ରବର୍ତ୍ତାଇବେ । କିନ୍ତୁ ଗୋପବନ୍ଧୁଙ୍କର ବା କଂଗ୍ରେସର କାର୍ଯ୍ୟ ସେତେବେଳେ ତାହା ନ ଥିଲା । ଅନ୍ୟ କେହି ତାଙ୍କ ଆଗେ ଏଥିର ପ୍ରସ୍ତାବ ଉଠାଇଥିଲେ ସେ ବୋଧହୁଏ ମନା କରିଥାନ୍ତେ । ସ୍ୱଦେଶୀ ମାଦକ ନିବାରଣ ଆଦି ଅସହ-ଯୋଗର କାର୍ଯ୍ୟମାନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଏହି ଦେଖା କରିବା ମଧ୍ୟରେ ହାକିମ ତାଙ୍କ ଉପରେ ୧୪୪ ଧାରା ଜାରି କରିବାର ଖୁବ୍ ଉଦ୍ୟମରେ ଥିଲେ; କିନ୍ତୁ ହୋଇ ପାରି ନ ଥିଲା । ଗୋପବନ୍ଧୁ କୋଲହାନ ଗଲେ । ସେଠାରେ ସମସ୍ତ ସିଂହଭୂମି ପ୍ରତି ୧୪୪ଧାରା ଜାରିହେଲା । ହୁକୁମ ପହଞ୍ଚିଲା ବେଳକୁ ଗୁଇଁବାସାରୁ ୩ଂମାଇଲ ଦୂରବର୍ତ୍ତୀ କୋଲହାନ ଅନ୍ତର୍ଗତ ଜଗନ୍ନାଥପୁରଠାରେ ସେ ତାଙ୍କ କାର୍ଯ୍ୟ ଶେଷ କରି ଫେରୁଥିଲେ । ଜଗନ୍ନାଥପୁର ସଭାରେ ବିଲାତି ଲୁଗା ବହୁତ ପୋଡ଼ା ହୋଇଥିଲା । ହୁକୁମ

ପାଇ ସୋନୁଆ ସଭାରେ ସେ ଯୋଗ ଦେଇ ପାରି ନ ଥିଲେ । ତାଙ୍କର ସନ୍ଦେଶ ପଢା ଯାଇଥିଲା । ବହୁତ ବାଲାବାଲୁଗା ପୋଡ଼ା ହୋଇଥିଲା । ତାଙ୍କର ସିଂହଭୂମି ରହଣି ଭିତରେ ଆଦିମ ଅଧିବାସୀ ହୋ, ଭୂମିଜ, କୋଲ୍ହ ଓ ସାନ୍ତାଳମାନେ ଏବଂ ଜାମସେଦପୁରରେ ଟାଟା କଂପାନୀଙ୍କ କର୍ମଚାରୀ ଓ ମଜୁରିଆ ଶିଖ, ବଙ୍ଗାଳି, ଓଡ଼ିଆ, ପଞ୍ଜାବୀ, ତେଲଙ୍ଗା ନାନାଜାତିର ଲୋକେ ବିଶେଷ ଆଗ୍ରହ ଓ ଉତ୍ସାହ ଦେଖାଇଥିଲେ । ସବୁଠାରେ ସ୍ୱଦେଶୀ ଓ ସ୍ୱେଚ୍ଛାସେବକ ଦଳ ବିଷୟରେ ଜୋର କରି କହୁଥିଲେ । ସେଠାରୁ ଯାଇ ସମ୍ବଲପୁର ଜିଲ୍ଲାର ଝାରସୁଗୁଡ଼ାରେ ତା୨୦ରିଖ ସକାଳେ ପହଞ୍ଚିଲେ । ଝାରସୁଗୁଡ଼ା ସମ୍ବଲପୁର ବରଗଡ଼, ଏହି ତିନି ସ୍ଥାନରେ କେବଳ କଂଗ୍ରେସ, ମେମ୍ବରଙ୍କର ସଂମିଳନୀ ହେବାର ପୂର୍ବରୁ ନୋଟିସ ଦିଆ ଯାଇଥିଲା । ଏହା ବନ୍ଦ କରିବା କାରଣ ଜିଲ୍ଲା ସାହେବ ୧୪୪ଧାରା ହିସାବରେ ସାଧାରଣ ହୁକୁମ ଜାରି କରିଥିଲେ । ତା ପରେ ତାଙ୍କ ଉପରେ ସ୍ୱତନ୍ତ୍ରଭାବରେ ଝାର-ସୁଗୁଡାଠାରେ ୧୪୪ ଧାରା ଜାରିହେଲା । ତାଙ୍କ ଲିଖିତ ବକ୍ତୃତା ପ୍ରତ୍ୟେକ ସଭାରେ ପଢ଼ା ଯାଉଥିଲା । ସମ୍ବଲପୁରରୁ ବାହୁଡ଼ିବାବେଳେ ବାଲେଶ୍ୱରରେ ଗୋପବନ୍ଧୁଙ୍କର ଓହ୍ଲାଇବାର ନ ଥିଲା । ତଥାପି ବାଟ ଜଗି ବାଲେଶ୍ୱର ଜିଲ୍ଲା ହାକିମଙ୍କ ୧୪୪ଧାରା ହୁକୁମ ରେଳଗାଡ଼ି ଭିତରେ ତାଙ୍କ ଉପରେ ଜାରି କରା ଯାଇ ଥିଲା । ଏହିପରି ତାଙ୍କୁ ଜବତ କରିବା ଲାଗି ଦେଶର ଭିନ୍ନ ଭିନ୍ନ ସ୍ଥାନରେ ସରକାର ତରଫରୁ ଉତ୍ପାତ ଓ ଅତ୍ୟାଚାର ହୋଇଥିଲା । ସେ ଉତ୍କଳର ଯେ ସବୁ ସ୍ଥାନକୁ ଯାଉଥିଲେ,ସେଠାରେ ୧୪୪ଧାରା ଅସ୍ତ୍ର ପ୍ରୟୋଗ ହେଉଥିଲା । ଯାହାହେଉ, ତାଙ୍କଠାରେ ଯେ ଶକ୍ତି ନିହିତ ଥିଲା, ସେ ଯେଉଁ ଶକ୍ତିରେ ଶକ୍ତିଶାଳୀ ହୋଇଥିଲେ, ସେ ଶକ୍ତି ଦବିବାର ଶକ୍ତି ନୁହେ ।

ଏହାପରେ ପୁଣି୧୯୨୨ ଫେବୃୟାରିରେ ପୁରୀ ପ୍ରଦେଶ ଉତ୍କଳ ପ୍ରାଦେଶିକ କମିଟିର ବୈଠକ ହେବାରୁ ଗୋପବନ୍ଧୁ ଓ ଆଉ ୯ ଜଣଙ୍କ ଉପରେ ୧୪୪ ଧାରା ଚାଲିଲା । ଏହିପରି ଚାଲିଥିଲା । ସେ ଜିଲ୍ଲା କଂଗ୍ରେସ କମିଟି, ସବଡିଭିଜନ କଂଗ୍ରେସ ମେମ୍ବର ସଂମିଳନୀ, ପ୍ରାଦେଶିକ

କଂଗ୍ରେସକମିଟି ଓ ନିଖିଳ ଭାରତ କଂଗ୍ରେସ କମିଟି ପ୍ରାଦେଶିକ ସମ୍ମିଳନୀ,ଉକ୍ତ ସଂମିଳନୀରେ ଉପସ୍ଥିତ ଥାଇ କଂଗ୍ରେସର ଆଦେଶ ମାନ ନିଜ କର୍ତ୍ତବ୍ୟ କରୁଥିଲେ । ଉତ୍କଳରେ ଗାନ୍ଧି ଦିବସ ପାଳି ସ୍ୱରାଜ୍ୟ ନିମନ୍ତେ କିଛି କିଛି ଉତ୍ସର୍ଗ କରିବାକୁ ଲୋକମାନଙ୍କୁ ପ୍ରବର୍ତ୍ତାଉଥିଲେ । କଂଗ୍ରେସ ମେମ୍ବର ହେବାକୁ ଲୋକଙ୍କୁ ବୁଝାଉ ଥିଲେ । ଦେଶବାସୀଙ୍କ ଆଗରେ ଭାରତର ବର୍ତ୍ତମାନ ଅବସ୍ଥା, ସ୍ୱଦେଶୀ ସମ୍ବନ୍ଧ ଆଦି ନେଇ ବକ୍ତୃତାରେ ଓ ଖବରକାଗଜମାନଙ୍କରେ କହୁଥିଲେ । ମହାତ୍ମା ଗାନ୍ଧିଙ୍କ ଗିରଫ୍‌ଦାରିରେ କୌଣସି ପ୍ରକାର ଶାନ୍ତିଭଙ୍ଗ ନ ହୋଇ ସଂଗଠନ କାର୍ଯ୍ୟ ଦୃଢ଼ଗତିରେ ଚଳାଇବା ପାଇଁ ଯଥାସାଧ୍ୟ ଲାଗିଥିଲେ ।

ଇତିମଧ୍ୟରେ ଖୋର୍ଦ୍ଧାରେ ହୋଇଥିବା ମାନହାନି ମକଦ୍ଦମାର ଅପିଲ୍ ସରକାର ତରଫରୁ ପାଟଣା ହାଇକୋର୍ଟରେ ହୋଇଥିଲା, କିନ୍ତୁ ଫଳରେ କିଛି ହେଲା ନାହିଁ । ଉକ୍ତ ମକଦ୍ଦମା ସମ୍ପର୍କରେ ବିହାରର 'ସର୍ଚ୍ଚଲାଇଟ'କଲିକତାର 'ଅମୃତବଜାର' ପ୍ରଭୃତି ଭାରତର ପ୍ରଧାନ ପ୍ରଧାନ ଖବରକାଗଜମାନେ ବିହାର ଓଡ଼ିଶା ସରକାରଙ୍କ ନିନ୍ଦାବାଦ କରିଥିଲେ ।

ଗୋପବନ୍ଧୁ ତ୍ୟାଗୀ ଲିଙ୍ଗରାଜଙ୍କୁ ସଙ୍ଗରେ ଘେନି ବମ୍ବେଇ ଯାଇଥିଲେ । ସେଠାରେ Servants of India Society ବା ଭାରତ ସେବକ ସମାଜର ଆତିଥ୍ୟ ଗ୍ରହଣ କରିଥିଲେ । ଏମାନଙ୍କ ଅବସ୍ଥାନ ଫଳରେ ବମ୍ବେଇର ଲୋକଙ୍କ ମଧ୍ୟରେ ଓଡ଼ିଶା କଥା ଟିକିଏ ଉଠିଥିଲା । ସ୍ଥାନୀୟ ଇଂରାଜ ଓ ଦେଶୀୟ ପତ୍ରିକା ମାନେ ଓଡ଼ିଶା ଓ ସତ୍ୟବାଦୀଇସ୍କୁଲ ବିଷୟରେ ଅନେକଥର ଲେଖିଥିଲେ । ସେଠାରେ ସମାଜର ସଭା ଭବନରେ ଗୋପବନ୍ଧୁ ଓଡ଼ିଶା ଓ ତାହାର ଶିକ୍ଷା ସମସ୍ୟା ବିଷୟରେ ଇଂରାଜରେ ଏକ ବକ୍ତୃତା ଦେଇଥିଲେ । ଓଡ଼ିଶାର ରାଜନୈତିକ ଏବଂ ଆର୍ଥିକ ଅବସ୍ଥା ବର୍ଣ୍ଣନା କରି ସେ ବୁଝାଇଥିଲେ ଯେ, ଇଂରାଜ ଶାସନରେ ଓଡ଼ିଆମାନେ ଘରଗୋଟି

ବିଭିନ୍ନ ପ୍ରଦେଶରେ ଛିନ୍ନ ବିଚ୍ଛିନ୍ନ ହୋଇ ରହି ଯେପରି ହୀନବଳ ହୋଇ ଅଛନ୍ତି ଏବଂ ବନ୍ୟା ଓ ଦୁର୍ଭିକ୍ଷ ଦୁଃଖରେ ଯେପରି ମରୁଛନ୍ତି; ସେଥିରେ ଓଡ଼ିଆଜାତି ଯେ ଏପର୍ଯ୍ୟନ୍ତ ବଞ୍ଚି ରହିଛି, ଏହାହିଁ ଆଶ୍ୱାସନାର ବିଷୟ । ଆଧୁନିକ ଶିକ୍ଷା ପ୍ରଣାଳୀ ସଂବଂଧରେ ସେ କହିଥିଲେ ଯେ, ନାନା ବିଷୟରେ ଭାରତର ବାଳକବାଳିକାମାନଙ୍କ ପକ୍ଷରେ ବିଶେଷତଃ ଓଡ଼ିଶାର ଅବସ୍ଥାଦୃଷ୍ଟିରେ ଓଡିଆଙ୍କ ପ୍ରତି ଏହା ନିତାନ୍ତ ଅନୁପଯୁକ୍ତ । ଏହି ଶିକ୍ଷା ପ୍ରଣାଳୀରେ ପରିବର୍ତ୍ତନ ଆଣିବାପାଇଁ ସେ ଏବଂ ତାଙ୍କର ସହକର୍ମୀ ଉତ୍କଳଯୁବକମାନେ ଏ ପର୍ଯ୍ୟନ୍ତ ଯାହା କରି ଅଛନ୍ତି,ସତ୍ୟବାଦୀରେ ଓ ଅନ୍ୟତ୍ର ଶିକ୍ଷା ସଂପର୍କରେ ଯାହା ସେମାନେ ଅନୁଭବିଛନ୍ତି, ସେ ସମସ୍ତ ବିଷୟ ସେଠାରେ ବ୍ୟକ୍ତ କରିଥିଲେ । ଗୋପବଂଧୁ ନିଜେ ଅସହଯୋଗୀ ଏବଂ ଅସହଯୋଗ ପ୍ରାରମ୍ଭରୁ ସତ୍ୟବାଦୀଇସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତହୋଇଥିବାର କହିଥିଲେ । ସହଯୋଗୀ ଭାରତ ସେବକ ସମାଜର ସଭ୍ୟମାନେ ଏହା ଜାଣି ଶୁଣି ତାଙ୍କପ୍ରତି ସହାନୁଭୂତି ଓ ତାଙ୍କ କାର୍ଯ୍ୟରେ ସହାୟତା କରୁଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଇଥିଲେ । ଏଥିର ଫଳରେ ବମ୍ବେଇର ସହ ଯୋଗୀ ଏବଂ ଅସହଯୋଗୀ ଉଭୟ ଶ୍ରେଣୀର କେତେକ ବିଶିଷ୍ଟ ପଦସ୍ଥ ବ୍ୟକ୍ତି ଉତ୍କଳର ସତ୍ୟବାଦୀ ଶିକ୍ଷାପ୍ରଣାଳୀ ଏବଂ ଜାତୀୟ ଶିକ୍ଷାର ଉଦ୍ୟମକୁ ପସନ୍ଦ ଓ ଆଦର କରିଥିଲେ ।

ଓଡ଼ିଶାକୁ ଫେରିଲେ । ତାଙ୍କ ଉପରେ ଦମନ ନୀତି ଚାଲିଲା । ଓଡ଼ିଶାର ଏହି ଦମନନୀତି କେବଳ ଗୋପବଂଧୁଙ୍କ ଉପରେ ନୁହେଁ, ଏହିପରି ଅନ୍ୟାନ୍ୟ ଅସହଯୋଗୀ ଶିକ୍ଷିତ ଯୁବକମାନଙ୍କ ଉପରେ ପଡ଼ିଥିଲା । କେତେକ ୧୪୪ ଧାରା ମୁଖବନ୍ଦ ନୋଟିସ ପାଇଥିଲେ । କେତେକ ହସି ହସି ଅବିଚଳିତ ଚିତ୍ତରେ ଜେଲ ଯାଇଥିଲେ । ଅବଳା ନାରୀମାନେ ଗୃହାଙ୍ଗନା-ବେଶରେ ରାଜନୈତିକ ସଂଗ୍ରାମଭୂମିରେ ଛିଡ଼ା ହେଉଥିଲେ । ଶ୍ରମଜୀବୀମାନେ ଆପଣାର ମଜୁରି ଛାଡ଼ି ଦଳବଳରେ ଦେଶର କାର୍ଯ୍ୟରେ ଲାଗୁଥିଲେ ।

ଅନାହାରରେ ମାଡ଼ ଖାଉଥିଲେ, ଜେଲ ଯାଉଥିଲେ; କିନ୍ତୁ ମାତ୍ର ଭ୍ରୂକ୍ଷେପ ନ ଥିଲା । ଓଡ଼ିଶାର କୌଣସି ସ୍ଥାନରେ ଅସହଯୋଗନୀତି ଯେ ପ୍ରଚଳିତ ହୋଇ ନ ଥିଲା, ଏପରି ନୁହେଁ । ଅନ୍ଧାର ମୂଲକ ଗଡ଼ଜାତଠାରୁ ଆରମ୍ଭକରି ମୋଗଲବନ୍ଦୀର ଘରେ ଘରେ ଅସହଯୋଗ ବାର୍ତ୍ତା ପ୍ରଚାରିତ ହୋଇଥିଲା । ଲୋକମାନେ ତାଙ୍କର ହକ୍ ଦାବି ବୁଝିନେଲେ । ପ୍ରଜାମାନେ ଜମିଦାରମାନଙ୍କ ଅତ୍ୟାଚାରର ପ୍ରତିବାଦ କଲେ । କ୍ରମେ ସମସ୍ତ ଅନାଚାର ଅପଚାରମାନ ବାହାରେ ଫୁଟି ଉଠିଲା, ସ୍ଥାନେ ସ୍ଥାନେ ପ୍ରବଳ ଆକାର ଧରିଲା । ଏହି ସମୟରେ କନକାର ଅତ୍ୟାଚାର ବିଷୟ ଖବରକାଗଜ-ମାନଙ୍କରେ ପ୍ରକାଶିତ ହେଲା । କନକାର ରାଜା ସାହେବ ପ୍ରଜାମାନଙ୍କ ଉପରେ କରବୃଦ୍ଧି କଲେ, ନାନାପ୍ରକାର ଟିକସ ଧାର୍ଯ୍ୟ ହେଲା, ବନ୍ଦୋବସ୍ତ ଯେପରି କୌଶଳରେ ହୋଇଥିଲା, ତାହା 'ଉତ୍କଳ ଦୀପିକା' 'ସେବା' ପ୍ରଭୃତି ଖବରକାଗଜମାନଙ୍କରେ ପ୍ରତିବାଦ କରାଯାଇଥିଲା । ପ୍ରଜାମାନେ ରାଜାଙ୍କର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ରାଜଇଚ୍ଛା ମତେ ଦେଆଇନ ଖଜଣା ଦେବାକୁ ଆପତ୍ତି କଲେ । ରାଜା କହିଲେ, ଖଜଣା ଓ ଟିକସମାନ ଆଗ ଦେଇଗଲେ ଯେ ଆପତ୍ତି ପରେ ମୀମାଂସିତ ହେବ । ପ୍ରଜାମାନେ ତହିଁରେ ଅସ୍ୱୀକୃତ ହୋଇ ଖଜଣା ଇତ୍ୟାଦି ନ ଦେବାର ସ୍ଥିର କଲେ । ଅସହଯୋଗ କର୍ମୀମାନେ ଖଜଣା ବନ୍ଦ ନ କରିବାକୁ ପ୍ରଜାମାନଙ୍କୁ ବହୁବାର ଅନୁରୋଧ କଲେ ମଧ୍ୟ ସେମାନେ ଶୁଣିଲେ ନାହିଁ । ଏଣେ ପୁଲିସ କର୍ତ୍ତାମାନେ ଅସହଯୋଗୀମାନଙ୍କୁ ଦୋଷ ଦେଇ ଜେଲଧମକ ଦେଖାଇଲେ । ଇତିମଧ୍ୟରେ ଖଜଣା କିସ୍ତି ତିନିଦିନ ଗଡ଼ିଗଲା, ସେଥିରେ ପ୍ରଜାମାନେ ସଭା କରି ପୂର୍ବହାରରେ ଖଜଣା ଦେବା ସ୍ଥିର କଲେ । ତହୁଁ କନିକାରେ ଅତ୍ୟାଚାର ଚାଲିଲା । କେତେ ଗୁଳି ଖାଇ ମଲେ । କେତେକ ତରବାରିରେ ଆଘାତ ପ୍ରାପ୍ତ ହୋଇ ଡାକ୍ତରଖାନାରେ ପଡ଼ିଲେ । କେତେକ ଜେଲ ଗଲେ । ଆହୁରି କେତେକ ବନ୍ଦ ହୋଇ ହାଜତ ରହିଲେ । ଖଜଣା ନ ଦେବାରୁ ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ହେଲା । ଘର ସବୁ ଲୁଟପାଟ ହେଲା । ଲୋକମାନଙ୍କ ମନରେ ଭୟ ଓ ଆତଙ୍କ ଉପସ୍ଥିତ ହେଲା ।

କନିକା କଲରେ ଅସହଯୋଗୀମାନେ ପ୍ରଜାମାନଙ୍କୁ ଉତ୍ତେଜିତ କରୁଅଛନ୍ତି ବୋଲି କୁହାଗଲା । ଜମିଦାର ଓ ପ୍ରଜା ମଧ୍ୟରେ ସର୍ବଦା ଶାନ୍ତି ଓ ସଖ୍ୟଭାବ ରକ୍ଷା କରିବା ଓ ଆପୋଷରେ ବିବାଦ ମେଣ୍ଟାଇବା କାରଣ ଉତ୍କଳର ଯେ ଅସହଯୋଗ କର୍ମୀ ଉଦ୍ୟମ କରୁଥିଲେ ତାହା ବିଫଳ ହେଲା । ବେଆଇନ ହୁକୁମଦ୍ୱାରା କଂଗ୍ରେସ କର୍ମୀମାନଙ୍କୁ କନିକା ଇଲାକା ଭିତରୁ ତଡ଼ି ଦିଆଗଲା ଏବଂ କଂଗ୍ରେସ କାର୍ଯ୍ୟାଳୟ ଓ ତହିଁରେ ଥିବା ଜିନିଷମାନ ବେଦଖଲ କରି ନିଆ ଗଲା । କଂଗ୍ରେସ ଆନ୍ଦୋଳନକୁ ବନ୍ଦ କରିବା ଓ କନିକାର ଯଥାର୍ଥ ଘଟନାମାନ ବାହାରେ ପ୍ରକାଶ କରାଇ ନ ଦେବାପାଇଁ ଚେଷ୍ଟା ହେଲା ।

ଏହିପରି ଅତ୍ୟାଚାରର ସମସ୍ତ କାହାଣୀ ଗୋପବନ୍ଧୁ ସମାଜ ସ୍ତମ୍ଭରେ ପ୍ରକାଶ କଲେ । ସେଥିରେ ରାଜାଙ୍କର ମାନସମ୍ଭ୍ରମ ତୁଟିଲା । ଗୋପବନ୍ଧୁ ଖବରକାଗଜରେ ସେ ସମସ୍ତ କଥା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏ ଅତ୍ୟାଚାରର ଅନୁସନ୍ଧାନ ପାଇଁ ଦୃଢସଙ୍କଳ୍ପ ହେଲେ । ଅତ୍ୟାଚାରୀମାନଙ୍କର ଏଥିରେ ଭୟ ଉପୁଜିଲା । ସମାଜ କାଗଜରେ ଅତ୍ୟାଚାରର ବିବରଣୀ ଲେଖିଥିବା ହେତୁ କନିକା ଅତ୍ୟାଚାରୀ ପୁଲିସକର୍ତ୍ତାଙ୍କ ସାହାଯ୍ୟରେ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ଦଫାରେ ୩୪୪ନମ୍ବର ମକଦ୍ଦମା ରୁଜୁ କଲେ ।

ଏଥି ମଧ୍ୟରେ ଗୋପବନ୍ଧୁ ଶୀଘ୍ର ଗିରଫଦାର ହେବେ ବୋଲି ଗୁଜବ ଶୁଣା ଯାଉଥିଲା । ବମ୍ବେଇରୁ ଫେରିଲା ପରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ଘଟିଥିଲା । ସେ ବିଶ୍ରାମ ଖୋଜୁଥିଲେ । ୧୯୨୨ ମସିହା ମଇ ମାସ ତା୮ରିଖରେ ଜଗତ୍‌ସିଂହପୁର ଜାତୀୟ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ଯୋଗ ଦେବାକୁ ଯାଇଥିଲେ । କଟକ ଜିଲା ମେଜେଷ୍ଟ୍ରେଟ ତାଙ୍କ ଉପରେ ୧୪୪ଧାରା ନୋଟିସ ଜାରି କଲେ । ସଭା ସଭା କରି ପାରିବେ ନାହିଁ ବୋଲି ସେଥିରେ ଲେଖା ଥିଲା । ଇତିମଧ୍ୟରେ ବାଲେଶ୍ୱରଠାରେ ସେଠା ଜିଲା ସମିତିର ବୈଠକ ହେଲା । ସେଠାରେ ବାଲେଶ୍ୱରଜିଲା ମେଜେଷ୍ଟ୍ରେଟ ୧୪୪ଧାରା ଜାରିକଲେ ।

ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକ ସେହି ମାସ ତା ୧୪ରିଖରେ ବାଲେଶ୍ୱରଠାରେ ହୋଇ ଥିଲା । ଏହି କମିଟିର ଅନୁରୋଧ ମତେ ଗୋପବନ୍ଧୁ ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭା ବା କାଉନ୍ସିଲ ଗଠନ ଉଦ୍ଦେଶ୍ୟରେ ଓଡ଼ିଆଭାଷୀ ପ୍ରଦେଶର ଭିନ୍ନ ଭିନ୍ନ ଜିଲାର ସମ୍ମିଳନୀଭକ୍ତ ଦେଶାନୁରାଗୀ ବ୍ୟକ୍ତିଙ୍କ ନିକଟକୁ ଲେଖିଲେ ଯେ, କଂଗ୍ରେସର ଉଦ୍ଦେଶ୍ୟକୁ ଉତ୍କଳ ସମ୍ମିଳନୀ ଆପଣାର ଉଦ୍ଦେଶ୍ୟର ଅନ୍ତର୍ଭୁକ୍ତ କରିଥିବା ଯୋଗୁଁ ଏହା ଏକ ଜାତୀୟ ଅନୁଷ୍ଠାନ ଏବଂ ଏହାର ସ୍ଥାୟିତ୍ୱ ନିମନ୍ତେ ଯତ୍ନ କରିବା ଉତ୍କଳର ବିଭିନ୍ନ ଶ୍ରେଣୀ ଓ ମତର ବ୍ୟକ୍ତିମାନଙ୍କର କର୍ତ୍ତବ୍ୟ । ତେଣୁ ବିଭିନ୍ନ ଜିଲାରେ ଜିଲା ସମିତିମାନ ସ୍ଥାପନ କରି ଶୀଘ୍ର ସଂମିଳନୀର ଆଗାମୀ ଅଧିବେଶନ କରାଇବା ନିମନ୍ତେ ସଚେଷ୍ଟ ହେବାପାଇଁ ଓଡ଼ିଶାର ଜନସାଧାରଣ ଓ ବିଶିଷ୍ଟ ଲୋକମାନଙ୍କ ମଧ୍ୟରେ ଆନ୍ଦୋଳନ ଚାଲିଥିଲା । ଗୋପବନ୍ଧୁ ପ୍ରାଦେଶିକ କମିଟିର ଏହି ବାଲେଶ୍ୱର ବୈଠକରେ କନିକା ଅତ୍ୟାଚାରର ପୁଙ୍ଖାନୁପୁଙ୍ଖ ନିରପେକ୍ଷ ଅନୁସଂଧାନ ନିମନ୍ତେ କମିଟି ମେମ୍ବରମାନଙ୍କ ନିକଟରେ ପ୍ରସ୍ତାବ କରିଥିଲେ । କମିଟିଦ୍ୱାରା ଗୃହୀତ ହୋଇ ବିଭିନ୍ନ ଦଳରୁ ସଭ୍ୟମାନେ ନିଯୁକ୍ତ କରାଯାଇ ଶୀଘ୍ର ଅନୁସଂଧାନ କାର୍ଯ୍ୟ ଆରମ୍ଭ ହେବାର ସ୍ଥିର ହେଲା । ସେହିଦିନୁଁ ଗୋପବନ୍ଧୁ ଅନୁସନ୍ଧାନ କାର୍ଯ୍ୟରେ ଯଥାସାଧ୍ୟ ଲାଗିପଡ଼ିଲେ । ବାଲେଶ୍ୱରରୁ ଫେରି ପ୍ରାଦେଶିକ କଂଗ୍ରେସକମିଟି ସେକ୍ରେଟେରୀ ଶ୍ରୀଯୁକ୍ତ ଭାଗୀରଥୀ ମହାପାତ୍ରଙ୍କ ସହିତ ସେ ତା୧୭ ରିଖ ଭଦ୍ରଖ ଷ୍ଟେସନରେ ଓହ୍ଲାଇବାମାତ୍ରେ ସେଠାରେ ସବଡ଼ିଭିଜନ ମାଜିଷ୍ଟ୍ରେଟଙ୍କର ୧୪୪ ଧାରା ନୋଟିସ ଦୁହିଙ୍କ ଉପରେ ଜାରି ହୋଇଥିଲା । ନୋଟିସରେ ସେ ସବଡ଼ିଭିଜନ ଭିତରେ କୌଣସି ରେଳଷ୍ଟେସନରେ ମଧ୍ୟ ଓହ୍ଲାଇବାକୁ ମନା କରାଯାଇଥିଲା । କିନ୍ତୁ ଗୋପବନ୍ଧୁ ଭଦ୍ରଖ ସବଡ଼ିଭିଜନ ସମ୍ମିଳନୀର ସଭାପତି ନିର୍ବାଚିତ ହୋଇ-ଥିବାରୁ ଓ ପୂର୍ବରୁ ରେଳରୁ ଓହ୍ଲାଇସାରିଥିବାରୁ ସେଠାରେ କଂଗ୍ରେସଆଦେଶ ଅନୁଯାୟୀ ଘେରାଉ ଜାଗାରେ ସମ୍ମିଳନୀକାର୍ଯ୍ୟ ଶେଷକଲେ । ଭଦ୍ରଖରୁ ଜଲେ-ଶ୍ୱର ଦିନେ ଦିନ ପାଇଁ ଯାଇ ସେଠାରେ ଅସୁସ୍ଥହେବାରୁ ତାଙ୍କର ବିଶ୍ରାମ-କେନ୍ଦ୍ର ସତ୍ୟବାଦୀକୁ ଫେରି ଆସିଲେ । ଫେରି ଆସିଲା ବେଳେ ବାଲେ...

ଜିଲ୍ଲା ମେଜେଷ୍ଟ୍ରେଟ ତାଙ୍କ ଉପରେ ପୁଣି ୧୪୪ ଧାରା ଜଲାରମାମ ପାଇଁ ଜାରି କଲେ । ଏହିପରି ଘନଘନ ମୁଖବନ୍ଦ ନୋଟିସ ପାଇ ସେ ବୁଝୁଥିଲେ ଯେ, ଶୀଘ୍ର ତାଙ୍କର ଜେଲ ଯିବାର ସମୟ ହୋଇଗଲାଣି । ତା ୨୯ରିଖରେ ସେ ସତ୍ୟବାଦୀରୁ ପୁରୀକୁ ଦିନେ ଦୁଇଦିନ ପାଇଁ ଯାଇଥିଲେ । ସେଠାରେ ଉଦ୍ଦିଷ୍ଟ ସବଡିଭିଜନ ମେଜେଷ୍ଟ୍ରେଟଙ୍କର ୧୮୮ ଧାରା ନୋଟିସ ତାଙ୍କୁ ମିଳିଲା । ୧୪୪ ଧାରା ନୋଟିସ ଅମାନ୍ୟ କରିଥିବା ଅପରାଧରେ ତାଙ୍କ ନାମରେ ଏକ ମକଦ୍ଦମା ଦାଏର କରାଯାଇଥିଲା । ତା ୩୧ରିଖ ସକାଳେ ଗୋପବନ୍ଧୁ ନରେନ୍ଦ୍ରରୁ ସ୍ନାନକରି ଫେରିଲା ବେଳେ ହଠାତ୍ ପୁରୀର ପୁଲିସ ଇନ୍ସପେକ୍ଟର ଫୌଜ ଆଇନ [ Criminal Law Amendment Act]ର ୧୭ ଧାରା ଅନୁସାରେ ଉତ୍କଳ ସ୍ୱରାଜ୍ୟ ସେବକ ସଂଘ ବା ସ୍ୱେଚ୍ଛାସେବକ ଦଳ ଗଠନ କରୁଥିବା ଅପରାଧରେ କଟକ ଜିଲ୍ଲା ମେଜେଷ୍ଟ୍ରେଟଙ୍କର ଗିରଫଦାରି ଓ୍ୟାରେଣ୍ଟ ତାଙ୍କୁ ଦେଖାଇଲେ । ଓ୍ୟାରେଣ୍ଟ ଦେଖି ଗୋପବନ୍ଧୁ କହିଲେ, "ମୁଁ ତ ଏଥିପାଇଁ ଅନେକ ଦିନୁଁ ଅପେକ୍ଷା କରୁଥିଲି ।" ସେଠାରୁ ସେ ଆଶ୍ରମକୁ ଆସି ଓଢ଼ାଲୁଗା ଖଣ୍ଡି ପାଲଟି ଦେଇ ତାଙ୍କ ସହିତ ଘୋଡ଼ାଗାଡ଼ିରେ ରେଳ ଷ୍ଟେସନକୁ ବାହାରିଲେ । ପୁରୀର ବହୁତ ଲୋକ ଜମା ହୋଇ ଷ୍ଟେସନଠାରେ ତାଙ୍କୁ ବିଦାୟ ଦେଇଥିଲେ । ମାଳତୀପାଟପୁର, ସତ୍ୟବାଦୀ, ଡେଲାଙ୍ଗ ପ୍ରଭୃତି ସମସ୍ତ ଷ୍ଟେସନରେ ଓହ୍ଲାଇ ଗୋପବନ୍ଧୁ ସମସ୍ତଙ୍କଠାରୁ ହସି ହସି ବିଦାୟ ନେଉଥିଲେ ଏବଂ ଖଦଡ଼ ବ୍ୟବହାର ବିଶେଷଭାବରେ କରିବା ପାଇଁ ଲୋକଙ୍କୁ କହୁଯାଉଥିଲେ । ଆହୁରି ମଧ କହି ଯାଇଥିଲେ, କଂଗ୍ରେସର ବର୍ତ୍ତମାନ ଅବସ୍ଥା ବିଷୟରେ ସ୍ୱାଧୀନ ଓ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବା ନିତାନ୍ତ ଦରକାର । ଦେଶବାସୀଙ୍କର ଏହା ପ୍ରଧାନ କର୍ତ୍ତବ୍ୟ । ସେ ଏଥିଲାଗି ବଡ ଚିନ୍ତିତ । ଅବଳମ୍ବେ ଏହା କାର୍ଯ୍ୟରେ ପରିଣତ କରିବା ପାଇଁ ସେ ବରାବର ଚେଷ୍ଟା କରୁଥିଲେ । ଏହିପ୍ରକାର ଅନୁସନ୍ଧାନ ଦ୍ୱାରା କର୍ତ୍ତୃପକ୍ଷଙ୍କର ପ୍ରାୟ ସବୁବେଳେ ଆତଙ୍କ ଜନ୍ମିଥାଏ । ପୁରୀ ଦୁର୍ଭିକ୍ଷବେଳେ ଏହିପରି କରାଯାଇଥିଲା । ସେ ଯେପରି ମନେ କରିଥିଲେ, ଉପସ୍ଥିତ ଘଟଣାରେ କୌଣସି ଅନୁସନ୍ଧାନ କରାଇ ନ ଦେବା ପାଇଁ

ପ୍ରଶକାର ଲୋକେ ପ୍ରାଣପଣେ ଚେଷ୍ଟା କରୁଥିଲେ । ସେ କହିଗଲେ, ମୁଁ ମୋର ଦେଶବାସୀ ବିଶେଷତଃ ବିହାର ବଙ୍ଗଳା ଓ ଓଡ଼ିଶାର ନେତୃସ୍ଥାନୀୟମାନଙ୍କଠାରେ ଦାବି କରେ ଯେ, ସେମାନେ ଆଉ କାଳ ବିଳମ୍ବ ନକରି ଅତିଶୀଘ୍ର ବିଚକ୍ଷଣତା ଓ ସାବଧାନତା ସହିତ କନିକା ଅତ୍ୟାଚାରର ଅନୁସନ୍ଧାନ କରନ୍ତୁ । ମୋର ଆଶଂକା, ସେଠାଲୋକେ ଇତିମଧ୍ୟରେ ତ୍ରସ୍ତ ବ୍ୟସ୍ତ ଓ ହୀନଚରିତ୍ର ହୋଇ ଗଲେଣି । ମୋତେ କନିକା ଅନୁସନ୍ଧାନରୁ ଦୂରରେ ରଖିବା ପାଇଁ ବିଗ୍ରହ କରି କର୍ତ୍ତାମାନେ ଗିରଫଦାରି କରି ଅଛନ୍ତି । ରେଲରେ ସେ ପୁରୀଠାରୁ କଟକ ଗଲାବେଳେ ନିରଞ୍ଜନ ବାବୁ ଗୋପବନ୍ଧୁଙ୍କୁ ଦେଶବାସୀଙ୍କ ପ୍ରତି ତାଙ୍କର ବିଦାୟ ବାର୍ତ୍ତା ଦେଇଯିବାକୁ ଅନୁରୋଧ କରିବାରୁ ସେ କନିକା ଅତ୍ୟାଚାର ଦୁର୍ଘଟଣାର ପର୍ଣ୍ଣ ପ୍ରକାଶ ଓ ଅନୁସଂଧାନ ନିମନ୍ତେ ଦେଶବାସୀ ଶୀଘ୍ର ତତ୍ପର ହେବେ ବୋଲି ବାର୍ତ୍ତା ଦେଇଗଲେ । ଓଡ଼ିଶାର ଚିର ଦୁର୍ଭିକ୍ଷ ଉପଶମ ସକାଶେ ଶାରିବା ଓ ନିଷ୍ଠାପରଭାବରେ ଘରେ ଘରେ ଅରଟ ଚଳାଇ ଖଦଡ଼ ଆମଦାନି କରିବା ପାଇଁ ଓଡ଼ିଶାର ଜନ ସାଧାରଣଙ୍କ ପ୍ରତି ନିବେଦନ କଲେ । ସହଯୋଗୀମାନଙ୍କୁ କହିଗଲେ, ସରକାରଠାରେ କେବଳ କେତୋଟା ସ୍ୱୀକାର ଓ ସୁବିଧା ପାଇଁ ଆବେଦନ ନିବେଦନ କଲେ ଜାତିର ଦୁଃଖ ଯିବ ନାହିଁ; ଏଥିରେ କେବଳ ଦାସତ୍ୱ ବଢିବ । ବରଂ ଆମ୍ଭମାନଙ୍କର ଏ ସବୁ କ୍ଷୁଦ୍ର ସ୍ୱାର୍ଥ ଛାଡ଼ି ସମସ୍ତ ଭାରତର ମଙ୍ଗଳ ସକାଶେ ସାହାଯ୍ୟ ଓ ତ୍ୟାଗ ସ୍ୱୀକାର କରିବା ଉଚିତ । ଛାତ୍ରସମାଜକୁ କହିଗଲେ, ତାଙ୍କର ଅଧିକାଂଶ କାର୍ଯ୍ୟ ଶିକ୍ଷା ବିଷୟରେ; ତେଣୁ ଓଡ଼ିଶାର ଛାତ୍ରମାନଙ୍କ ଉପରେ ତାଙ୍କର ଦାବି ଅଛି । ଛାତ୍ରମାନେ ଏ ଆନ୍ଦୋଳନରେ ସେମାନଙ୍କର କର୍ତ୍ତବ୍ୟ କରି ନାହାନ୍ତି । ଛାତ୍ରସମାଜର ଓଡ଼ିଶା ପ୍ରତି କର୍ତ୍ତବ୍ୟ ଅଛି । ସମସ୍ତ ପ୍ରକାର ଦୁଃଖ କଷ୍ଟ ସହି ସେମାନଙ୍କର ଏ କର୍ତ୍ତବ୍ୟ ପାଳନ କରିବା ଉଚିତ । କେବଳ ରାଜନୈତିକ ଅଧିକାର ଲାଭ ସକାଶେ ନୁହେଁ, ଓଡ଼ିଶାର ନିରନ୍ନ ଲୋକଙ୍କୁ ଅନ୍ନଦେବା ଓ ଓଡ଼ିଶାର ଦରିଦ୍ରତା ଦୂର କରିବା ତାଙ୍କର ଉଦ୍ଦେଶ୍ୟ; ସେଥିରେହିଁ ତାଙ୍କର ପରମ ସନ୍ତୋଷ । ଯେଉଁ ଜାତିର ତ୍ୟାଗ ନାହିଁ ସେ ଜାତିର ଅସ୍ତିତ୍ୱ ନାହିଁ । ଓଡ଼ିଶାର ଭାଇ ଭଉଣୀମାନଙ୍କୁ

କହିଗଲେ, ଗ୍ରାମେ ଗ୍ରାମେ ଘରେ ଘରେ ବସି ଅରଟ ନ ଚଳାଇଲେ ଦରିଦ୍ର ଭାରତରେ ତାଙ୍କର ଦୁଃଖର ସୀମା ରହିବ ନାହିଁ । ଏହିସବୁ କହିଲା ବେଳେ ଗୋପବନ୍ଧୁ କାନ୍ଦୁଥାନ୍ତି । ଶେଷରେ ଓଡ଼ିଶା ବାହାରେ ବିଭିନ୍ନ ପ୍ରଦେଶର ନେତା ଓ ଜନସାଧାରଣଙ୍କୁ ଅନୁରୋଧ କରି ଗଲେ, ସେମାନେ ଏ ଦରିଦ୍ର ଉତ୍କଳୀୟଙ୍କ ପ୍ରତି ନିଜ ନିଜର କର୍ତ୍ତବ୍ୟ ଟିକିଏ ସ୍ମରଣ ରଖିଥିବେ । ରାଜନୀତି କ୍ଷେତ୍ରରେ ଓଡ଼ିଶା ନିତାନ୍ତ ପଛରେ ପଡ଼ିଛି । ଲୋକମାନେ ନିତାନ୍ତ ଦରିଦ୍ର । ଏତେବେଳେ ସେମାନେ ଓଡ଼ିଆମାନଙ୍କର ସହାୟତା ନ କଲେ ଭାରତରେ ଜାତୀୟ ଜୀବନର ଅଖଣ୍ଡ ଓ ପୂର୍ଣ୍ଣ ବିକାଶ ହୋଇ ପାରିବ ନାହିଁ ।

ଗୋପବନ୍ଧୁଙ୍କର ଗିରଫଦାରି ସଙ୍ଗେ ସଙ୍ଗେ ପୁରୀ କଟକ ବାଲେଶ୍ୱର ସ୍ୱରାଜ୍ୟ ଆଶ୍ରମ ସତ୍ୟବାଦୀ ... ପୁରୀ ଆଶ୍ରମ, ସତ୍ୟବାଦୀରେ ଗୋପବନ୍ଧୁଙ୍କ ବସାଘର ଓ ତାଙ୍କ ନିଜ ଗାଁ ସୁଆଣ୍ଡୋ ଘର ଖାନତଲାସ ହୋଇଥିଲା । ସ୍ୱେଚ୍ଛାସେବକ ଗଠନ କରିବା ଓ କଂଗ୍ରେସ କାର୍ଯ୍ୟ ଚଳାଇବା ସଂପର୍କରେ ଯେ କେତେଖଣ୍ଡ କାଗଜ ମିଳିଥିଲା, ତାହା ସେମାନେ ନେଇ ଯାଇଥିଲେ । ସୁଆଣ୍ଡୋର ନିଜଘରେ ଗୋପବନ୍ଧୁ ସେତେବେଳକୁ ୧୩।୧୪ ବର୍ଷ ହେଲା ଛାଡ଼ି ଥିଲେ । ତେଣୁ ସେଠାରୁ କିଛି ମିଳି ନ ଥିଲା ।

୧୯୨୨ ଜୁନମାସ ୨୬ତାରିଖରେ ଫୌଜ ଆଇନର ୧୭ଦଫା ଅନୁସାରେ ରୁଜୁ ହୋଇଥିବା ମକଦ୍ଦମାର ଶେଷ ବିଚାର କଟକରେ ହୋଇଥିଲା । ତହିଁରେ ଗୋପବନ୍ଧୁ ୨ବର୍ଷପାଇଁ ବିନାପରିଶ୍ରମରେ କାରାବାସ ଦଣ୍ଡ ପାଇଲେ । ଭାରତୀୟ ଦଣ୍ଡବିଧି ୧୨୪ଧାରା ଅମାନ୍ୟରେ ତାଙ୍କୁ ୬ମାସ ସଜା ହୋଇଥିଲା, କିନ୍ତୁ ଉଭୟ ଦଣ୍ଡ ଏକସଙ୍ଗରେ ଭୋଗକରିବାକୁ ହୋଇଥିଲା । ରାଜନୈତିକ ବନ୍ଦୀ ଥିବାରୁ ତାଙ୍କର ହଜାରିବାଗ ଜେଲଖାନାକୁ ଯିବାର କଥା ମାତ୍ର କନିକା ମାନହାନି ମକଦ୍ଦମା ଲାଗି ରହିଥିବାରୁ ସେ ୧୯୨୩ ମସିହା ଜାନୁଆରି ତା୨୪ରିଖ ପର୍ଯ୍ୟନ୍ତ କଟକ ଜେଲଖାନାରେ ରହିଲେ । ତାଙ୍କ ବିରୁଦ୍ଧରେ ହୋଇଥିବା



"କାତରତା ସିନା କାପୁରୁଷ ପଣ
ବୀର, ମାରେ ଅବା ମରେ ଭଇରଣ ।"

ମା[illegible]ନ ମକଦ୍ଦମା ବିଚାର ହେଲେ କଳଙ୍କୀ ଅତ୍ୟାଚାର ରହସ୍ୟ ପ୍ରକାଶ [illegible] ବୋଲି ଭୟଙ୍କର ମୁଦେଇ ବନା ସରତରେ ମକଦ୍ଦମା ଉଠାଇ ନେଇଥିଲେ । ପଣ୍ଡିତ ଗୋପବନ୍ଧୁ ୧୯୨୩ ଜାନୁଆରୀ ତା ୨୪ରିଖରେ ହଜାରିବାଗ ଜେଲଖାନାକୁ ଚାଲାନ ହେଲେ । ସେ ଦିନ ପୁଲିସ ଜଗୁଆଳଙ୍କ ସହିତ ଜେଲ ଫାଟକ ଡେଇଁ ବାହାରକୁ ଆସିଲାବେଳେ କେତେ ଲୋକ ତାଙ୍କ-ଠାରୁ ବିଦାୟ ନେଇଥିଲେ । "ଏବେ ଓଡ଼ିଶାରୁ ମୁଁ ବିଦାୟ ନେଲି" କହିବା ସଙ୍ଗେ ସଙ୍ଗେ ତାଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଥିଲା । ସେ ଯେ ବ୍ୟାକୁଳ ହୃଦୟରେ ତାଙ୍କର ପ୍ରିୟତମ ଏ ଜନ୍ମଭୂମି ଛାଡ଼ି ଯାଇଥିଲେ, ତାହା କାହାର ମନରୁ ଯିବ ନାହିଁ । ଗଲାବେଳେ ତାଙ୍କ ମନର ଭାବ "ବନ୍ଦୀର ଆତ୍ମକଥାରେ" ସେ ଲେଖିଥିଲେ:—

× × × ×

"ଶାସନ-ରକ୍ଷକ କଟୁଆଳଦଳ
ନେଉଛନ୍ତି ମୋତେ ଛଡ଼ାଇ ଉତ୍କଳ ।
ରଖି ଆସିବେ ସେ ଆନ କାରାଗାରେ
କାହିଁ ବହୁଦୂରେ ଉତ୍କଳ ବାହାରେ ।
ନ ଦେଖିବେ ବୋଲି କେହି ଦେଶଭାଇ
ଗାଡ଼ିର କଣୀଥେ ନିଅନ୍ତି ଲୁଚାଇ ।
ନିଅନ୍ତୁ ଯେପରି ରଖନ୍ତୁ ଯେ ବଳେ
ସେଥିଲାଗି ମୋର ଦୁଃଖ ନାହିଁ ତିଳେ
ମାତ୍ର ଉତ୍କଳୁଁ ମୁଁ ଯାଉଛି ଯେ ଦୂରେ
ବାଜିଲେ ଏ ବାର୍ତ୍ତା କାଲି ପଲ୍ଲୀପୁରେ ,
ଜାଣେ ଉତ୍କଳର କେତେ ନରନାରୀ
ବ୍ୟଥିତ ପରାଣେ ହେବେ କଷ୍ଟେ ଘାରି ।
କସଣେ ଧାଇବେ କେହି ଆହା ଆହା !
ଆଖୁଁ ଢାଳିବେ ସେ ପଥେ ଜଳ ତାହା ।

ଗ୍ରାମୁଁ ଗ୍ରାମାନ୍ତରେ ଗଲେ ଏ ସଂବାଦ
ପଡ଼ିବ ନର ନାରୀ ଭକ୍ତବେ ବିଷାଦ ।
କେ ଜାଣି କେ ଅବା ପାଇ ବୃଥାଭୟ
ଅସହ୍ୟପୋଗରୁ ଛାଡ଼ି ଦେବେ ଲକ୍ଷ୍ୟ ।
ଏ ଭାବନା ଏକା ମନ୍ଦେ ମୋ ଅନ୍ତର
ନିଜ ନିର୍ବାସନେ ନୁହେ ମୁଁ କାତର ।
ମନେ ପଡ଼େ କେତେ ଅଂଚଳର ଭାଇ
ଡାକିଥିଲେ ତେଣେ ଥରେ ଯିବା ପାଇଁ ।
କେତେକେତେ ଗ୍ରାମେ ବୁଲି ଦ୍ୱାର ଦ୍ୱାର
କହନ୍ତି ସ୍ୱରାଜ୍ୟ-ଶୁଭ-ସମାଚାର,
ତଥାପି ରହନ୍ତି କେତେ ସ୍ଥାନ ବାକି
ମୋ ଯିବାକୁ ଲୋକେ ରହିଥିଲେ ଚାହିଁ ।
କେବେ ଫେରି ପୁଣି ଯାଇ ତାଙ୍କ ପାଶେ
କ୍ଷମା ମାଗିବି ମୋ ବିଳମ୍ବ ସକାଶେ,
ଦେଖିବି କେବେ ସେ ପ୍ରିୟଜନ ମୁଖ
ଏ ଭାବନା ଏବେ ଜନମାଏ ଦୁଖ ।
ହେ ଉତ୍କଳବାସି ମୋ ଭାଇ ଭଉଣି,
କରିଅଛ ସ୍ନେହେ ମୋତେ ଚିର ଋଣୀ ।

\+ + +

ଏକେ କାରାବାସ ଦୂର ପରଦେଶ
ଦେଶ ଦଶା ତହିଁ ମନେ ଦେଲେ କ୍ଲେଶ,
କି ଭାବ ପରାଣେ ପାଇବି ଆଶ୍ୱାସ
ଯୋଗାଇବ ଲୋକଙ୍କ ଧୈର୍ଯ୍ୟ କି ସାହସ ?
ହେ ଉତ୍କଳବାସି ଆତ୍ମୀୟ ସ୍ୱଜନ,

ମୁଁ ଯେବେ ତୁମ୍ଭର ସେନେହଭାଜନ ।
କର ଯୋଡ଼ି କରେ ବନତ ଏତିକ
ଅସହଯୋଗରେ ରଖିବ ମସ୍ତକ ।
ଢାଳିଦିଅ ପ୍ରାଣ ସ୍ୱରାଜ୍ୟ ସାଧନେ
ଆଶ୍ୱାସିବ ଯେବେ ମୋତେ ନିର୍ବାସନେ ।

\+ + +

ମହାତ୍ମା ସାଧନ ମହାତ୍ମା ଲକ୍ଷଣ
ନ ଯାଏ ଜଗତେ କେବେ ଅକାରଣ ।
ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର ।
ଏ ବିଶ୍ୱାସେ ସର୍ବେ ଦୃଢ଼ କର ମନ
ସ୍ୱରାଜ୍ୟ ଧରମ କର ଆଚରଣ ।
ବିଦେଶୀ ଅମେଧ ବସ୍ତ୍ର ଗୁଡ଼ା ଆଗେ
ହାତ ସୂତା ଲୋଡ଼ା ଏ ସ୍ୱରାଜ୍ୟ ଯାଗେ ।
ପିନ୍ଧ ଦେଶୀ ଲୁଗା ହେଉ ଅଙ୍ଗ ଶୁଦ୍ଧି
ମାମଲାରେ ଆଉ ନ ଖେଳାଅ ବୁଦ୍ଧି ।
ଗ୍ରାମେ ପଞ୍ଚ ପରି ପରମ ଈଶ୍ୱର
କର ପୁଣି ଗ୍ରାମେ ସ୍ଥାପନ ତାଙ୍କର ।
ସର୍ବେ ବାନ୍ଧି ମେଳ ତାଙ୍କୁ ମାନି ଚଳ,
ପ୍ରକାଶିବ ଗ୍ରାମେ ପୁଣି ନବ ବଳ,
ନ ଲାଗିବ ମିଥ୍ୟା ଜାଲ ପ୍ରବଞ୍ଚନ
ନ ଖାଇବେ ଭୂତ ତୁମ୍ଭ ଗ୍ରାମ ଧନ ।"

ଗୋପବନ୍ଧୁ ହଜାରିବାଗ ଜେଲରେ ଦେଶ ଚିନ୍ତାରେ ବିନଗିଡ଼ କଟାଉ ଥାନ୍ତି । ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ ମୂଳସଂସ୍କୃତ ମହାଭାରତ, ଶ୍ରୀମଦ୍ ଭାଗବତ

ନିୟମିତରୂପେ ଅଭ୍ୟାସପୂର୍ବକ ଅଧ୍ୟୟନ କରୁଥିଲେ । ଏ ଜେଲରେ କେବେ କେବେ କେତେକ ଅପରାଧୀ ଓ ଜେଲ ରକ୍ଷକମାନଙ୍କର ମତିଗତି କେତେ କାଂଶରେ ବଦଳି ଯାଇଥିଲା । ଗୋପବନ୍ଧୁଙ୍କ ସମସ୍ତେ ନମସ୍କାର କରୁଥିଲେ । ତାଙ୍କର ଏହି ଜେଲଖାନାରେ କିଛିଦିନ ରହିବା ପରେ ଫେରୁଥିଲେ ତା୮ (୧୯୨୩)ରେ ପ୍ରସିଦ୍ଧ ଅନନ୍ତ ମିଶ୍ରେ ଗୋପବନ୍ଧୁଙ୍କର ବହିପତ୍ର ସଜାଡୁ ସଜାଡୁ 'ବନ୍ଦୀର ଆତ୍ମକଥା' ବୋଲି ଗୋଟିଏ ହସ୍ତଲେଖା ପାଇଥିଲେ । ଅନନ୍ତ ମିଶ୍ରେ ଖଲାସ ହୋଇ ଆସିବାପରେ ଉକ୍ତ ଲେଖା ପୁସ୍ତକାକାରରେ ଦେଶରେ ପ୍ରସାରିତ ହୋଇ ଦେଶବାସୀଙ୍କ ମନରେ ନୂତନ ଭାବ ଆଣିଥିଲା । ୧୯୨୩ ଜୁନ ତା୨୭ରିଖରେ 'ଗୋପବନ୍ଧୁ ଦିବସ' ସମଗ୍ର ଓଡ଼ିଶାରେ ପାଳିତ ହୋଇଥିଲା । ସେହିଦିନ ଗୋପବନ୍ଧୁଙ୍କର ଜୀବନଚରିତ ଦେଶବାସୀଙ୍କୁ କେତେକ ପରିମାଣରେ ଦିଆ ଯାଇଥିଲା । ତାଙ୍କର ଫଟୋ ମଧ୍ୟ ଘରେ ଘରେ ସ୍ଥାପନ ଲାଗି ବଣ୍ଟା ଯାଇଥିଲା । ସେହି ସମୟରେ ଦେଶବାସୀ କପର ତାଙ୍କର ଅଭାବ ଦେଶକାର୍ଯ୍ୟରେ ଅନୁଭବ କରୁଥିଲେ ତାହା ସେ ସମୟର ଲିଖିତ କତିପୟ ପଂକ୍ତିରୁ ଜଣାପଡେ ।

> "ଦୁଃଖ ସହି ସହି କନକା ରମଣୀ
> ଅହଲ୍ୟା ସୁନ୍ଦରୀ ହୋଇଲା ପାଷାଣୀ
> ନାହିଁ କି ଭାରତେ କେହି ଶରାମ ପାଦପରଶେ ଉଦ୍ଧାରିବ ।
> ତା ଦୁଃଖ ଫେଡିବା ପାଇଁ ଗୋପବନ୍ଧୁ
> ଉତ୍କଳର ପ୍ରାଣ ଦୀନଜନବନ୍ଧୁ
> ବରନେଲେ ଦୀର୍ଘ କାରାବାସ ଦଣ୍ଡ ନାହିଁ କେହି ଏହା ହେଜିବ ।"

ଗୋପବନ୍ଧୁ ଦେଶର କାର୍ଯ୍ୟରୁ ଅନ୍ତର ହୋଇ ଥିଲେ ସୁଦ୍ଧା ସାହିତ୍ୟ ଚର୍ଚ୍ଚାରୁ ବିରତ ନ ଥିଲେ । ସେ ଏହି ସମୟରେ ହିନ୍ଦି ଶିକ୍ଷା ପାଇଁ ମନ ବଳାଇ ଥିଲେ ଏବଂ ହିନ୍ଦିରେ ସେ ଲେଖା ପଢା ଓ କୁହା ପୋଗ୍ଗ କରିପାରୁଥିଲେ 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ଓ 'ଗୋ ମାହାତ୍ମ୍ୟ' ପ୍ରଭୃତି ସେ

କର୍ଣ୍ଣମାନ ଓଡ଼ିଆ ଭାଷାରେ ପୁସ୍ତକାକାରରେ ପ୍ରକାଶ ପାଇଛି ସେହିସବୁ ଜାତିର ସାହିତ୍ୟର ଅମୂଲ୍ୟ ସମ୍ପଦକୁ ଗୋପବନ୍ଧୁ ବନ୍ଦଶାଳରେ ବସି ଲେଖି ଥିଲେ । ସେ ବନ୍ଦଶାଳରେ ଥିଲାବେଳେ ସତତ ଧର୍ମ ଚର୍ଚ୍ଚାରେ ନିରତ ଥିଲେ ଏବଂ ପ୍ରତି ସପ୍ତାହର ବୁଧବାର ଦିନ ସେ ବିଶ୍ୱ ଚର୍ଚ୍ଚାରେ ମଗ୍ନ ହୋଇ ମୌନବ୍ରତ ପାଳୁଥିଲେ । ତାଙ୍କର ଶେଷଜୀବନ ପର୍ଯ୍ୟନ୍ତ ସେ ଏହି ମୌନ ଦିବସଟି ପାଳି ଆସୁଥିଲେ । ସେ ଦିନକ ସେ କେବଳ ଲେଖାପଢ଼ା କରୁଥିଲେ, କୋହିଲେ ବସି କିଛି ନା କିଛି ଭାବୁଥିଲେ । ତାଙ୍କର କିଛି ଆବଶ୍ୟକ ପଡ଼ିଲେ ସଙ୍କେତ ଦ୍ୱାରା କାର୍ଯ୍ୟ କରାଇ ନେଉଥିଲେ । ବନ୍ଦଶାଳରେ ଥିଲାବେଳେ ଯେ ସବୁ ଦକ୍ଷିଣା ପବନ ବୋହି ଯାଉଥିଲା ସେଥିରେ ନୀଳାଚଳ ଧାମର ବାର୍ତ୍ତା, ତାଙ୍କ ପ୍ରିୟତମ ସତ୍ୟବାଦୀ ବନକୁଞ୍ଜର ସନ୍ଦେଶ ଏବଂ ଓଡ଼ିଶାବାସୀଙ୍କର ଦୁଃଖ କାହାଣୀମାନ ତାଙ୍କ କାନରେ ବାଜୁଥିଲା । ସେ ସମସ୍ତ ବର୍ଣ୍ଣନା କରି କବିତାମାନ ରଚନା କରିଥିଲେ । ସେତେବେଳେ ଆଉ କେତେକ କ୍ଷୁଦ୍ର କବିତାମାନ ମଧ୍ୟ ରଚନା କରିଥିଲେ । ସେ ସମସ୍ତ ଅପ୍ରକାଶିତ ଅବସ୍ଥାରେ ଅଛି । ଏହିପରି ଆନନ୍ଦ ଓ ନିରାନନ୍ଦ ମଧ୍ୟରେ ଦୁଇବର୍ଷ ଜେଲଖାନାରେ କଟାଇ ସନ ୧୯୨୪ ମସିହା ଜୁନମାସ ତା ୨୬ ରିଖରେ ହଜାରିବାଗ ଜେଲରୁ ଖଲାସ ହେଲେ ।

## ୧୫

ମହାପୁରୁଷ ଗୋପବନ୍ଧୁ ଦାରୁଣ ବିଚ୍ଛେଦ ବେଦନା ସହି ସହି ହଜାରିବାଗ ଜେଲରୁ ଫେରିବା ସଂଗେ ସଂଗେ ଉତ୍କଳ ପ୍ରାଦେଶିକ ସମ୍ମିଳନୀର କଟକ ଅଧିବେଶନରେ ଯୋଗ ଦେଇଥିଲେ । ଏହି ଅଧି-ବେଶନରେ ବଙ୍ଗର କର୍ମିପ୍ରବର ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ସଭାପତି ହୋଇ ଥିଲେ । ଉକ୍ତସମ୍ମିଳନୀରେ ଦେଶସେବୀ ଗୋପବନ୍ଧୁଙ୍କୁ ପାଇ ଆନନ୍ଦ ଉଚ୍ଛ୍ୱାସରେ ବିହ୍ୱଳିତ ହୋଇଥିଲେ । ସଭାପତି ତାଙ୍କ ବକ୍ତୃତା ମଧ୍ୟରେ ଗୋପବନ୍ଧୁଙ୍କୁ 'ଉତ୍କଳ ମଣି' ବୋଲି ଆଖ୍ୟା ଦେଇ ଯାଇଥିଲେ । ସେହି ଦିନଠାରୁ ଉତ୍କଳମଣି ନାମରେ ଗୋପବନ୍ଧୁ ଖ୍ୟାତ ହେଲେ । ଜେଲରୁ ଫେରି ଆସି

ପୁନରାୟ ଦେଶ କାର୍ଯ୍ୟରେ ସେ ଲାଗି ଯାଇଥିଲେ । ସେତେବେଳେ ସତ୍ୟବାଦୀ ବିଦ୍ୟାଳୟର ଅବସ୍ଥା ଅତି ଶୋଚନୀୟ ଦେଖି ପୁଣି ଅର୍ଥ ସଂଗ୍ରହ କରିବାକୁ ଉଦ୍ୟମ କଲେ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ସେ ଜିଲ୍ଲା କଂଗ୍ରେସ କମିଟିମାନଙ୍କ କାର୍ଯ୍ୟରେ ଅବହେଳା ପ୍ରକାଶ ପାଉ ଥିବାର ଦେଖି ତହିଁର ପୁନର୍ଗଠନକାର୍ଯ୍ୟ ଆରମ୍ଭ କଲେ ।

ସତ୍ୟବାଦୀରେ ରହି ସେ ଦେଶର ମୁଖିଆ ମୁଖିଆ ଲୋକମାନଙ୍କ ସହିତ ସାଧାରଣ କାର୍ଯ୍ୟରେ ସୁବିଧାରେ ଯୋଗ ଦେଇ ପାରୁ ନାହାନ୍ତି ଏବଂ ପୁରୀର ସାଧାରଣ ଜାତୀୟ ଜୀବନ ନିସ୍ତେଜ ହୋଇ ପଡ଼ିଅଛି ଦେଖି ଗୋପବନ୍ଧୁ ପୁରୀରେ ରହିବା ପାଇଁ ଠିକ କରିଥିଲେ । 'ସମାଜ',ସତ୍ୟବାଦୀରୁ ପ୍ରକାଶିତ ନ ହୋଇ ପୁରୀରୁ ଏଣିକି ପ୍ରକାଶିତ ହେବାଲାଗି ୧୯୨୫ ମସିହା ଜାନୁଆରୀ ମାସରେ ସେ 'ସତ୍ୟବାଦୀ ପ୍ରେସ'କୁ ପୁରୀ ନେଇଯାଇଥିଲେ । ସେଠାରେ ଗୋପବନ୍ଧୁ ଗୋଟିଏ ସାପ୍ତାହିକ ଇଂରାଜୀ ପତ୍ରିକା ପ୍ରକାଶ କରିବାର ମନସ୍ଥ କରିଥିଲେ । ସେଥିପାଇଁ ତାଙ୍କର ପୁରାତନ ସହକର୍ମୀ, ସତ୍ୟବାଦୀ ବିଦ୍ୟାପୀଠର ସୁଯୋଗ୍ୟ ଅଧ୍ୟକ୍ଷ, ଉତ୍କଳର ପ୍ରସିଦ୍ଧ ଐତିହାସିକ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କୁ ନିଜ ପାଖରେ ପୁରୀରେ ରଖାଇବାର ବ୍ୟବସ୍ଥା କରିଥିଲେ । ମାତ୍ର ସେ ବାସନା ପୂର୍ଣ୍ଣ ନ ହେଉଣୁ ୧୯୨୬ ମସିହା ଫେବ୍ରୁଆରୀ ମାସରେ ପଣ୍ଡିତ କୃପାସିନ୍ଧୁ ମହାପ୍ରୟାଣ କଲେ । କୃପାସିନ୍ଧୁଙ୍କ ବିଚ୍ଛେଦ ଗୋପବନ୍ଧୁଙ୍କ ପ୍ରାଣରେ ଦାରୁଣ ଆଘାତ ଦେଇଥିଲା । ପୁରୀର ଅବସ୍ଥାନ ସମୟରେ ଅପ୍ରେଲମାସ ତା ୨୨ ରିଖରେ ବିହାର ଓଡ଼ିଶା ଲାଟ ମହୋଦୟଙ୍କୁ ଏମାରମଠ ମହନ୍ତ ଏକ ଉଦ୍ୟାନ ସମ୍ମିଳନରେ ଅଭ୍ୟର୍ଥନା କରିଥିଲେ । ଏ ଉପଲକ୍ଷରେ ବିରାଟ ଆୟୋଜନ ହୋଇଥିଲା । ପ୍ରାୟ ଦଶହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ସହରବାସୀ ସମସ୍ତେ ଉତ୍ତ୍ୟକ୍ତ ହୋଇଥିଲେ । ସେଦିନ ସଂଧ୍ୟାରେ ସିଂହଦ୍ୱାର ଆଗରେ ଗୋଟିଏ ସଭା ହେବାର ଥିଲା । ସେଥିରେ ଶାନ୍ତି ଭଙ୍ଗର ଆଶଂକା କରି ସ୍ଥାନୀୟ ହାକିମ ଗୋପବନ୍ଧୁଙ୍କ ଉପରେ ୧୪୪ ଧାରା ନୋଟିସ ଜାରି କଲେ । ଯେଉଁ ଲୋକ

କାରାଗାରର ନିର୍ଜନ ପ୍ରକୋଷ୍ଠକୁ ଭୟକର ନ ଥିଲା ସେ କ ଏହି ବ୍ୟାଁଟିସବୁ ଭୟ କର ପାରେ ? ସରକାର ନାନା ପ୍ରକାରେ ତାଙ୍କ ବନ୍ଦ ... କୁ ବସିଲେ ସୁଦ୍ଧା ତାଙ୍କର ବଳମ ଓ ସାହସ କମେ ବଢ଼ିଲା ।

ଏହିବର୍ଷ ଜୁନମାସରେ ପୁରୀ ଜିଲାରେ ଭୟଙ୍କର ବନ୍ୟାବୃଦ୍ଧି ହେଲା । ଗ୍ରାମଆଡ଼ ଜଳପୂର୍ଣ୍ଣ ହୋଇ ଚଲ୍କାମୟ ଦେଖାଗଲା । ଜୁନ ତା ୨୭ରିଖରୁ ବଢ଼ି ଆରମ୍ଭ ହେଲା କିନ୍ତୁ ଅଗଷ୍ଟମାସ ସୁଦ୍ଧା ପାଣି ଘୁଞ୍ଚି ନଥିଲା । ଏପରି ସମୟରେ ଗୋପବନ୍ଧୁ ଆଚାର୍ଯ୍ୟ ହରିହର ଓ କେତେକ ସ୍ୱେଚ୍ଛାସେବକଙ୍କୁ ନେଇ ପୁରୀଜିଲାର ମଫସଲମାନଙ୍କରେ ବୁଲି ସମସ୍ତଙ୍କୁ ଚୂଡ଼ା ଗୁଡ଼ଳ ବାଣ୍ଟିଲେ । ସବୁ ସ୍ଥାନର ଲୋକମାନଙ୍କ ଅବସ୍ଥା ଅତି ଶୋଚନୀୟ ଦେଖିଲେ । ସମସ୍ତେ ସବୁଠାରେ ହା ହତୋସ୍ମି ହୋଇ ବସିଥିଲେ । ଏଗାଁରୁ ସେଗାଁକୁ ଯିବାର ବାଟ ନଥିଲା । ଗୁଡ଼ଳ କଥା ଗୁଡ଼ ମାଣ୍ଡିଆ ସୁଆଁ ପ୍ରଭୃତି କିଛି ଖାଇବାକୁ ମିଳୁ ନ ଥିଲା । ଯେଉଁ ଗାଁରୁ ଟିକିଏ ପାଣି ଘୁଞ୍ଚିଥିଲା ସେ ଗାଁ ପଙ୍କ କାଦୁଅରେ ପୂର୍ଣ୍ଣ ଥିଲା । କୌଣସି ଚଷା ଘରେ ପୋଷେ ସୁଦ୍ଧା ଧାନ ଦେଖିଲେ ନାହିଁ । ବଡ଼ଗୃହୀମାନେ କଂସା ଗିନା ବିକି ଭାଙ୍ଗି ଖାଇ ସାରଲେଣି । ମୂଲିଆମାନେ ନିରୁପାୟ ହୋଇ ବସିଲେଣି । ଗୋରୁ ଗାଈଙ୍କ ଦୁଃଖ କହିଲେ ନ ସରେ । ସେମାନେ ବରାବର ଗୁହାଳରେ ବନ୍ଧାହୋଇ ପଡ଼ିଛନ୍ତି । ଘାସ ପତ୍ର ଗୁଡ଼ା, ଯେ କୌଣସି ସବୁଜ ବର୍ଣ୍ଣ ପତ୍ର ଖାଇବାକୁ ଖୋଜିଲେ ପାଉ ନାହାନ୍ତି । ଏ ସମୟରେ ଆଞ୍ଜୁଳେ ଦ ଆଞ୍ଜୁଳା ଗୁଡ଼ଳ ଦେଇ କିଛି ଲାଭନାହିଁ ମାତ୍ର ଏ ବିପତ୍ତି ସମୟରେ ସେମାନଙ୍କ ମନରେ ଟିକିଏ ଦମ୍ଭ ଆଣିବାପାଇଁ ସେମାନଙ୍କୁ କିଛି ଖାଇବାକୁ ଦେବାରେ ଆଶା ଦେବାପାଇଁ ଗୋପବନ୍ଧୁ ଗ୍ରାମେ ଗ୍ରାମେ ବୁଲି ଲୋକଙ୍କରଅବସ୍ଥା ଦେଖୁଥିଲେ । ତେଣୁ ଫେରିଆସି ପୁରୀରେ ଗୋଟିଏ ସାଧାରଣ ସଭା କରି ବନ୍ୟାପୀଡ଼ିତ ଲୋକମାନଙ୍କର ଅବସ୍ଥା ଜନସାଧାରଣକୁ ଜଣାଇଲେ । ଗୋପବନ୍ଧୁ ସେଠାରେ ବ୍ରହ୍ମଗିରି କଣାସ ଚାଁଶକୁଦ ଅଂଚଳର ଅବସ୍ଥା ବର୍ଣ୍ଣନା କଲେ ଗଲାବର୍ଷ ମରୁଡ଼ି ଯୋଗେ ଫସଲ ହୋଇ ନଥିଲା । ଲୋକେ ଘୋର ଅନ୍ନକଷ୍ଟ

ଭେଗି ଯାଉଲେଣି । ବନ୍ୟାର ଧକ୍କା ସମ୍ଭାଳିବା ଲାଗି ସେମାନଙ୍କର ଆଉ ଶକ୍ତି ନାହିଁ । ଗୋପବନ୍ଧୁ ଲୋକମାନଙ୍କର ଅବସ୍ଥା ଅତି କାତର ଓ ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରୁଥିଲେ । ନିଜେ ଧୈର୍ଯ୍ୟ ଧରି ନ ପାରି କାନ୍ଦି ପକାଉଥିଲେ । ତାଙ୍କର ଏ କାତରୋକ୍ତି ଦେଖି ସଭାସ୍ଥ ଲୋକେ କାନ୍ଦୁଥିଲେ । ତାଙ୍କ ସଂଗେ ସଂଗେ ସେ ଅଂଚଳରୁ ଫେରିଥିବା ସ୍ୱେଚ୍ଛା ସେବକଗଣ ସେ ଅଂଚଳର ଅବସ୍ଥା ବର୍ଣ୍ଣନା କଲେ । ଏବଂ ଅନ୍ନକଷ୍ଟ ନିବାରଣ ନିମନ୍ତେ ଦୁର୍ଭିକ୍ଷ ନିବାରଣୀ ସମିତିକୁ ଗୋପବନ୍ଧୁ ଅନୁରୋଧ କରୁଥିଲେ । ଗୋପବନ୍ଧୁ ସଭାରେ ଘୋଷଣା କରୁଥିଲେ ଯେ ସଭାପତି ଏମାରମଠ ମହାରାଜ ଆପାତତଃ ଏକାର୍ଯ୍ୟରେ ଟ୧୦୦୦୦/ ଦେବାକୁ ପ୍ରତିଶ୍ରୁତ ହୋଇ ଅଛନ୍ତି । ମଠ ଓ ମନ୍ଦିରମାନଙ୍କର ଉଉନ୍ନ ପ୍ରଜାମାନଙ୍କପ୍ରତି ଉପସ୍ଥିତ ଘଟଣାରେ ଯେ ବିଶେଷ ଦାୟିତ୍ୱ ଅଛି ତାହା ଭଲରୂପେ ବୁଝାଇଥିଲେ । ଏହି କାତରୋକ୍ତି ଶୁଣି ଅନ୍ୟମାନେ ଚାନ୍ଦା ଦେବାକୁ ସ୍ୱୀକାର କରିଥିଲେ । ଉକ୍ତ ସଭା ଫଳରେ ପୁରୀ ଦୁର୍ଭିକ୍ଷ ସାହାଯ୍ୟ କମିଟିର ଏକ ବୈଠକ ହୋଇଥିଲା । ସେଥିରେ ବନ୍ୟାପୀଡ଼ିତ ଅଂଚଳର ବନ୍ୟାକଷ୍ଟ ନିବାରଣ ନିମନ୍ତେ ସୂତାକଟା କେନ୍ଦ୍ର ଖୋଲାଯିବ ଏବଂ ସ୍ଥଳ ବିଶେଷରେ ଲୁଗା ବୁଣାର ବ୍ୟବସ୍ଥା ହେବ । ଏହା ଛଡ଼ା ସ୍ଥାନୀୟ ଅବସ୍ଥା କୌଳିକ କାର୍ଯ୍ୟ ବିବେଚନାରେ କୌଣସି କୌଣସି ଠାରେ ଅନ୍ୟ କୌଣସି କାର୍ଯ୍ୟ ଆୟୋଜନ କରା ଯାଇପାରେ । ଏ ସମସ୍ତ କାର୍ଯ୍ୟ ପରିଚାଳନ ଭାର ଗୋପବନ୍ଧୁଙ୍କ ଉପରେ ନ୍ୟସ୍ତ ହେଲା । ସେ ବଙ୍ଗଖଦ୍ଦ ପ୍ରତିଷ୍ଠାନର କର୍ତ୍ତୃପକ୍ଷଙ୍କ ସଂଗେ ପରାମର୍ଶ କରି ସେହି ଢଙ୍ଗରେ ବିପନ୍ନ ଅଂଚଳରେ ଅରଟ କାର୍ଯ୍ୟ ଚଳାଇବେ । ଏହା ଛଡ଼ା ନିତାନ୍ତ ଅକର୍ତ୍ତବ୍ୟ ବ୍ୟକ୍ତିମାନଙ୍କୁ ଦେଖିଶୁଣି ମୁଷ୍ଟି ଦେବାର ପ୍ରସ୍ତାବ ହୋଇଥିଲା । ସେହିସବୁ ଅଞ୍ଚଳରେ ସାହାଯ୍ୟ କରିବାପାଇଁ ଭିନ୍ନ ଭିନ୍ନ ସ୍ଥାନମାନଙ୍କରେ କେନ୍ଦ୍ର ଖୋଲା ଯାଇ ଅରଟରେ ସୂତା କଟା ଗଲା । ମଜୁରି ଟିକିଏ ବଢ଼ାଇ ଦିଆ ଯାଇ ଲୋକମାନଙ୍କୁ ସାହାଯ୍ୟ କରାଗଲା । ସେହି ସୂତାରେ ଲୁଗା ବୁଣାହୋଇ ଦେଶରେ ବିକି ହୋଇ ସେହି କାର୍ଯ୍ୟରେ ପୁଣି ଲାଗିଲା । ଏ ଲୋକମାନଙ୍କର

ଅବସ୍ଥା ଦୃଷ୍ଟିରେ ସୂତାକଟା ବ୍ୟବସାୟ କେବଳ ଏମାନଙ୍କ ମୁହରେ ଅନ୍ନ ଯୋଗାଇବ ଭାବି ଏ ଅଂଚଳ ମାନଙ୍କରେ ସୂତାକଟା କେନ୍ଦ୍ର ସ୍ଥାୟୀଭାବରେ ଖୋଲିଲେ । ଏହି କେନ୍ଦ୍ରମାନ ଏକ ଅନୁଷ୍ଠାନ ଅଧୀନରେ ରଖି ଏହାର କାର୍ଯ୍ୟ ଶୃଙ୍ଖଳା ମତେ ଚଳାଇବା ପାଇଁ ବଙ୍ଗଳାର ଖଦି ପ୍ରତିଷ୍ଠାନ ଅଧୀନରେ ବଙ୍ଗଳାର ମଫସଲ କେନ୍ଦ୍ର ମାନଙ୍କରେ ଗୋପବନ୍ଧୁ ନିଜେ ବୁଲି ସେଠାର କାର୍ଯ୍ୟ ପ୍ରଣାଳୀ ଦେଖିଆସି ପୁରୀ ଜିଲ୍ଲାରେ ଚରଖା କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ପ୍ରତିଷ୍ଠିତ Puri Charka Relief Department ପୁରୀ ଦୁର୍ଭିକ୍ଷ ଖଦି ବିଭାଗ ତାଙ୍କର ନେତୃତ୍ୱ ଓ ସାହାଯ୍ୟ ଫଳରେ ଗୋଟିଏ ସୁନ୍ଦର ଓ ସୁପ୍ରତିଷ୍ଠିତ ଅନୁଷ୍ଠାନ ରୂପେ ଗ୍ୟଲିଛି । କେବଳ ପୁରୀ ଜିଲ୍ଲାର କେତେକ ଅଂଚଳ ଯେ ଏହିଥର ଧୋଇରେ ନଷ୍ଟ ହୋଇଥିଲା ତାହାନୁହେ । କଟକର ଆଳ ପ୍ରଭୃତି ବିଭିନ୍ନ ଅଂଚଳ ଓ ବାଲେଶ୍ୱରର କେତେକ ଅଂଚଳ ଧୋଇରେ ନଷ୍ଟ ହୋଇଥିଲା । ଏହି ସମୟରେ ମହାତ୍ମା ଗାନ୍ଧି ସେହି ଅଗଷ୍ଟ ମାସ ତା୨୨ରେ କଟକକୁ ଆସିଥିଲେ । ଓଡ଼ିଶାରେ କଂଗ୍ରେସ କାର୍ଯ୍ୟ ଚଳାଇବା ପାଇଁ ଗୋପବନ୍ଧୁଙ୍କ ସଙ୍ଗରେ କେତେକ ପରାମର୍ଶ କରିଥିଲେ । ଓଡ଼ିଶା ବନ୍ୟା ଅଂଚଳରେ ଚରଖା ଚଳାଇଲେ ତହିଁର ପ୍ରତୀକାର ହେବ ବୋଲି ମହାତ୍ମାଜୀ କହିଥିଲେ । ପୁରୀର ନାନା ସ୍ଥାନରେ ବୁଲି ଗୋପବନ୍ଧୁ ବନ୍ୟାକ୍ଲିଷ୍ଟ ଲୋକଙ୍କ ଅବସ୍ଥା ନେଇ ଖବରକାଗଜରେ ଆଲୋଚନା କରୁଥିଲେ ମାତ୍ର ସରକାର ସେ ଲୋକମାନଙ୍କୁ କୌଣସି ପ୍ରକାର ଆସ୍ଥା ଦେଖାଇଲେ ନାହିଁ । ଏହି ସଂପର୍କରେ ବନ୍ୟା ଅଂଚଳ ଦେଖାଇବାପାଇଁ ଶ୍ରଦ୍ଧେୟ ଆଣ୍ଡ୍ରୁଜ ସାହେବଙ୍କୁ ଗୋପବନ୍ଧୁ ଓଡ଼ିଶାକୁ ଅଣାଇ ଥିଲେ । ଆଣ୍ଡ୍ରୁଜ ନିଜେ ବନ୍ୟା ପୀଡ଼ିତ ସ୍ଥାନମାନ ଦେଖି ସରକାରକୁ ଜଣାଇଲେ । ଫଳରେ କିଛି ନ ହେବାରୁ ଗୋପବନ୍ଧୁ ଦୁର୍ଭିକ୍ଷ ସାହାଯ୍ୟ ସମିତି ପାଣ୍ଠିରୁ କିଛି ଟଙ୍କା ନେଇ ଓ ସ୍ଥାନୀୟ ଚାନ୍ଦା ଆଦାୟ କରି ବନ୍ୟା ଅଂଚଳରେ ଲୋକମାନଙ୍କ ବଞ୍ଚାଇଲେ ।

ଏହି ସମୟରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟର କର୍ମୀମାନେ ଉକ୍ତ ବିଦ୍ୟାଳୟକୁ ପାଟଣା ବିଶ୍ୱ ବିଦ୍ୟାଳୟ ସାମିଲ କରିବେ ବୋଲି ବସିଥିଲେ । ସେଥିରେ ଗୋପବନ୍ଧୁ ସମ୍ମତ ନ ହୋଇ ସତ୍ୟବାଦୀ ଇସ୍କୁଲର ସଂପର୍କ ତୁଟାଇ ଥିଲେ । ୧୯୨୭ ମସିହାରେ ଓଡ଼ିଶା ପକ୍ଷରୁ ଭାରତ ବ୍ୟବସ୍ଥାପକ ସଭା ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭାକୁ ମେମ୍ବରମାନେ ଯିବାଲାଗି ଓଡ଼ିଶାରୁ ଭିନ୍ନ ଭିନ୍ନ ପ୍ରାର୍ଥୀମାନେ ବିଭିନ୍ନ ଦଳସୃଷ୍ଟି କରିବାକୁ ଲାଗିଲେ । କେତେକ କଂଗ୍ରେସ ମେମ୍ବର କଂଗ୍ରେସ ପକ୍ଷରୁ କାଉନ୍‌ସିଲକୁ ଯିବେ ବୋଲି ଏବଂ ଦଳଗତ ଭାବରେ ନିର୍ବାଚନ କାର୍ଯ୍ୟ କରାଯିବ ବୋଲି ପ୍ରାଦେଶିକ କଂଗ୍ରେସ କମିଟିର ବୈଠକରେ ପ୍ରସ୍ତାବ ଆଣିଲେ । ଗୋପବନ୍ଧୁ ସେ ପ୍ରସ୍ତାବର ବିରୁଦ୍ଧରେ ମତଦେଲେ, ଗୋପବନ୍ଧୁଙ୍କ ବିପକ୍ଷରେ ଅଧିକାଂଶଙ୍କ ମତ ହେବାରୁ କଂଗ୍ରେସ ପକ୍ଷରୁ ଦଳଗତ ନିର୍ବାଚନ ହେବାର ସ୍ଥିର ହେଲା । ପ୍ରାର୍ଥୀ ନିର୍ବାଚନ କାର୍ଯ୍ୟ ପରିଚାଳନ ଓ ନିର୍ବାଚନ ପରେ ନିର୍ବାଚିତ କଂଗ୍ରେସ ମେମ୍ବର ମାନଙ୍କର କାଉନ୍‌ସିଲଭିତରେ ଓ ବାହାରେ କାର୍ଯ୍ୟଗତିନିରୂପଣପ୍ରଭୃତି ସମସ୍ତ କାର୍ଯ୍ୟରଭାର ଗୋପବନ୍ଧୁଙ୍କ ଉପରେ ରଖାଗଲା । ଗୋପବନ୍ଧୁପ୍ରଥମେ ଅସ୍ୱୀକୃତ ହୋଇଥିଲେ, ଏବଂ ଦଳଗତ ଭାବରେ ନିର୍ବାଚନ କାର୍ଯ୍ୟ ନ କରିବା ଲାଗି ପୁଣି ପରାମର୍ଶ ଦେଇଥିଲେ, ମାତ୍ର ଶେଷରେ କମିଟିର ଅନୁରୋଧ କ୍ରମେ ସ୍ୱୀକୃତ ହେଲେ ଏବଂ କହିଲେ ସେ ଯେ ସର୍ତ୍ତ ଦେବେ ତାହା ପୁରାମାତ୍ରାରେ ପରିପାଳିତ ନ ହେଲେ ସେ ଦାୟିତ୍ୱ ଗ୍ରହଣ କରିବେ ନାହିଁ । ସ୍ଥୂଳରେ ସେ କେତେକ ସର୍ତ୍ତ ବ୍ୟକ୍ତ କରିଥିଲେ । ପ୍ରଧାନତଃ—(୧) ପ୍ରାଦେଶିକ କମିଟିରେ ଗୋଟିଏ କାଉନ୍‌ସିଲ କମିଟି ରହିବ ଏହି କମିଟି ତତ୍ତ୍ୱାବଧାନରେ ନିର୍ବାଚନ କାର୍ଯ୍ୟ ଚଳିବ । (୨) ନିର୍ବାଚନ ପରେ ନିର୍ବାଚିତ ମେମ୍ବର ମାନଙ୍କର କାର୍ଯ୍ୟ କଳାପ ଏହି କମିଟି ଦ୍ୱାରା ଅବଧାରିତ ହେବ (୩) ଏହି କମିଟିର ବ୍ୟୟ ସକାଶେ ପ୍ରତ୍ୟେକ କାଉନ୍‌ସିଲ ମେମ୍ବରଙ୍କୁ ମାସିକ ଦଶଟଙ୍କା ଓ ପ୍ରତ୍ୟେକ ଆସେମ୍ବ୍ଲି ମେମ୍ବରଙ୍କୁ ମାସିକ ୨୦୯ ଦେବାକୁ ହେବ । (୪) କାଉନ୍‌ସିଲ ବା ଆସେମ୍ବ୍ଲିରେ ଏବଂ ବାହାରେ ନିଜ ନିଜ ଇଲାକାରେ ନିର୍ବାଚିତ ମେମ୍ବରମାନେ କଣ କଲେ ତହିଁର ତ୍ରୈମାସିକ ବିବରଣ ଏହି

କମିଟିକୁ ଦେବେ । (୫) କମିଟିର ସାହାଯ୍ୟରେ ଆପଣା ଇଲାକାମଧ୍ୟରେ ଭୋଟଦାତା ସମିତି ଗଠନ କରି ସାଧାରଣତଃ ଲୋକମତ ଗଠନର ଚେଷ୍ଟା କରିବେ । ଏହି ସବୁ ସର୍ତ୍ତ ପ୍ରାର୍ଥୀମାନଙ୍କୁ ଜଣାଇବା ପାଇଁ କଂଗ୍ରେସ କମିଟିର ସଂପାଦକଙ୍କୁ ଅନୁରୋଧ କଲେ । ପ୍ରାର୍ଥୀମାନଙ୍କଠାରୁ ଉତ୍ତର ମିଳିଲେ ସେମାନଙ୍କର ମତାମତ ଜଣା ପଡ଼ିଲେ ତଦନୁଯାୟୀ କାର୍ଯ୍ୟକାରୀ ହେବେ ବୋଲି କହିଲେ । ଅଧିକାଂଶଙ୍କ ମତ ନ ହେଲେ କିମ୍ବା ଅଧିକାଂଶ ପ୍ରସ୍ତାବିତ ସର୍ତ୍ତରେ ସ୍ୱୀକୃତ ନ ହେଲେ ତାଙ୍କର ଦାୟିତ୍ୱ ଶେଷ ହେବ ବୋଲି କହିଲେ । ଶେଷରେ, ସେଥର କାଉନ୍‌ସିଲ ଓ ଆସେମ୍ବ୍ଲିରେ ମେମ୍ବରମାନେ କଂଗ୍ରେସ ତରଫରୁ ଦଳବଦ୍ଧଭାବରେ ପଶିଲେ ।

ଓଡ଼ିଶାର କର୍ମୀମାନଙ୍କମଧ୍ୟରେ ବ୍ୟବସ୍ଥାପକ ସଭାକୁ ଯିବା ପାଇଁ ଧୂମଧାମ ଲାଗିଲାବେଳେ ଗୋପବନ୍ଧୁ ସେଥିରେ ଟିକିଏମାତ୍ର କାର୍ଯ୍ୟବ୍ୟସ୍ତ ଥିଲେ ସୁଦ୍ଧା ତାଙ୍କର ପ୍ରକୃତ କାର୍ଯ୍ୟରୁ କ୍ଷାନ୍ତ ନ ଥିଲେ । ଓଡ଼ିଶାର ଏପରି ଅବସ୍ଥାରେ ମଧ୍ୟ ସେ ଏ ଗଣ୍ଡଗୋଳର ବାହାରକୁ ଯାଇ କିଛି କାର୍ଯ୍ୟ କରିବେ ବୋଲି ଠିକ କରି ଗଂଜାମ ଯାତ୍ରା କଲେ । ଗଂଜାମ ଜିଲାରେ ଅନେକଗୁଡ଼ିଏ ଶିଳ୍ପ ଏପର୍ଯ୍ୟନ୍ତ ଜାଗ୍ରତ ରହିଛି । ବ୍ରହ୍ମପୁରୀ ପାଟ ଓଡ଼ିଶାରେ ପ୍ରସିଦ୍ଧ । ଓଡିଶାର ବାହାରେ ବହୁଦୂର ଯାଏ ଏହାର ପ୍ରସାର ଅଛି । ପାଟ ସାଲୁଆ ଲୁଗା ଗଂଜାମର ଗୋଟିଏ ବିଶେଷତ୍ୱ । ଏ ଲୁଗା ହାତକଟା ସୂତାରେ ତିଆରି । ଏପରି ସରୁ ସୂକ୍ଷ୍ମ ଯେ ହାତ କଟା ବୋଲି କେହି ବିଶ୍ୱାସ କରିବେ ନାହିଁ । ଦେଶର ଗୃହଆଡ଼ୁ ସୂତାକଟା ଲୋପ ପାଇଥିଲେ ସୁଦ୍ଧା ଗଂଜାମର ପାଟସାଲୁଆମାନେ ତାହା ଏ ପର୍ଯ୍ୟନ୍ତ ରଖିଛନ୍ତି । ଗଂଜାମର ମଫସଲରେ ମଧ୍ୟ ଲୋକେ ସୂତା କାଟୁଥିଲେ । ଏ ସବୁ କାରଣରୁ ଖଦଡ଼କାର୍ଯ୍ୟ ନିମନ୍ତେ ଗଂଜାମ ଏକ ପ୍ରଶସ୍ତ କ୍ଷେତ୍ର । ସେଠା ସରକାରୀ ବା ରାଜାରାଜୁଡ଼ାଙ୍କ କର୍ମଚାରୀମାନଙ୍କର ଖଦଡ଼ ପ୍ରତି କୋଳୁଆ ଭୟ ନଥିଲା । ସେମାନଙ୍କମଧ୍ୟରୁ କେତେକ ନିଜେ କିଣି ଅନ୍ୟମାନଙ୍କୁ କଣିବାକୁ ପ୍ରବର୍ତ୍ତାଉଥିଲେ । ଗୋପବନ୍ଧୁ ଏହାକୁ ଖଦଡ଼କାର୍ଯ୍ୟର ଉପଯୁକ୍ତ କ୍ଷେତ୍ର ମଣି ଆଗ୍ରହ ଉତ୍ସାହର ସହିତ

ପୂର୍ବ ସ୍ମୃତ ଜାଗ୍ରତ ରଖିବା ପାଇଁ ଗଂଜାମର ଲୋକମାନଙ୍କମଧ୍ୟରେ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ ।

ସେଠାରେ କାର୍ଯ୍ୟ କରିବା ସମୟରେ ଓଡ଼ିଶାରେ ଅତି ଏକ ଘୋର ଦୁର୍ଦ୍ଦଶା ପଡ଼ିଥିଲା । ୧୯୨୭ ଅଗଷ୍ଟ ଶେଷ ସପ୍ତାହ ମଧ୍ୟରେ ପୁଣି କଟକ ପୁରୀ ବାଲେଶ୍ୱର ତିନିଜିଲ୍ଲାରେ ବନ୍ୟା ଉପସ୍ଥିତ । ଏପରି ଭୀଷଣ ବନ୍ୟା ଗଲା କେତେବର୍ଷ ହେଲା ହୋଇ ନଥିଲା ବୋଲି ଲୋକେ କହୁଥିଲେ । ଏହି ଅକସ୍ମାତ୍ ଆସିଲା । ଓଡ଼ିଶାର ଗୃହିଆଡୁ ଚଠି ଟେଲିଗ୍ରାମ ପ୍ରଭୃତି ତାଙ୍କ ନିକଟରେ ଗଂଜାମଠାରେ ଜମା ହେଲା । ଭିନ୍ନ ଭିନ୍ନ ସ୍ଥାନକୁ ଯାଇ ଦେଖିବା ପାଇଁ ତାଙ୍କୁ ସମସ୍ତେ ଅନୁରୋଧ କରିଥିଲେ । ଦୁର୍ଭାଗ୍ୟବଶତଃ ଏତିକବେଳକୁ ତାଙ୍କର ଦେହ ବ୍ୟସ୍ତଥିଲା । ସେ ଅସୁସ୍ଥଥିବାରୁ କୌଣସିଆଡ଼କୁ ଯାଇପାରି ନ ଥିଲେ । ଆଗରୁ ପୁରୀ ଦୁର୍ଭିକ୍ଷ ସାହାଯ୍ୟ କମିଟିରୁ ଯେଉଁ ସାହାଯ୍ୟ ଦିଆ ଯାଉଥିଲା ସେହି କର୍ମୀମାନଙ୍କୁ ଦେଶର ନାନାସ୍ଥାନକୁ ପଠାଇଲେ । କଟକର ଅବସ୍ଥା ଜଣାଇବାଲାଗି ଭଗୀରଥିବାବୁଙ୍କୁ ଅନୁରୋଧ କରିଥିଲେ । ଦେହ ଭଲହେଲେ କେନ୍ଦ୍ରାପଡ଼ା ଯାଜପୁର ଅଂଚଳକୁ ଆଗେ ଯିବେ ବୋଲି ପ୍ରତିଶ୍ରୁତ ହୋଇଥିଲେ । ବାଲେଶ୍ୱରର ହରେକୃଷ୍ଣ ମହତାବଙ୍କ ନିକଟକୁ ସେଠା ଅବସ୍ଥା ଲେଖିବାପାଇଁ ଟେଲିଗ୍ରାମ କଲେ । ସୁଖର କଥା ଏବର୍ଷ ଓଡ଼ିଶାର ଅନ୍ୟାନ୍ୟ ଅଂଚଳରେ ବଢ଼ି ପ୍ରବଳ ହୋଇ ସେତେ କଷ୍ଟ ଛତି କରି ନଥିଲା । କେବଳ ପୁରୀ ଜିଲାର କେତେକ ଅଂଚଳର ଅବସ୍ଥା ଅତୀବ ଶୋଚନୀୟ ହୋଇଥିଲା । ପ୍ରତିବର୍ଷ ପୁରୀରେ ଧୋଇ ମରୁଡ଼ି ଲାଗି ରହିଛି । ଏଥର ସ୍ଥାୟୀ ପ୍ରତିକାର ନମିତ୍ତ ଅରଟ ଏକମାତ୍ର ପ୍ରତିକାର ଜାଣି ପୁରୀଜିଲାର ଭିନ୍ନ ଭିନ୍ନ ସ୍ଥାନରେ ପୂର୍ବପ୍ରତିଷ୍ଠିତ ଅରଟ କେନ୍ଦ୍ରମାନ ସ୍ଥାୟୀ କରିବାକୁ ଲାଗିଲେ ଏବଂ ଖଇରାତି ମୁଠିମଧ୍ୟ ଦେବାର ବନ୍ଦୋବସ୍ତ କଲେ ।

୧୯୨୫ ସାଲରେ ମହାମନା ଆଣ୍ଡ୍ରୁଜଙ୍କୁ ଗୋପବନ୍ଧୁ ଯେତେବେଳେ ପୁରୀ ବନ୍ୟା ଅଞ୍ଚଳ ଦେଖାଇବାକୁ ଆଣିଥିଲେ ସେତେବେଳେ ସେ ଲୋକ-

ମାନଙ୍କର ଦୁର୍ଦ୍ଦଶା ଦେଖି ଖବର କାଗଜମାନଙ୍କରେ ପ୍ରକାଶ କରୁଥିଲେ । ସେଥିରେ ପଞ୍ଜାବକେଶରୀ ଲାଲା ଲଜପତ ରାୟ ବ୍ୟଥିତ ହୋଇ ତାଙ୍କ ପ୍ରତିଷ୍ଠିତ The Servants of the People Society ବା ଲୋକସେବକ ସମାଜ ତରଫରୁ ଲାଲା ମୋହନ ଲାଲଙ୍କୁ ଓଡ଼ିଶାର ବନ୍ୟା ଅଂଚଳରେ କାର୍ଯ୍ୟକରିବା ପାଇଁ ପଠାଇଥିଲେ । ୧୯୨୭ ଫେବୃଆରୀ ମାସରେ ଗୋପବନ୍ଧୁଙ୍କର ଯେତେବେଳେ କଲିକତାଠାରେ ଲଜପତରାୟଙ୍କ ସଙ୍ଗେ ଦେଖାହେଲା ସେ କଥାପ୍ରସଙ୍ଗରେ ଗୋପବନ୍ଧୁଙ୍କୁ ତାଙ୍କ ପ୍ରତିଷ୍ଠିତ ସମାଜର ସଭ୍ୟ ହେବାପାଇଁ ଅନୁରୋଧ କରିଥିଲେ । ସେ କହୁଥିଲେ "ଗୋପବନ୍ଧୁ ! ତୁମ୍ଭେ ଗତ ୧୫ବର୍ଷ ଧରି ଯେଉଁ ସାଧାରଣ କାର୍ଯ୍ୟ କରି ଆସୁଅଛ, ସୋସାଇଟିର ମେମ୍ବର ହୋଇ ତାହାହିଁ କରିବ । ତୁମ୍ଭଙ୍କୁ ପାଇଲେ ଆମ୍ଭମାନଙ୍କର ପରମ ଭାଗ୍ୟ ହେବ । ମୋର ବିଶ୍ୱାସ ଏହା ଦ୍ୱାରା ଓଡ଼ିଶାର କାର୍ଯ୍ୟ ସୁଗମ ହେବ । ସୋସାଇଟିରେ କାର୍ଯ୍ୟକରିବା ଦ୍ୱାରା ତୁମ୍ଭର କାର୍ଯ୍ୟ ଏକ ଦଳଗତ ଉଦ୍ୟମର ଅନ୍ତର୍ଭୁକ୍ତ ହେବ । ତୁମ୍ଭର ବ୍ୟକ୍ତିଗତ ସ୍ୱାଧୀନତା ବା ମତରେ କୌଣସି ବାଧା ଘଟିବ ନାହିଁ । ଗୋପବନ୍ଧୁ ତାଙ୍କର ମତକୁ ଉପେକ୍ଷା ନ କରି କିଛି ଦିନ ଭାବି ତାଙ୍କୁ ସମ୍ମତି ଦେଲେ । ତାଙ୍କ ଜୀବନର ପ୍ରାରମ୍ଭରୁ ଦଳଗତ ଉଦ୍ୟମର ଚେଷ୍ଟା ବରାବର ଲାଗିଥିଲା । ଏହି ଦଳର ସାହାଯ୍ୟ ଏବଂ ସହଯୋଗିତା ପାଇ ପାରିଲେ ତାଙ୍କର ପ୍ରଧାନ ବଳ ଓ ସୁବିଧା ହେବ ବୋଲି ସେ ଭାବିଥିଲେ । ଓଡ଼ିଶାର ଦଳର ଶକ୍ତି ଓ ଆବଶ୍ୟକତା ସେ ଅନେକ ଦିନୁଁ ବୁଝି ଓଡ଼ିଶାରେ ଦଳଗତ ଶକ୍ତି ଗଠନର ଉଦ୍ୟମ କରିଥିଲେ । ପ୍ରଥମରେ କଟକ ଉତ୍କଳଯୁବକକେନ୍ଦ୍ରସମିତି,ପରେ ସତ୍ୟବାଦୀରେ ମଧ୍ୟ ଏହି ଉଦ୍ୟମ ଚାଲିଥିଲା । ଦେଶଲାଗି ନୈଷ୍ଠିକ,ଶକ୍ତିଶାଳୀ ତ୍ୟାଗୀ ଦଳ ଲୋଡ଼ା । ପାରିବାରିକ କଂକାଳ, ଆପଣାର ବୈଷୟିକ ଉନ୍ନତି ବା ଦଳାଦଳି-ବିଭବଜାଲରେ ସେମାନେ ଛନ୍ଦି ନ ହୋଇ ସାଧାରଣ କାର୍ଯ୍ୟରେ ଆତ୍ମୋତ୍ସର୍ଗ କରିବେ ଏହିପରି ଦଳ ନ ବାହାରିବାଯାଏ ଦେଶର କୌଣସି ସ୍ଥାୟୀ ହିତକର କାର୍ଯ୍ୟ ହେବା ସମ୍ଭବ ନୁହେ— ଏହାହିଁ ସତ୍ୟବାଦୀ ଦଳ ଗଠନର ମୂଳ ତତ୍ତ୍ୱ ଓ ଲକ୍ଷ୍ୟ ଥିଲା । ମାତ୍ର ଓଡ଼ିଶା

ସେପରୁ କ୍ଷେତ୍ର ନୁହେଁ, ଓଡ଼ିଶାର ଲୋକମାନଙ୍କର ପ୍ରଭାବ ସେପରି ପ୍ରବଳ ନ ହେଁ,ସାଧନା ସେପରି ଦୃଢ଼ ନ ହେଁ ଏବଂ ସେମାନଙ୍କ ସଂଗଠନରେ ସେପରି ଶକ୍ତି ନ ଥିଲା । ସତ୍ୟବାଦୀ ଇସ୍କୁଲକୁ Servants of India Society ବା ଭାରତ ସେବକ ସମିତିର ଅନ୍ତର୍ଭୁକ୍ତ କରିବା ପାଇଁ ୧୯୨୦ସସିହା ଦୁର୍ଭିକ୍ଷବେଳେ ଠକ୍କର ସାହେବଙ୍କ ପ୍ରରୋଚନାରେ ସୋସାଇଟିର ସଭାପତି ଶ୍ରୀନିବାସ ଶାସ୍ତ୍ରୀଙ୍କନକଟକୁ ଲେଖାଲେଖିଚାଲିଥିଲା । ମାତ୍ର ଅସହଯୋଗଫଳରୁ ସେ ସମସ୍ତ ବନ୍ଦ ଥିଲା । ୧୯୨୭ ମସିହା ଫେବୃଆରୀ ମାସରେ ଉତ୍କଳରେ ଦଳଗତ ଉଦ୍ୟମର ଆରମ୍ଭ ପାଇଁ ସେ ଲାଲାଜୀଙ୍କର ଲୋକସେବକ ସମାଜର ସଭ୍ୟ ହେଲେ । ସେଥିରେ ତାଙ୍କର ସ୍ୱାଧୀନ ମତ ଉପରେ କିଛି ବାଧା ଘଟିନଥିଲା । କାଉନ୍‌ସେଲ ନର୍ବାଚନବେଳେ ଲାଲାଜୀଙ୍କର ଭିନ୍ନ ମତଥିଲେ ସୁଦ୍ଧା ଗୋପବନ୍ଧୁ ନିଜ ମତ ଅନୁସାରେ କାର୍ଯ୍ୟ କରୁଥିଲେ ଏବଂ ଓଡ଼ିଶାର ସଭ୍ୟ ହୋଇ କଟକଠାରେ ଏହାର ଗୋଟିଏ ଶାଖା ସ୍ଥାପନ କଲେ । ସେଠାରେ ଘରଭଡ଼ା ନେଇ ଗୋଟିଏ ପାଠାଗାର ସ୍ଥାପନ କରିଥିଲେ । ନିଜ ପ୍ରତିଷ୍ଠିତ ସମାଜ କାଗଜକୁ ଏହି ସମାଜର ଅନ୍ତର୍ଗତ ଖବର କାଗଜ ବୋଲି ଧରିଥିଲେ । ଏହି ସୋସାଇଟିର ଅଧୀନରେ ଓଡ଼ିଶା ରିଲିଫ Orissa Relief fund ଖୋଲା ଯାଇଥିଲା । ପୁରୀ କଟକ ଜିଲାର ଦୁର୍ଭିକ୍ଷ ଅଂଚଳମାନଙ୍କରେ ସ୍ତ୍ରୀରଗୋଟି ଧାନକୁଟାକେନ୍ଦ୍ର ଖୋଲାଯାଇଥିଲା । ସମାଜର କେତେଗୁଡ଼ିଏ କର୍ମୀ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟରେ ଲାଗିଥିଲେ । ଜମ୍, ମୋଚି, ମେହେନ୍ତରପ୍ରଭୃତି ନିମ୍ନବର୍ଣ୍ଣ ଲୋକଙ୍କମଧ୍ୟରେ ଶିକ୍ଷା ପ୍ରଚାର ଓ ସମବାୟ ସମିତି ସ୍ଥାପନ ପାଇଁ କାର୍ଯ୍ୟ କରୁଥିଲେ । କଲିକତା ଶ୍ରମଜୀବୀ ସଂଗଠନରେମଧ୍ୟ ଏ ଉଦ୍ୟମ ଥିଲା । ତାଙ୍କ କାର୍ଯ୍ୟରେ ସହାୟତା କରିବାପାଇଁ ତାଙ୍କର ସହକର୍ମୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ଏମ. ଏ.ଙ୍କୁ ସେହି ସମାଜର ସଭ୍ୟ କରାଇଥିଲେ । ଗୋପବନ୍ଧୁ ଉକ୍ତ ସଭାର ନିୟମ ଅନୁସାରେ ଉତ୍କଳରେ ଏହାର କାର୍ଯ୍ୟ ପ୍ରସାର ଲାଗି ଅହରହ ଯତ୍ନ କରୁଥିଲେ । ୧୯୨୮ ମସିହାରେ ସେ ଲାହୋରରେ ଲୋକସେବକ ସମାଜର ବାର୍ଷିକ ଅଧିବେଶନରେ ଯୋଗଦେଇ ସେଠାରେ ସେହି ସମାଜର ସହକାରୀ ସଭାପତି ନିର୍ବାଚିତ ହୋଇଥିଲେ ।

ଉତ୍କଳରେ ବିଧବାମାନଙ୍କର ଦୁର୍ଦ୍ଦଶା ଦେଖି ତାଙ୍କ ପ୍ରାଣ ସର୍ବଦା କାନ୍ଦୁଥିଲା ସେ ଉତ୍କଳ ବ୍ରାହ୍ମଣମାନଙ୍କ ମଧ୍ୟରେ ବାଲ୍ୟ ବିଧବା ବିବାହ ପ୍ରସ୍ତୁତ କରିବା ପାଇଁ ସର୍ବଦା ଯତ୍ନବାନ୍ ଥିଲେ। ସେଥିପାଇଁ ଯୁବକମାନଙ୍କୁ ସର୍ବଦା ପ୍ରେରଣା ଦେଉଥିଲେ। ନାନା ସ୍ଥାନରେ ସଭା ସମିତିମାନ କରି ଉତ୍କଳର ଗୃହସ୍ଥମାନଙ୍କୁ ବିଧବା ବିବାହ କରାଇବା ପାଇଁ ଉପଦେଶ ଦେଇ ବିବାହ କରିବା ପାଇଁ ପ୍ରତିଶ୍ରୁତ ଥିବା ଗୃହସ୍ଥମାନଙ୍କର ଏକ ଦଳ ଗଠନ କରୁଥିଲେ। ତାହାଁର ଫଳରେ କେତେକ ସ୍ଥାନରେ ବିଧବା ବିବାହ ଅନୁଷ୍ଠିତ ହୋଇଥିଲା। ମାତ୍ର ସମାଜର ଏ କୁସଂସ୍କାର ଏକାବେଳକେ ଦୂର ହେବା ଅସମ୍ଭବ ଦେଖି ସେ ବିଧବାମାନଙ୍କ ପାଇଁ କିଛି ସୁବ୍ୟବସ୍ଥା କରିବାର ସଂକଳ୍ପ କରିଥିଲେ। ଉତ୍କଳୀୟ ବିଧବାମାନେ ଘରୁବାହାରି ଯାଇ କଲିକତା ରେଙ୍ଗୁନ ଆଦି ସ୍ଥାନମାନଙ୍କରେ ନାନା ବ୍ୟଭିଚାର କରୁଥିବା ଜାଣି ସେ ଉତ୍କଳର ବିଭିନ୍ନ ସ୍ଥାନମାନଙ୍କରେ ବିଧବାଶ୍ରମମାନ ସ୍ଥାପନ ଉଦ୍ଦେଶ୍ୟରେ ପୁରୀଠାରେ ୧୯୨୭ମସିହାରେ "ଜଗନ୍ନାଥ ବିଧବାଶ୍ରମ" ନାମରେ ଏକ ଆଶ୍ରମ ସ୍ଥାପନ କରିଥିଲେ। କେବଳ ଓଡ଼ିଶାର ବିଧବାମାନଙ୍କୁ ଯେ ଏଠାରେ ରଖିବାର ସୁବିଧା କରାଯାଇଥିଲା ତାହା ନୁହେଁ, ବଙ୍ଗଳା ପ୍ରଭୃତି ଅନ୍ୟାନ୍ୟଦେଶର ବିଧବାମାନେ ମଧ୍ୟ ଏଠାରେ ଆଶ୍ରୟ ନେଇ ଥିଲେ ଜାତିନିର୍ବିଶେଷରେ ବ୍ରାହ୍ମଣ,କରଣ, କାୟସ୍ଥ,ସଦ୍ ଗୋପ ବିଭିନ୍ନ ସମାଜର ବିଧବାମାନେ ଏଠାରେ ରହୁଥିଲେ। ବିଧବାମାନେ ସେଠାରେ ଉତ୍ତମ ଶିକ୍ଷା ପାଇ ବ୍ରହ୍ମଚାରିଣୀ ବେଶରେ ଦେଶର ସେବା ଓ ଅନ୍ୟାନ୍ୟ ଜାତୀୟ କର୍ମରେ ଯୋଗ ଦେବେ, ଗୋପବନ୍ଧୁ ଏହି ଲକ୍ଷ୍ୟ ଓ ବିଶ୍ୱାସ ରଖି ଆଶ୍ରମର ପ୍ରତିଷ୍ଠା କରିଥିଲେ।

ବିଧାତାଙ୍କର ବିଧାନ ବିଚିତ୍ର। ସେ କର୍ମମୟ ଜୀବନର କର୍ତ୍ତ ପନ୍ଥା ଦିଶାଇ ଦିଅନ୍ତି। ଯେଉଁଠାରେ ଯେତେବେଳେ କର୍ମର ଆବଶ୍ୟକ ହୁଏ ସେଠାରେ ସେ କର୍ମୀ ନେଇ ଆଗରୁ ପହଞ୍ଚାଇ ଥାଆନ୍ତି। ଓଡ଼ିଶାର ଭୀଷଣ ବନ୍ୟା ସ୍ୱପ୍ନରେ କେହି ଭାବି ନ ଥିଲେ। ଶତ ଶତ ଲୋକଙ୍କ ମୁଖରେ ଆହାର ଦେଇ

ବଙ୍ଗୃଇବା ପାଇଁ ଗୋପବନ୍ଧୁଙ୍କର ଉପସ୍ଥିତି ଯେ ସେଠାରେ ଆବଶ୍ୟକ ହେବ ତାହା ସେ ଜାଣିଥିଲେ । ମାତ୍ର ୧୯୨୭ ମସିହା ଯୁଲାଇ ମାସ ଆରମ୍ଭରେ ଗୋପବନ୍ଧୁ ପୁରୀରୁ "ସତ୍ୟବାଦୀ ପ୍ରେସ"କୁ କଟକ ନେଲେ । ସେ କଟକକୁ ଓଡ଼ିଶାର ରାଜଧାନୀ ଓ ସମଗ୍ର ଉତ୍କଳୀୟ ଆନ୍ଦୋଳନର କେନ୍ଦ୍ର ଭୂମି ଭାବ ଭବିଷ୍ୟତ କର୍ମ ଦେଳ ପ୍ରସ୍ତୁତ କରିବା ପାଇଁ କଟକରେ ଅବସ୍ଥାନ କରିଥିଲେ ।

୧୬

ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଯାଉଛି । କେତେ ବ୍ୟକ୍ତିଙ୍କର ଭାଗ୍ୟର ପରିବର୍ତ୍ତନ ଘଟୁଛି । କେତେ ଜାତିର ଅବସ୍ଥା ବଦଳୁଛି । କେତେ ଦେଶର ଗତି ଫେରୁଛି । ମାତ୍ର ଯେତେ ଉପାୟ କଲେ ସୁଦ୍ଧା ଓଡ଼ିଶାର ଦୁଃଖଦିନ ସରୁ ନାହିଁ । ଭାଗ୍ୟ ଫେରୁନାହିଁ । ଅବସ୍ଥା ବଦଳୁ ନାହିଁ, ବିପତ୍ତି ଘୁଞ୍ଚୁ ନାହିଁ, ଦୁର୍ଗତି ଦୂର ହେଉନାହିଁ । ୧୯୨୬ ମସିହାର ବନ୍ୟାରେ ଲୋକଙ୍କ ଅବସ୍ଥା ଦୂର ହୋଇ ନଥିଲା । ଦୁର୍ଭିକ୍ଷ ସାହାଯ୍ୟ ବିତରଣ ବନ୍ଦ ହୋଇ ନଥିଲା—ପୁଣି ଆସି ଏକ ଭୀଷଣ ବନ୍ୟା ଓଡ଼ିଶାରେ ଉପସ୍ଥିତ ! ଏଥର ବନ୍ୟା ଓଡ଼ିଶାରେ ଏକ ଖଣ୍ଡ ପ୍ରଳୟ ଆଣି ଘୋଟାଇ ଥିଲା । ଏଥର ବିପତ୍ତି ବାଲେଶ୍ୱର, କଟକର ଯାଜପୁର, କେନ୍ଦ୍ରାପଡ଼ା ଉପରେ ବେଶି ଭାବରେ ପଡ଼ିଲା । କେତେବର୍ଷ ତଳେ ବ୍ରାହ୍ମଣୀ ବୈତରଣୀରେ ଭୀଷଣ ବନ୍ୟା ହୋଇଥିଲା । ମାତ୍ର ଏପରି ବନ୍ୟା କେବେ କେହି ଦେଖି ନ ଥିଲେ । ଏହା ଯେପରି ପ୍ରବଳ ବେଗରେ ଭୀଷଣ ଆକାର ଧରି ଆସିଲା ଜଣାପଡ଼ୁଥିଲା ଯେ ସାରା ସଂସାର ଭସାଇ ନେବ । ଏ ବନ୍ୟା କେତେ ଆଡ଼େ ଯେ ବ୍ୟାପିଥିଲା, କେତେ ଯେ କ୍ଷତି କରି ଥିଲା ତାହା ଏ ପର୍ଯ୍ୟନ୍ତ ନିର୍ଣ୍ଣୟ ହୋଇ ନାହିଁ, କି ହୋଇ ପାରିବ ନାହିଁ । ନିର୍ଣ୍ଣୟ କରିବା ମଧ୍ୟ କଠିନ । ଏତେ ଶୀଘ୍ର ଏପରି ଅବସ୍ଥା ହେବ ବୋଲି କେହି ଆଶଂକା କରି ନ ଥିଲେ । ସୁତରାଂ ଲୋକେ ପ୍ରସ୍ତୁତ ନ ଥିଲେ କି ସାବଧାନ ନ ଥିଲେ । ହଠାତ୍ ଚାରିଆଡ଼େ ପାଣି

ଭିତରଗଲା । କେହି କେଉଁଆଡ଼େ ଯାଇ ଆସି ପାରୁଲେ ନାହିଁ । ଦିନେ ଦୁଇ ଦିନ ପର୍ଯ୍ୟନ୍ତ ବନ୍ୟା ଖବର ବାହାର ଲୋକଙ୍କୁ ମିଳି ନ ଥିଲା । ୧୯୨୭ମସିହା ଜୁଲାଇ ୨୯ ତାରିଖର କଲିକତା ଗାଡ଼ି ପୁରୀଆଡ଼େ ଆସି ଲା ନାହିଁ । କଟକ ଷ୍ଟେସନଠାରେ ଖବର ମିଳିଲା ବୈତରଣୀ ରୋଡ଼ଠାରୁ ମଂଜୁରି ରୋଡ ପର୍ଯ୍ୟନ୍ତ ରେଲରାସ୍ତା ପାଣିରେ ବୁଡ଼ି ଯାଇଛି। କେତେ ସରକାରୀ କର୍ମଚାରୀ ସେ ଆଡ଼େ ଗଲେ ମାତ୍ର ଅବସ୍ଥା ଯେପରି ହୋଇଥିଲା ସେ ଭୀମ ପ୍ରଳୟ ଦୃଶ୍ୟ ଦେଖିବା ଛଡ଼ା ଆଉ କିଛି କରିପାରି ନ ଥିଲେ । ସେତେବେଳକୁ ଗୋପବନ୍ଧୁ ସତ୍ୟବାଦୀରେ ଥିଲେ । ଅଗଷ୍ଟ ତିନ ତାରିଖ ଦିନ ଖଣ୍ଡେ ଟେଲିଗ୍ରାମ ମିଳିଲା ଯେ ଉତ୍କଳର ଏପରି ଅବସ୍ଥା । ତା'ପରଦିନ ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ଅନ୍ୟ କେତେକ ସହକର୍ମୀଙ୍କୁ ସଂଗରେ ନେଇ ଚୂଡ଼ା ଗୁଡ଼ କିଛି ନେଇ ବାହାରିଲେ । ଏତେବେଳକୁ ଗାଁରୁ ବିଲରୁ ବଢ଼ିପାଣି ଶଖି ଯାଇଥିଲା । ଗ୍ରାମେ ଗ୍ରାମେ ପଶି ଯାହା ସବୁ ଦେଖିଲେ ସେ ସବୁ ବର୍ଣ୍ଣନାତୀତ । ସାଧାରଣ ଲୋକଙ୍କ ଅବସ୍ଥା ଶୁଣ, ଶିକ୍ଷିତ ବାବୁ ଭଦ୍ର ଶ୍ରେଣୀର ଲୋକମାନେ ସେ ବଢ଼ିରେ ଯେପରି ଖାଇବାକୁ ପିଇବାକୁ ନ ପାଇ ରହିଥିଲେ ସେ ସବୁ ଶୁଣିଲେ । କଟକର ଅବସ୍ଥା ମୋଟ ଉପରେ ଏହିପରି ବୈତରଣୀ ବନ୍ୟାରେ ଭଦ୍ରଖ ସବଡ଼ିଭିଜନ ଅବସ୍ଥା ଯାହା ହୋଇଥିଲା ତାହା କଟକକୁ ବଳି ଯାଇଥିଲା । ଗଛ ଉପରେ ପିଲା ଜନ୍ମ ହେଲା । ଗୋପବନ୍ଧୁ ଏ ସମସ୍ତ ଅବସ୍ଥା ବୁଲି ଦେଖିଲେ । ବନ୍ୟା ଦୁର୍ଭିକ୍ଷରେ ସେ ଆଜୀବନ କାମ କରିଥିଲେ ମାତ୍ର ଏଥର ବନ୍ୟାରେ ଓଡ଼ିଶାର ଏ ଦୁର୍ଗତି କେବେ ଘଟି ନ ଥିଲା । ୧୯୨୫ ଓ ୧୯୨୬ ମସିହାର ବଢ଼ିମାନଙ୍କରେ ଅନେକ ଘର ଭାଙ୍ଗିଥିଲା, ଅନେକ ଲୋକ ଭାସି ଯାଇଥିଲେ, ଅନେକ ଗୋରୁ ମରିଥିଲେ ମାତ୍ର ଏଥର ଯେ କେତେ ଭାସି ଛନ୍ତି କେତେ ମରିଛନ୍ତି ତାହାର ସୀମା ନ ଥିଲା । ବାଲେଶ୍ୱର ଓ ସୁବର୍ଣ୍ଣରେଖାର ଅବସ୍ଥା ମଧ୍ୟ ତଦ୍ରୂପ । ଓଡ଼ିଶାର ଏ ବନ୍ୟାରେ ଯାହା ସବୁ ଘଟିଥିଲା ସେ ସମସ୍ତର ବିବରଣ ଏ ପୁସ୍ତକରେ ଦେବା ଅସଂଭବ । ଏଥିରେ ଓଡ଼ିଶାର ଯେ କ୍ଷତି ହୋଇଥିଲା ତାହା ଦଶ କୋଟି ଟଙ୍କାରୁ ଅଧିକ ବୋଲି ଅନୁମାନ କରାଯାଇଥିଲା ।

ଏହି ସମୟରେ ବଡ଼ଲାଟ ସାହେବଙ୍କର ଓଡ଼ିଶା ବନ୍ୟାଅଂଚଳ ଦେଖିବାକୁ ଆସିବାର ଥିଲା । ଏହି ବନ୍ୟାରେ ରେଳରାସ୍ତା ଭାଙ୍ଗି ଯିବାରୁ ତାଙ୍କର ଗସ୍ତ ବନ୍ଦ ହେଲା । ସେ ଓଡ଼ିଶାକୁ ଆସି ପାରି ନ ଥିଲେ । ସେଥିପାଇଁ ଦୁଃଖ ପ୍ରକାଶ କରି ଗ୍ରେଟଲାଟ ସାହେବଙ୍କୁ ଲେଖିଥିଲେ । ଓଡ଼ିଶାର ଦୁଃଖ କାହାଣୀ ସେଥର ବଡ଼ଲାଟ ସଭାରେ ପ୍ରକାଶ ପାଇଲା । ବଡ଼ଲାଟ ସଭା ପକ୍ଷରୁ ସେକ୍ରେଟାରୀ ଓଡ଼ିଶାର ଉପସ୍ଥିତ ଦୁଃଖରେ ସହାନୁଭୂତି ଦେଖାଇ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଗୋପବନ୍ଧୁଙ୍କ ନିକଟକୁ ନିମ୍ନଲିଖିତ ସମ୍ବାଦ ତାର ଦ୍ୱାରା ପଠାଇଥିଲେ ।

"ସମଗ୍ର ଗୁଜରାଟ, ଓଡ଼ିଶା ଓ ବିହାର ଯେଉଁ ଯେଉଁ ଅଂଶରେ ଅସାଧାରଣ ବନ୍ୟା ଫଳରେ ଲୋକେ ବିପଦ୍‌ଗ୍ରସ୍ତ ହୋଇଅଛନ୍ତି ଏ ଆସେମ୍ବ୍ଲି ସେମାନଙ୍କ ବିପତ୍ତିରେ ଆନ୍ତରିକ ସହାନୁଭୂତି ପ୍ରକାଶ କରି ସଭାପତିଙ୍କୁ ଅନୁରୋଧ କରୁଅଛନ୍ତି କି ସେ ଏହି ସଭାର ସହାନୁଭୂତି ବିପନ୍ନ ଲୋକମାନଙ୍କୁ ଜଣାଇ ଦିଅନ୍ତୁ । ଏ ସଭା ବିଶ୍ୱାସ କରନ୍ତି ସରକାର ଏବଂ ଭାରତର ରାଜା ମହାରାଜା ଓ ଜନ ସାଧାରଣ ଏହି ବିପନ୍ନ ଲୋକମାନଙ୍କର ଦୁଃଖ ଦୂର କରିବାରେ ଯଥାସାଧ୍ୟ ସାହାଯ୍ୟ କରିବେ ।"

ଗୋପବନ୍ଧୁ ତହିଁର ଜବାବରେ ଲେଖିଥିଲେ "ଆସେମ୍ବ୍ଲିର ସହାନୁଭୂତି-ସୂଚକ ନିର୍ଦ୍ଧାରଣ ପାଇ ଧନ୍ୟବାଦ ଦେଉଅଛୁ । ବିପନ୍ନଲୋକଙ୍କୁ ଏହା ଆଶା ଆଶ୍ୱାସନା ଦେଉଛୁ । ଅନୁଗ୍ରହ କରି ସଭାକୁ ସେମାନଙ୍କର କୃତଜ୍ଞତା ଜଣାଇବେ । ଓଡ଼ିଶାର ବାଣ—ବନ୍ୟା ବିପତ୍ପାତର ସ୍ଥାୟୀ ପ୍ରତିକାର ପାଇଁ ବ୍ୟବସ୍ଥା ହେଉ ।"

୧୯୨୭ ଅଗଷ୍ଟ ତା ୧୨ ରିଖରେ କଟକ ଟାଉନ ହଲରେ ଗୋଟିଏ ସାଧାରଣ ସଭାରେ ଓଡ଼ିଶା ବନ୍ୟାପ୍ରତୀକାରସମିତି ସ୍ଥାପିତ ହେଲା । ଗୋପବନ୍ଧୁ ତହିଁର ସମ୍ପାଦକ ରହିଲେ । ସେଥିରେ ନାନା ସ୍ଥାନରୁ ଟଙ୍କା ଆଦାୟ ପାଇଁ ନିବେଦନ କରାଗଲା । ଭାରତର ବିଭିନ୍ନ ପ୍ରଦେଶରୁ ବହୁତ

ଅର୍ଥ ସାହାଯ୍ୟ ମିଳିଲା । ବନ୍ୟା ଅଂଚଳମାନଙ୍କୁ ସ୍ୱେଚ୍ଛାସେବକ ପଠାଇ ଗୋପବନ୍ଧୁ ବନ୍ୟା-ପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ଲାଗିଲେ । ବଡ଼ ଲାଟ ସଭାରେ ଲାଲା ଲଜପତଙ୍କ ଯତ୍ନରେ ଭାରତର ବଡ଼ ବଡ଼ ନେତାଙ୍କ ସ୍ୱାକ୍ଷରରେ ଏକ ଆବେଦନ କରାଗଲା । ଶ୍ରେଷ୍ଠ ଲାଟ ସଭାରେ ମଧ୍ୟ ଏ ବିଷୟରେ ପ୍ରଶ୍ନ ହେଲା । ନାନା ସ୍ଥାନରୁ ଗଣି ଗଣି ଅର୍ଥ ଆସି ଜମା ହେଲା । ସମସ୍ତେ ଏକ ବିଶ୍ୱାସରେ ଗୋପବନ୍ଧୁଙ୍କ ନିକଟକୁ ପଠାଉଥିଲେ । ଗୋପବନ୍ଧୁ ସେ ସମସ୍ତ ଭାର ଗ୍ରହଣ କରି ଦିନ ରାତି ପରିଶ୍ରମ କରି ନାନା ସ୍ଥାନରୁ ସ୍ୱେଚ୍ଛା-ସେବକ ଆଣାଇ ଏବଂ ନିଜେ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କୁ ଅନ୍ନ ବସ୍ତ୍ର ଦେଇ ବଂଚାଇ ରଖିଥିଲେ । ଶସ୍ତା ଦରରେ ଧାନ ଚାଉଳ ବିକ୍ରି ପାଇଁ ଗୋଦାମ ଖୋଲିଥିଲେ । ଲୋକମାନଙ୍କୁ ଧାନ କୁଟାଇ ମଜୁରି ଯୋଗାଇବା ପାଇଁ ଧାନକୁଟା କେନ୍ଦ୍ରମାନ ଖୋଲା ଯାଇଥିଲା । ଅନ୍ୟାନ୍ୟମାନଙ୍କଠାରୁ ଲୁଗା ସଂଗ୍ରହ କରି ବସ୍ତ୍ରହୀନ ଲୋକମାନଙ୍କୁ ବସ୍ତ୍ର ଯୋଗାଉଥିଲେ । ନାନା ସ୍ଥାନରେ ରୋଗୀମାନଙ୍କୁ ଔଷଧ ଯୋଗାଇବାର ବ୍ୟବସ୍ଥା କରିଥିଲେ । ଗୃହ-ହୀନ ବ୍ୟକ୍ତିମାନଙ୍କୁ ଘର ତୋଳାଇ ଦେଇଥିଲେ । ଏହିପରି ନିଜେ କାର୍ଯ୍ୟ କରିବା ସଂଗେ ସଂଗେ ଭାରତ ସେବାସଂଘ, ଗୁଜରାଟ, ମାଡ଼ବାରି, କଲିକତା ବ୍ରାହ୍ମ ସମାଜ, ଖଡ଼ଗପୁର ଓଡ଼ିଆ ସମାଜ ଇତ୍ୟାଦି ଓ ଦେଶର ଅନ୍ୟାନ୍ୟ ହିତକର ଅନୁଷ୍ଠାନଗୁଡ଼ିକୁ ଡକାଇ ବନ୍ୟା ଅଂଚଳମାନଙ୍କରେ ବିଭିନ୍ନ ସାହାଯ୍ୟ କେନ୍ଦ୍ର ଖୋଲି ଲୋକଙ୍କର ଦୁରବସ୍ଥା ମୋଚନ କରୁ-ଥିଲେ । ଓଡ଼ିଶାରେ ବନ୍ୟାର ସ୍ଥାୟୀ ପ୍ରତିକାର ଲାଗି ସମଗ୍ର ଉତ୍କଳବାସୀଙ୍କୁ ନେଇ କଟକଠାରେ ଏକ ନିଖିଳ ଓଡ଼ିଶା-ବନ୍ୟା-ସମ୍ମିଳନୀ କରାଇ ଥିଲେ । ପ୍ରତ୍ୟେକ ଜିଲାରେ ଓ ଥାନାମାନଙ୍କରେ ବନ୍ୟା ସମିତିମାନ ହୋଇ ଥିଲା । ଗୋପବନ୍ଧୁ ଏହି ସବୁ ସମ୍ମିଳନୀମାନଙ୍କରେ ଯୋଗ ଦେଇ ବନ୍ୟାର ସ୍ଥାୟୀ ପ୍ରତିକାର କିପରି ହେବ ଲୋକମାନଙ୍କ ସହିତ ଆଲୋଚନା କରୁଥିଲେ ଓ ସେ ଅଂଚଳର ଅବସ୍ଥା ବୁଝୁଥିଲେ । ଓଡ଼ିଶା ବନ୍ୟା କମିଟି ଜିଲା ବନ୍ୟାକମିଟି ଓ ଥାନା କମିଟିମାନ ପ୍ରତିଷ୍ଠିତ ହୋଇଥିଲା । ସମଗ୍ର ଓଡ଼ିଶା ବନ୍ୟା କମିଟିର ସଂପାଦକ ଥାଇ ବନ୍ୟା ସଂପର୍କୀୟ ସମସ୍ତ ଆନ୍ଦୋଳନ ଅତି ଉତ୍ତମ ରୂପେ

ଚଳାଉଥିଲେ । ଉତ୍କଳର ବନ୍ୟା ଅଂଚଳର ଦୁର୍ଦ୍ଦଶା ଦେଖାଇବା ପାଇଁ ଗୋପବନ୍ଧୁ ମହାତ୍ମା ଗାନ୍ଧି,ଦୀନବନ୍ଧୁ ଆଣ୍ଡ୍ରୁଜ ଓ ଅନ୍ୟାନ୍ୟ ବିଶିଷ୍ଟ ଭାରତୀୟ ନେତାମାନଙ୍କୁ ଅଣାଇଥିଲେ । ସରକାର ପକ୍ଷର ନିଯୁକ୍ତ ବନ୍ୟା ବିଶାରଦ କମିଟି **Flood Expert Committee** ର ମେମ୍ବରମାନଙ୍କୁ ଉତ୍କଳର ବିଭିନ୍ନ ବନ୍ୟା ଅଂଚଳର ଅବସ୍ଥା ଦେଖାଇବା ପାଇଁ ଏକ କମିଟି ଗଢା ଯାଇଥିଲା । ଗୋପବନ୍ଧୁ ଉକ୍ତ କମିଟିର ପରିଚାଳକ ଥିଲେ । ବିଶାରଦ କମିଟିଙ୍କ ନିକଟରେ ଏ ସଂପର୍କରେ ଗୋପବନ୍ଧୁ ଯେଉଁ ସାକ୍ଷ୍ୟ ଦେଇଥିଲେ ତାହା ବିଶାରଦମାନେ ବିଶେଷ ପସନ୍ଦ କରି ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ସେ ସେହି କାର୍ଯ୍ୟରେ ଲାଗିଥିଲେ । ବନ୍ୟାର ସ୍ଥାୟୀ ପ୍ରତୀକାର ହୋଇନାହିଁ । କଟକ ବାଲେଶ୍ୱର ଲୋକମାନଙ୍କର ବଡ଼ି ପରେ ଦୁର୍ଦ୍ଦଶା ଫେରିନାହିଁ । ସମସ୍ତଙ୍କର ଘର ତୋଳା ସରିନାହିଁ । ଲୋକମାନେ ରୋଗରୁ ମୁକ୍ତ ହୋଇ ନାହାନ୍ତି । ମୁଷ୍ଟି ସାହାଯ୍ୟରୁ କ୍ଷାନ୍ତହୋଇ ନାହାନ୍ତି । ମୋଟ ଉପରେ କହିବାକୁ ଗଲେ ବନ୍ୟାପୀଡ଼ିତ ଅଂଚଳରେ ତାଙ୍କର କାର୍ଯ୍ୟ ସରିନାହିଁ । ଗୋପବନ୍ଧୁ ଚାଲିଗଲେ ।

ଗଲା କେତେ ମାସ ହେଲା ଗୋପବନ୍ଧୁ କଟକରେ ଅବସ୍ଥାନ କରି ବନ୍ୟାକ୍ଳିଷ୍ଟ ଲୋକମାନଙ୍କପାଇଁ ଅନ୍ନ ବସ୍ତ୍ର ବିଧାନ କରୁଥିଲେ । ଏହିପରି ସମୟରେ ତାଙ୍କର ଜ୍ୟେଷ୍ଠ- ଭ୍ରାତା ଶ୍ରୀଯୁକ୍ତ ନାରାୟଣ ଦାସଙ୍କର ଶ୍ରୀକ୍ଷେତ୍ର ପ୍ରାପ୍ତି ହେଲା । ସେଥିରେ ଗୋପବନ୍ଧୁ ଅତ୍ୟନ୍ତ ମର୍ମାହତ ବ୍ୟସ୍ତ ବ୍ୟଥିତ ଚିତ୍ତ ହୋଇଥିଲେ । କିଛିଦିନ ପର୍ଯ୍ୟନ୍ତ ସେ କର୍ତ୍ତବ୍ୟ ସ୍ଥିର କରି ପାରି ନ ଥିଲେ । ପରିବାର ପରିଚାଳନାର ଭାର ତାଙ୍କ ଉପରେ ପଡ଼ିଥିଲା । ଶେଷରେ ଠିକ କଲେ ପ୍ରତି ସପ୍ତାହରେ କେତେକ ଦିନ କଟକରେ ଅବସ୍ଥାନ କରି ଅବଶିଷ୍ଟ ସମୟ ତାଙ୍କର ପ୍ରିୟତମ ସତ୍ୟବାଦୀ ନିକୁଞ୍ଜରେ କଟାଇବେ ଏବଂ ମଝେ ମଝେ ନିଜ ଗ୍ରାମକୁ ଯାଇ ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ସୁପରିଚାଳନା କରିବେ । ସେହି ଅନୁସାରେ ସତ୍ୟବାଦୀ ଇସ୍କୁଲରେ ଲୌକିକ, ସାଧାରଣ ଓ

ବ୍ରହ୍ମଚର୍ଯ୍ୟ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ସେଥିରେ ନିଜେ ବହୁ ସ୍ଥାନୀୟ ଯୁବକମାନଙ୍କୁ ଗ୍ରାମ ସଂଗଠନ ନିମନ୍ତେ ଉପଯୁକ୍ତ କର୍ମୀ ହେବାପାଇଁ ଓ ସେମାନଙ୍କୁ ଦେଶ ସେବକ ରୂପରେ ଗଢିବା ପାଇଁ ଲାଗିପଡିଥିଲେ ।

ପଲ୍ଲୀ ଗୋପବନ୍ଧୁଙ୍କର ଆବାଲ୍ୟରୁ କର୍ମକ୍ଷେତ୍ର ଥିଲା । ଲୋକସାଧାରଣଙ୍କ ଉନ୍ନତି ନିମନ୍ତେ ସେ ପଲ୍ଲୀରେ ବାସକରି ପଲ୍ଲୀ କୃଷକର ଅଭାବ ଅସୁବିଧା ଦୂର କରିବାପାଇଁ ଦୃଢ଼ବ୍ରତ ହୋଇଥିଲେ । ସହରରେ ରହି ଧୋବଧାଉଳିଆଙ୍କ ସଙ୍ଗରେ ମିଶି ଆରାମ ଚୌକିରେ ରାଜନୀତି ଚର୍ଚ୍ଚା କରୁ ନ ଥିଲେ । ପଲ୍ଲୀର ସରଳ ସଂଯତ ଶୁଦ୍ଧ ଜୀବନ ଯାପନ କରି ପଲ୍ଲୀବାସୀଙ୍କର ଉନ୍ନତିରେ ଚେଷ୍ଟା କରିବା ତାଙ୍କର ଲକ୍ଷ୍ୟ ଥିଲା । ସେହି ଆଦର୍ଶକୁ ଲକ୍ଷ୍ୟ ରଖି ତାଙ୍କର ପ୍ରିୟତମ ସତ୍ୟବାଦୀ ବିଦ୍ୟାଳୟକୁ ପଲ୍ଲୀର ଏକ ନିଭୃତ କୋଣରେ ସ୍ଥାପନ କରିଥିଲେ । ପଲ୍ଲୀର ସର୍ବାଙ୍ଗୀନ ଉନ୍ନତି ପାଇଁ ପଲ୍ଲୀବାସୀମାନଙ୍କୁ ନାନା କ୍ଷେତ୍ରରେ ଉପଦେଶ ଦେଉଥିଲେ । ସେ ଜାଣିଥିଲେ ପଲ୍ଲୀର ଭଗ୍ନ କୁଟୀରରେ ଜାତୀୟ ଜୀବନ ନିହିତ ଅଛି । ଚଷାର ଗୀତ ଲହରୀରେ,ତନ୍ତୀର ଗୁଣୁ ଗୁଣୁ ସ୍ୱରରେ, କେଉଟର "ଗଲାଣିତ ଗଲା କଥାରେ" ଜାତୀୟ ସାହିତ୍ୟ ଦେଖିବାକୁ ଅଛି । ସେଥିପାଇଁ ପଲ୍ଲୀର ଉନ୍ନତି ସାଧନ ପାଇଁ,ମେଲେରିଆ,ବସନ୍ତ ବିସୂଚିକା ଆଦି ଉକ୍ତ ରୋଗରୁ ପଲ୍ଲୀବାସୀଙ୍କୁ ରକ୍ଷା କରିବାପାଇଁ, ସେମାନଙ୍କ ପ୍ରାଣରେ ଧର୍ମଭାବ ଜାଗ୍ରତ କରିବାପାଇଁ, ମୋଟ ଉପରେ କହିବାକୁ ଗଲେ, ମହାଭାରତୀୟ ଜାତୀୟତା ସଂଗଠନ ପାଇଁ ସର୍ବଦା ନିରତ ଥିଲେ । ଗତ କେତେ ବର୍ଷ ହେଲା ଗୋପବନ୍ଧୁ ରାଜନୈତିକ କ୍ଷେତ୍ରରେ ଯୋଗ ଦେଇ ପଲ୍ଲୀରେ କର୍ମ କେନ୍ଦ୍ର ପ୍ରତିଷ୍ଠାର କେତେକ ଅସୁବିଧା ଭୋଗ କରି ସହର ଆଡକୁ ଯାଇଥିଲେ ମାତ୍ର ସେ ସବୁରେ ତାଙ୍କର ମନ ମାନୁ ନଥିଲା । ସେ ସବୁବେଳେ ପଲ୍ଲୀର ଅଭାବ ଅନୁଭବ କରୁଥିଲେ । ସର୍ବଦା ସତ୍ୟବାଦୀ କୁଞ୍ଜବନ ନିକୁଞ୍ଜରେ କାଳ ଯାପନ କରିବାକୁ ଅଭିଳଷିତ ଥିଲେ । ଘଟଣା ଚକ୍ରରେ ତାଙ୍କୁ ବୁଲିବାକୁ ହୋଇଥିଲା । ଶେଷରେ ସେ ସେଠାକୁ ଟାଣି ହୋଇ ଆସିଲେ ଓ ପଲ୍ଲୀର ଉନ୍ନତି ପାଇଁ ଜୀବନ ଉତ୍ସର୍ଗ କଲେ । ଗ୍ରାମେ ଗ୍ରାମେ ବୁଲି

ମେଲେରିଆ ମହାମାରୀର ପ୍ରତୀକାର ପାଇଁ ଲୋକମାନଙ୍କୁ ଉପଦେଶ ଦେଉ-ଥିଲେ । ପୂର୍ବ କାଳର ଯାଗାଘର ଓ ଭାଗବତ ଟୁଙ୍ଗିର ସଂସ୍କାର ଲାଗି ଗ୍ରାମେ ୨ କହୁଥିଲେ । ଗଂଜାଇ ଅଫିମ ଖାଇ ଲୋକମାନେ କିପରି ସର୍ବସ୍ୱାନ୍ତ ହୋଇଛନ୍ତି ପୁରୀ ଜିଲ୍ଲାର ଅଧିକାଂଶ ଲୋକେ କିପରି ଗଂଜାଇ ଅଫିମ ଖାଇ ସମସ୍ତ ସମ୍ପତ୍ତି ନଷ୍ଟ କରି କାଙ୍ଗାଳ ହୋଇ ବୁଲୁଛନ୍ତି ନହିଁରେ ବ୍ୟସ୍ତ ହୋଇ ଲୋକମାନଙ୍କୁ ନିଶା ନିବାରଣ ନିମନ୍ତେ ବୁଝାଉଥିଲେ । ଅରଟରେ ସୂତାକାଟି ହାତ ତନ୍ତରେ ଲୁଗା ବୁଣି ପିନ୍ଧିବାକୁ ଲୋକଙ୍କୁ କହୁଥିଲେ । ଅସ୍ପୃଶ୍ୟ ବର୍ଣ୍ଣମାନଙ୍କୁ ଘୃଣା ନ କରି ସେମାନଙ୍କ ସଙ୍ଗରେ ସଦ୍‌ଭାବ ରଖିବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଉ-ଥିଲେ । ସତ୍ୟବାଦୀଠାରେ ଅସ୍ପୃଶ୍ୟ ଛାତ୍ରମାନଙ୍କ ପାଇଁ ଶିକ୍ଷାର ବନ୍ଦୋବସ୍ତ କରିଥିଲେ । ଏହିପରି କଟକ ସତ୍ୟବାଦୀ ଓ ଆବଶ୍ୟକମତେ ଦେଶର ବିଭିନ୍ନ ସ୍ଥାନମାନଙ୍କରେ ରହି ବନ୍ୟା ଓ ଅନ୍ୟାନ୍ୟ ଉପସ୍ଥିତ ଜାତୀୟ କାର୍ଯ୍ୟ ସମ୍ପନ୍ନ କରିବା ସଙ୍ଗେ ୨ ନିଜ ସମ୍ପତ୍ତିର ପରିଚାଳନା ଭାର ଗ୍ରହଣ କରି ସେ କ୍ଷୀଣକାୟ ହୋଇ ଯାଇଥିଲେ । ସେ ଅର୍ଶ ରୋଗରେ ବହୁ ଦିନରୁ ପୀଡ଼ିତ ଥିଲେ । ଏତେବେଳେ ତାଙ୍କର ଭଗ୍ନ ସ୍ୱାସ୍ଥ୍ୟ ଦେଖି ତାଙ୍କର ସହକର୍ମୀ ମାନେ ତାଙ୍କୁ ଗତ କେତେକ ମାସ ହେଲା କିଛି ଦିନ ବିଶ୍ରାମ ନିମନ୍ତେ ବାରଂବାର ଅନୁ-ରୋଧ କରୁଥିଲେ । ମାତ୍ର ଦେଶ କାର୍ଯ୍ୟରୁ ସେ କେବେହେଁ କ୍ଷାନ୍ତ ରହି ପାରୁ ନଥିଲେ । କର୍ମ କ୍ଷେତ୍ରରେ ରହି ସେ ଶରୀର ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ । ସେ ଭଲକରି ପୁଷ୍ଟିକର ଖାଉନଥିଲେ । ଭଲ ଖାଦ୍ୟ ଖାଇଲା ବେଳେ ସେ ଭାବୁଥିଲେ ଦେଶରେ ଅନ୍ନ କଷ୍ଟରେ ଯେଉଁମାନେ ଅଛନ୍ତି ସେମାନଙ୍କ ପେଟରୁ ଏତକ ନିଅଣ୍ଟ ହେଲା ।

୧୯୨୮ ମସିହା ଅପ୍ରେଲ ତା ୧୨ ରିଖରେ ଲାହୋରଠାରେ ଲୋକସେବକ ସମାଜର ବାର୍ଷିକ ଉତ୍ସବରେ ଯୋଗଦେବା ପାଇଁ ନିଜର ସହକର୍ମୀ ପଣ୍ଡିତ ଲିଙ୍ଗରାଜଙ୍କ ( ଲୋକସେବକ ସମାଜର ଓଡ଼ିଶାରୁ ଅନ୍ୟତମ ସଭ୍ୟ ) ସହିତ ଯାଇଥିଲେ । ଗୋପବନ୍ଧୁ ଦିଲ୍ଲୀଠାରୁ ଲାଲା ଲଜପତ୍‌ରାୟଙ୍କ ସଙ୍ଗରେ ଯାଇ ଲାହୋରରେ ତା ୨୨ ରିଖରେ ପହଞ୍ଚିଲେ । ତା ୨୫ ରିଖରେ

ଲୋକସେବକ ସମାଜର ବାର୍ଷିକୋତ୍ସବ ଶେଷହେଲା । ସେଠାରୁ ସେ ଲିଙ୍ଗ-ରାଜ ମିଶ୍ରଙ୍କ ସଙ୍ଗେ କଲିକତା ବାଟେ ବାହାରିଲେ । ଲାହୋର ଛାଡ଼ିଲା ବେଳେ ଗୋପବନ୍ଧୁଙ୍କ ସାମାନ୍ୟ ଜ୍ୱର ହୋଇଥିଲା । ତା ୨୯ ରଖରେ ହାବଡ଼ା ଠାରେ ପହଞ୍ଚିଲାବେଳକୁ ଜ୍ୱର ଅତ୍ୟନ୍ତ ସାଂଘାତକ ହୋଇଥିଲା । ହାବଡା ଠାରେ ଲିଙ୍ଗରାଜ ବାବୁ ତାଙ୍କୁ ଔଷଧ ପଥ୍ୟ ଦେଇ ସେବା ଶୁଶ୍ରୂଷା କରୁଥିଲେ । ହାବଡାଠାରେ ଜ୍ୱର ଅବସ୍ଥାରେ ଯେତେବେଳେ ତାଙ୍କୁ ପୁଣି ଡାକଗାଡ଼ିକୁ ନିଆଗଲା ସେତେବେଳେ ସେ ଅଜ୍ଞାନ ଅବସ୍ଥାରେ ପଡ଼ିଥିଲେ । କେତେକ କ୍ଷଣପରେ ତାଙ୍କର ଚେତନା ହେଲାପରେ ତାଙ୍କ ଇଚ୍ଛାନୁସାରେ ସତ୍ୟବାଦୀ ଠାକୁ ତାଙ୍କୁ ନେଇ ଯିବାର ସ୍ଥିରହେଲା । ସେ ଆଗରୁ ବନ୍ୟା ଅଂଚଳକୁ କାଠ ବାଉଁଶ କେତେ ପଠାଗଲାଣି ଏବଂ ସେ ବିଷୟରେ ଆଉ କଣ କରାଯିବା ଦରକାର ତାହା ଦେଖିବା ପାଇଁ ବାଲେଶ୍ୱର ପର୍ଯ୍ୟନ୍ତ ଟିକଟ କରିଥିଲେ । ମାତ୍ର ଏପରି ଅବସ୍ଥାରେ ସେ ତା ୩୦ ରଖ ସକାଳେ ସତ୍ୟବାଦୀରେ ଆସି ପହଞ୍ଚିଥିଲେ । ସେହି ଦିନଠାରୁ ଟାଇଫଏଡ଼ ରୋଗରେ ଅତ୍ୟନ୍ତ ପୀଡ଼ିତ ହେଲେ । ନାନା ଚିକିତ୍ସାରେ ସେ ୨୦।୨୫ ଦିନ ପରେ ଆରୋଗ୍ୟ ଲାଭ କଲେ । ସତ୍ୟବାଦୀରେ କିଛି ଦିନ ବିଶ୍ରାମ କରିବା ପରେ ପୂର୍ବପରି ପୁଣି ଦେଶ କାର୍ଯ୍ୟରେ ଲାଗିଗଲେ ।

ଗୋପବନ୍ଧୁ ଆଜୀବନ ଶ୍ରମଜୀବୀମାନଙ୍କ ଦୁଃଖରେ ଦୁଃଖିତ । କଲିକତାରେ ଓକିଲାତି ପଢ଼ିଲାବେଳେ ସେ ଶ୍ରମଜୀବୀମାନଙ୍କର ଦୁରବସ୍ଥା ଦେଖିଥିଲେ । ସେହିଦିନଠାରୁ ଓଡ଼ିଶା ବାହାରେ ଓଡ଼ିଆମାନଙ୍କର ଦୁଃଖ ଦୁର୍ଦ୍ଦଶା ଫେଡ଼ିବାପାଇଁ ଚେଷ୍ଟିତ ଥିଲେ । ସୁଦୂର ବ୍ରହ୍ମଦେଶରେ, ଅସାମର ଚା ବଗିଚାରେ, କଲିକତା ଏବଂ ଜାମସେଦପୁରରେ ଓଡ଼ିଆମାନେ ଯେ କି ନିର୍ଯ୍ୟାତନା ଭୋଗୁଛନ୍ତି ତାହା ଭାବି ଭାବି ସେ ସର୍ବଦା ବ୍ୟାକୁଳିତ ହେଉଥିଲେ । ନାନା ଭାବରେ ବିଦେଶରେ ଏମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ ଏବଂ ଏମାନଙ୍କର ହକ୍ ଦାବୀ ବୁଝାଇବା ପାଇଁ ଆନ୍ଦୋଳନ କରୁଥିଲେ । ବିଦେଶରେ ଦଳଗତ ଭାବରେ କାର୍ଯ୍ୟ କରିବା ପାଇଁ ଶ୍ରମିକ ସଂଘମାନ

ଗଠନ କରୁଥିଲେ । ସେମାନଙ୍କର ଶିକ୍ଷାପାଇଁ ନୈଶ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ଓଡ଼ିଆ ଭାଇମାନେ ବିଦେଶରେ ଗୋପବନ୍ଧୁଙ୍କୁ ଯେତେବେଳେ ଆବଶ୍ୟକମତେ ଡାକୁଥିଲେ ଗୋପବନ୍ଧୁ ଅକୁଣ୍ଠିତ ଚିତ୍ତରେ ସେଠାରେ ଉପସ୍ଥିତ ରହି କାର୍ଯ୍ୟର ପନ୍ଥା ନିର୍ଦ୍ଦେଶ କରୁଥିଲେ । ସେମାନେ ବିଦେଶରେ ଗୋପବନ୍ଧୁଙ୍କୁ ଅତି ଆଦର ଓ ଭକ୍ତିର ସହିତ ଗ୍ରହଣ କରୁଥିଲେ ।

ଗୋପବନ୍ଧୁଙ୍କୁ ଦୋଷର ଘା ଛାଡ଼ି ନଥିଲା । ତାଙ୍କ ବିଶେଷ ଜୀବନରେ ମଧ୍ୟ ତାଙ୍କ ନାମରେ ପୁଣି ଏକ ମକଦ୍ଦମା ରୁଜୁ କରା ଯାଇଥିଲା । 'ସମାଜ' କାଗଜର ପ୍ରିଣ୍ଟର ଓ ପବ୍ଲିଶର ପଣ୍ଡିତ ଲିଙ୍ଗରାଜ ଓ ସମ୍ପାଦକ ଗୋପବନ୍ଧୁ ଖବର କାଗଜରେ ଲେଖିଥିବା ହେତୁ ଦୁହିଁଙ୍କ ବିରୁଦ୍ଧରେ ଏ ମାନହାନି ମକଦ୍ଦମା ଦାଏର ହୋଇଥିଲା । ଗୋପବନ୍ଧୁ ଚାଲିଗଲେ, ତଥାପି ମକଦ୍ଦମା ଚାଲିଛି ।

ସନ ୧୯୨୮ ମସିହା ଜୁନମାସ ୩।୨ ତାରିଖରେ ଓଡ଼ିଆ ଶ୍ରମଜୀବୀ-ମାନଙ୍କର ସଂଘଗଠନ ସଂପର୍କରେ ଗୋପବନ୍ଧୁ କଲିକତା ଯାଇଥିଲେ । କଲିକତା ଯିବାପାଇଁ ତାଙ୍କୁ ଆଗରୁ ପ୍ରାର୍ଥନା କରାଯାଇଥିଲା । ସେଠାରେ ତା୩ରିଖ ସକାଳେ ପହଞ୍ଚିଲାବେଳକୁ ବହୁସଂଖ୍ୟକ ଓଡ଼ିଆ ତାଙ୍କୁ ହାବଡ଼ା ଷ୍ଟେସନରେ ଅପେକ୍ଷା କରିଥିଲେ । ସେଠାରେ ସେମାନଙ୍କଠାରୁ ବୁଝିଲେ ଯେ ବଡ଼ବଜାର କପଡ଼ା ପଟିରେ କାମ କରୁଥିବା ଓଡ଼ିଆମାନେ ଅଳ୍ପଦିନ ହେଲା ଗୋଟିଏ ଶ୍ରମିକ ସଂଘ ଗଢ଼ିଛନ୍ତି । ସେ ସଂଘର ପରିଚାଳନା ନିମନ୍ତେ ଗୋପବନ୍ଧୁଙ୍କ ନିକଟକୁ ଦୁଇ ତିନି ଥର ପତ୍ର ଆସିଥିଲା । ସେ ସଂଘର ସଂପାଦକଙ୍କ ସହିତ ଷ୍ଟେସନଠାରେ ସାକ୍ଷାତ ହୋଇଥିଲା । ଓଡ଼ିଆମାନେ ଗୋପବନ୍ଧୁଙ୍କୁ ଅନ୍ୟତ୍ର ରଖିବାର ବନ୍ଦୋବସ୍ତ କରିଥିଲେ ମଧ୍ୟ ସେ ଓଡ଼ିଆ ଶ୍ରମଜୀବୀଙ୍କ ସଙ୍ଗରେ ରହି ସେମାନଙ୍କର ରୀତିମତି ହାବଭାବ ସମସ୍ତ ବୁଝିବାପାଇଁ ୨୦୦ ଜଣରୁ ଅଧିକ ବାସ କରୁଥିବା ପ୍ରେମଚାନ୍ଦ ବରାଳ

ଗଳିର ଗୋଟିଏ ଘରେ ରହୁଥିଲେ । ଘରଟା ଅବଶ୍ୟ ଛଡାଲା କୋଠା । କୋଠା ହେଲେ ସୁଦ୍ଧା ତାହା ଏପରି ଢଙ୍ଗର ଯେ ଭିତରକୁ ପବନ ଯିବାର ବାଟ ନାହିଁ । ୭ହାତ ଲମ୍ବ ୭ହାତ ଓସାର ଗୋଟିଏ ଗୋଟିଏ କୋଠରୀରେ ୧୨।୧୪ଜଣ ଲେଖାଏଁ ରହନ୍ତି । ଘରେ ନାନାପ୍ରକାର ଜଞ୍ଜାଳ ଭର୍ତ୍ତି ହୋଇଥାଏ । ତାହାର ଫଳରେ ଗୁରୁପୋକ ଏତେ ଯେ ଘରେ ଦିନବେଳେ ରହିବା ଦୁଷ୍କର । ଗୁରୁ ପୋକ ବାଜିରେ ସେମାନେ ରାତିରେ ଘରେ ଶୁଅନ୍ତି ନାହିଁ । ରାତିହେଲେ ପିମ୍ପୁଡ଼ି ଘୂଲିଲାପରି ଘରେ ଗୁରୁ ପୋକ ଚାଲନ୍ତି ଓ ଛାତ ଉପରୁ ମଧ୍ୟ ଖସି ପଡ଼ି ଉପରେ ଚାଲନ୍ତି । ଘର ଗୁଡ଼ିକରେ ପବନ ପରି ଆଲୋକର ମଧ୍ୟ ପ୍ରବେଶ ନିଷେଧ । ସେହିଘରେ ଗୋପବନ୍ଧୁ ରହୁଥିଲେ । ଏକେ ସେ ନିକଟରେ ବେମାରିରୁ ଉଠିଥିଲେ । ସୁତରାଂ ଏପରି ଘରେ ରହିବା ଦ୍ୱାରା ସେ ନିତାନ୍ତ ଅସୁସ୍ଥ ହୋଇ ପଡ଼ିଥିଲେ । ସେଠାରେ ଓଡ଼ିଆ ଶ୍ରମିକମାନଙ୍କର, ଦୁଃଖ ଦୁର୍ଦ୍ଦଶା ଦୂର କରିବାପାଇଁ, ସେମାନଙ୍କୁ ମୁନିବର ଅତ୍ୟାଚାର ପୁଲିସର ଅତ୍ୟାଚାର ଓ ଅନ୍ୟାନ୍ୟ ବିଦେଶୀୟ ମାନଙ୍କର ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଗୋପବନ୍ଧୁ ସଂଗଠନର ମୂଳଭିତ୍ତି ସ୍ଥାପନ କରିଥିଲେ । କାର୍ଯ୍ୟର ପନ୍ଥା ସ୍ଥିର କରି ସେହି ପନ୍ଥାରେ କାର୍ଯ୍ୟ କରିବା ଲାଗି ସମସ୍ତଙ୍କୁ କହିଥିଲେ । ତାଙ୍କର ପରମ ଶ୍ରଦ୍ଧାର ପାତ୍ର ପଣ୍ଡିତ ଲିଙ୍ଗରାଜଙ୍କୁ ସେଠାରେ ଏକୁଟିଆ କାର୍ଯ୍ୟ କରିବା ପାଇଁ ରଖାଇ ଦେଇ ଆସିଥିଲେ । ସେହି ତାଙ୍କର ଓଡ଼ିଶା ବାହାରେ ଓଡ଼ିଆ ଶ୍ରମଜୀବୀ ମାନଙ୍କମଧ୍ୟରେ ଶେଷ କାର୍ଯ୍ୟ ଓ ଶେଷ ଦେଖା । ଶ୍ରମିକ ସଂଗଠନ କରିବେ ବୋଲି କେତେ ଆଶା, କେତେ କଳ୍ପନା କରିଥିଲେ । ସେମାନଙ୍କ ପାଇଁ ଗୋପବନ୍ଧୁଙ୍କ ପ୍ରାଣ କାନ୍ଦୁଥିଲା । ସେ ଭାବୁଥିଲେ ଲିଙ୍ଗରାଜଙ୍କୁ ସ୍ଥାୟୀ ଭାବରେ କଲିକତାରେ ରଖି ଏ ଉଦ୍ୟମ ଚଳାଇବେ ମାତ୍ର ଦୈବ ଉପରେ କାହାର ଚାରା ଅଛି ? ସେ ଇଚ୍ଛା କରୁଥିଲେ ଲିଙ୍ଗରାଜଙ୍କୁ ଅହମଦାବାଦ, ବମ୍ବେ, କାନପୁର ପଠାଇ ଶ୍ରମିକ ଆନ୍ଦୋଳନମାନ ଦେଖାଇ ଆଣିଲେ ସେ କଲିକତାରେ ଭଲରୂପେ କାର୍ଯ୍ୟ କରିପାରିବେ କିନ୍ତୁ ବିଧାତାଙ୍କର ଇଚ୍ଛା ଅନ୍ୟ ପ୍ରକାର ଥିଲା ।

ସେ କଲିକତା ଗ୍ରଣ୍ଡ଼ କଟକ ବାଟେ ସତ୍ୟବାଦୀ ଆସିଲେ । ସତ୍ୟବାଦୀରେ ପହଞ୍ଚିବାପରେ ତା ୧୧ଖରେ ଗୋପବନ୍ଧୁଙ୍କୁ ଜ୍ୱର ହେଲା ତା ୧୨ଖ ଦିନ ଭାରତର ସବୁଠି ବରଦୋଲି ଦିବସ ପାଳିବାର ଥିଲା । ସେ ଦିନ ସ୍ଥାନେ ସ୍ଥାନେ ସଭାକରି ବରଦୋଲିରେ ସରକାରର କାର୍ଯ୍ୟ ଓ ସତ୍ୟାଗ୍ରହର ଆଲୋଚନା କରିବା ଏବଂ ବରଦୋଲି ସାହାଯ୍ୟ ନିମନ୍ତେ ଅର୍ଥ ସଂଗ୍ରହ କରିବାର ଥିଲା । ଓଡ଼ିଶାରେ ସେ ଦିନ ପାଳିବା ପାଇଁ ଏବଂ ଅର୍ଥ ସଂଗ୍ରହ କରି ବରଦୋଲିକୁ ସାହାଯ୍ୟ କରିବାପାଇଁ ଆଗରୁ ସମାଜ ଜରିଆରେ ଓଡ଼ିଶାବାସୀଙ୍କୁ ନିବେଦନ କରିଥିଲେ । ପୁରୀରେ ବରଦୋଲି ଦିବସ ପାଳିବାପାଇଁ ଆୟୋଜନ କରିବାକୁ ସହକର୍ମୀମାନଙ୍କୁ ଆଗରୁ ପୁରୀ ପଠାଇଥିଲେ । ମାତ୍ର ଜ୍ୱର ହେବାରୁ ନିଜେ ଆଉ ପୁରୀ ଯାଇ ପାରିଲେ ନାହିଁ । ମଝିରେ ମଝିରେ ତାଙ୍କୁ କମ୍ପ ଏବଂ ଜ୍ୱର ହେଉଥିଲା । ନିଜେ ବଡ ଦୁର୍ବଳ ଅନୁଭବ କରୁଥିଲେ । ତା ୧୩ ଖ ଦିନ ସେଠାରେ କର୍ମୀମାନେ ଆସି ପହଞ୍ଚିଲେ । ଏମାନଙ୍କୁ ଦେଖି ହଠାତ୍ ଗୋପବନ୍ଧୁ କାନ୍ଦି ଉଠିଲେ । ଆଖିରୁ ଧାର ଧାର ହୋଇ ଲୁହ ବୋହିଗଲା । ଏହି ସମୟରେ ସତ୍ୟବାଦୀର ଡାକ୍ତର ଆସି ପହଞ୍ଚିଲେ । ସେ ପ୍ରତିଦିନ ତାଙ୍କୁ ଦେଖିବାକୁ ଆସୁଥିଲେ । ଡାକ୍ତରଙ୍କୁ ଦେଖି କହିଲେ "ଡାକ୍ତର, ଗୋଟିଏ କଥା ଆପଣ ମନେ ରଖିବେ, ମୋର ଦେହ ଦୁଃଖ ହେଲେ ମୁଁ କେବେ କାନ୍ଦେ ନାହିଁ । ମୋର ଆଜ ଆଖିରୁ କାହିଁକି ଲୁହ ବୋହିଗଲା । ମୁଁ ଟିକିଏ କହି ଦେବା, ମୋର ଯୋଡ଼ିଏ ଧାଡ଼ି ମନେ ପଡ଼ିଗଲା :—

"ଏ ଦିବସ ନାବ ଆଉ କେତେଦିନ
ଚଳାଇବ ଭବ ପାରିବାରେ ପୁଣ"

ତୁମେ ଏ କଥା ପ୍ରତି ଟିକିଏ ଲକ୍ଷ୍ୟ ଦେବ । ମୁଁ ଅନୁଭବ କରୁଛି ମୋର ହୃତ୍‌ପିଣ୍ଡ କ୍ରମେ ବୁଡ଼ି ଯାଉଛି ।" ସମସ୍ତେ ଆଶ୍ୱାସନା ଦେଲେ ଏହା ମାଲେରିଆ ଜ୍ୱର, ଆଶଙ୍କାର କୌଣସି କାରଣ ନାହିଁ, ଜ୍ୱର ମଝିରେ ମଝିରେ କମି ଯାଉଛି । ଚିନ୍ତା କାହିଁକି ?



" ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜିଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

ଏହି ଦୁଇ ତିନ ଦିନ ଭିତରେ ଚିଠିପତ୍ର ଡାକବା ଓ ଅନ୍ୟାନ୍ୟକାର୍ଯ୍ୟ ସ୍ଥିତ ଲକ୍ଷ୍ୟ ରଖିଥିଲେ । ତା ୧୬ ରଖ ସକାଳେ ରୋଗର ବିକୃତ ଅବସ୍ଥା ଦେଖାଗଲା । ଟାଇଫଏଡ୍ ( ସାନ୍ନିପାତିକ ଜ୍ୱର ) ଅବା ଲେଉଟିଲା ବୋଲି ଡାକ୍ତର ସନ୍ଦେହ କଲେ । ତୁରନ୍ତ ପୁରୀ ସିଭିଲ୍‌ସର୍ଜନଙ୍କୁ ଲୋକ ଦଉଡ଼ିଲେ । ସିଭିଲ୍‌ସର୍ଜନ ଆସି ଚିକିତ୍ସା ଓ ଔଷଧର ବ୍ୟବସ୍ଥା କରିଗଲେ । ସତ୍ୟବାଦୀର ଡାକ୍ତରଙ୍କୁ ଯଥାର୍ଥ ଉପଦେଶ ଦେଇ ବାହୁଡ଼ିଲେ । କହିଗଲେ 'ହୃଦଯନ୍ତ୍ର ବଡ଼ ଦୁର୍ବଳ,କୌଣସି ପ୍ରକାରେ ବସିବାକୁ ଦେବ ନାହିଁ ।' ସେ ଦିନ ତାଙ୍କର ବଡ଼ ଭାଇ ରତ୍ନାକର ବାବୁଙ୍କୁ ଜଣାଇବା ପାଇଁ ଓ ଶ୍ରୀମାନ୍ ରାଧାନାଥ ରଥଙ୍କୁ ଫଳ ଆଣିବାପାଇଁ ନିଜେ ତାର କରିଥିଲେ । ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ଲିଙ୍ଗରାଜ,ରାମଚନ୍ଦ୍ର ପ୍ରଭୃତି ଆତ୍ମୀୟ ବନ୍ଧୁମାନେ ଓ ଅନ୍ୟାନ୍ୟ ଶହ କର୍ମୀମାନେ ନିକଟରେ ଥିଲେ । କହିଲେ, "ନୀଳକଂଠ ବରାବର ମୋ ପାଖରେ ଥିବ "। ରାତିରେ ଝାଡ଼ା ସଫା ନ ହେଲେ ଭଲ ନିଦ ହେବ ନାହିଁ ବୋଲି ଉଠି ଇଟା ଉପରେ ବସି ଝାଡ଼ା ଫେରିଲେ । ଶୋଇରହି ବେଡ଼ ପ୍ୟାନରେ ଝାଡ଼ା ଫେରିବା ତାଂକୁ ଭଲ ଲାଗେ ନାହିଁ । ତା୧୭ରଖ ରାତି ୧୨ଟା ବେଳକୁ କ୍ରମେ ହୃତ୍‌ପିଣ୍ଡର ଗତି ଅତି କ୍ଷୀଣ ହେଲା । କ୍ରମେ ଅଣନିଶ୍ୱାସ ପବନ ବୋହିବାକୁ ଲାଗିଲା । ପରଦିନ ସିଭିଲ ସର୍ଜନଙ୍କୁ ମଧ୍ୟ ଅଣା ହୋଇଥିଲା । ସେ ଦେଖି ପରୋକ୍ଷରେ କହିଲେ, "ଆଉ ଆଶା ନାହିଁ, ଶେଷ ସମୟ ଆସି ପହଞ୍ଚିଗଲା ।" ସେ ଇନ୍‌ଜେକସନ ପ୍ରଭୃତିର ବ୍ୟବସ୍ଥା କରି କହିଗଲେ,"ରାତି ୭ଟା,୧୧ଟା ବା୨ଟା ଘାଟିସମୟ ।"ସେଦିନ ପୁରୀରୁ ବାବୁ ଜଗବନ୍ଧୁ ସିଂହ ବାବୁ ବନମାଳୀ ଦାସ ଓ ସତ୍ୟବାଦୀର ଅନ୍ୟାନ୍ୟ କର୍ମୀମାନେ ପାଖରେ ରହିଥାନ୍ତି । ଗୋପବନ୍ଧୁଙ୍କର ପୂର୍ଣ୍ଣ ଜ୍ଞାନ ଓ ପୂର୍ଣ୍ଣ ତେଜ ସେହିପରି ଥିଲା । ଯାହା କହୁଥିଲେ ସଫାକରି କହୁଥିଲେ । ଖୁବ୍ ଦମ୍ଭ ଓ ତେଜରେ ତାଙ୍କ ପାଟିରୁ କଥା ବାହାରୁଥିଲା । ଜଗବନ୍ଧୁ ବାବୁଙ୍କୁ କହିଲେ, 'ସମୟ ଓ କାର୍ଯ୍ୟ ଅନୁସାରେ ମତଭେଦ ହୋଇଥାଏ; ସେ ଗୁଡ଼ାକ ଧରିବ ନାହିଁ,**Forgive and forget**(କ୍ଷମାକର,ଭୁଲିଯାଅ) । ଗୋଟାଏ ବେଳେ ସମସ୍ତଙ୍କ ପରାମର୍ଶ ଅନୁଯାୟୀ ଲିଙ୍ଗରାଜବାବୁ ପଚାରିଲେ, "ସମ୍ପତ୍ତିବାଡ଼

ବିଷୟରେ-ଆପଣଙ୍କର କିଛି କହିବାର ଅଛି ?" ହଠାତ୍ ଉତ୍ତର କଲେ,"ହିଁ, କହିବାର ଅଛି, ସମସ୍ତଙ୍କୁ ମୋ ପାଖକୁ ଡାକ, କାଗଜ କଲମ ଆଣ, ମୁଁ ଡାକୁଛି ଲେଖ ।" ଆଦେଶ ଅନୁସାରେ ସମସ୍ତେ ହାଜର ହେଲେ । ଚାରିପଟେ ଘେରିକରି ବସିଲେ । ଲିଙ୍ଗରାଜବାବୁଙ୍କୁ ତାଙ୍କର ଶେଷ ଉଇଲ୍ ଲେଖିବାପାଇଁ ଡାକଲେ । ପୂର୍ଣ୍ଣ ଜ୍ଞାନ, ନିର୍ମଳ ସ୍ମରଣଶକ୍ତି, ପୂର୍ଣ୍ଣ ଦମ୍ଭର ସହିତ ସ୍ପଷ୍ଟଭାବରେ ଫୁଲସ୍‌କ୍ୟାପ ପ୍ରାୟ ଚାରିପୃଷ୍ଠା ଇଂରାଜିରେ ଡାକଲେ । ନିଜର ସମ୍ପତ୍ତିବାଡ଼ି, ପରିବାର ଲୋକ ଓ ପିତୃପିତାମହ ପ୍ରତିଷ୍ଠିତ ଠାକୁରଙ୍କର ଖଞ୍ଜା ଭୋଗ ଆଦି ବିଷୟମାନଙ୍କର ଭାର ଟ୍ରଷ୍ଟିମାନଙ୍କ ହସ୍ତରେ ଏବଂ ସତ୍ୟବାଦୀ ପ୍ରେସ,ସମାଜ ଖବର କାଗଜ ଓ ସତ୍ୟବାଦୀ ଇସ୍କୁଲର ପରିଚାଳନା, ବନ୍ୟାସାହାଯ୍ୟ ଟଙ୍କା ପଇସାର କଥା,ବିଧବାଶ୍ରମର କଥା, ନିଜର ବ୍ୟକ୍ତିଗତ ଟଙ୍କା ପଇସା ଯାହା ଯେଉଁଠାରେ ଅଛି, ଏ ସବୁର ଉପରେ ସୁପରିଚାଳନା ହେବ ସେ ସମସ୍ତ ଉପରେ ଦେଶ କାର୍ଯ୍ୟରେ ଲାଗିବ ସେ ଉଇଲ୍‌ରେ ତାହାଁର ବନ୍ଦୋବସ୍ତ କରିଦେଇଗଲେ । ନିଜ ସମ୍ପତ୍ତିବାଡ଼ି ବିଷୟରେ ସୁବନ୍ଦୋବସ୍ତ କରି ଉଇଲ ଡାକୁଥିଲେ, ଟେଲିଗ୍ରାମ ପାଇ କଟକରୁ ରହୀକରିବାବୁ ଓ ଗୋପୀନାଥ ରଥେ ପହଞ୍ଚିଲେ । ସେମାନଙ୍କୁ ଦେଖି କହିଲେ "I am just dictating my last will and testament before death". କ୍ରମେ ସବୁ ବିଷୟରେ ଉଇଲ କରିସାରି କହିଲେ "ସମସ୍ତେ ଦେଖି ଶୁଣି ବିଚାରି ସବୁ କରିବ । ବର୍ତ୍ତମାନ ସମୟ ହୋଇଗଲା—ଶେଷ ସମୟ ଆସିଗଲା । ସେତେବେଳକୁ ୫୨ଟାସମୟ । ଅଣଶ୍ୱାସ ପବନ କ୍ରମେ ପ୍ରବଳ ବେଗରେ ବହିବାକୁ ଲାଗିଲା । ସେତେବେଳେ ଟିକିଏ ଡାଲିମ୍ବରସ ଖାଇଲେ । କ୍ରମେ ଅଣଶ୍ୱାସ ପବନ ପ୍ରବଳ ହେବାକୁ ଲାଗିଲା । ନିକଟରେ ଥିବା ସହକର୍ମୀମାନଙ୍କୁ କହିଲେ,ମୋ ପାଖରେ ଯେଉଁମାନେ ସମସ୍ତେ ଅଛ ଆଉ ଯେଉଁମାନେ ମୋତେ ସ୍ନେହ ଶ୍ରଦ୍ଧାରେ ଦେଖିବାକୁ ଆସିଛନ୍ତି ସମସ୍ତଙ୍କୁ କହ, ନିର୍ଦ୍ଦିଷ୍ଟ ସ୍ଥାନରେ ସମସ୍ତେ ଏକତ୍ର ଭଗବତ୍ ପ୍ରାର୍ଥନା କରନ୍ତୁ । ସଂଗେ ସଂଗେ ପ୍ରାର୍ଥନାର ଆୟୋଜନ ହେଲା । ଅନ୍ୟମାନଙ୍କ ପ୍ରାର୍ଥନାରେ ଯୋଗଦେବାକୁ କହି ନିଜେ ଏକାକୀ ଦକ୍ଷିଣାଭିପରେ ହାତଯୋଡ଼ି ଚିତ୍ ହୋଇ ଶୋଇ ରହି ପ୍ରାର୍ଥନା

କଲେ । ସେହିପରି ଅଳ୍ପ ସମୟ ପୂର୍ଣ୍ଣଜ୍ଞାନ ଓ ଭଗବତ୍ ଆରାଧନାରେ ରହି ଶେଷକୁ କହିଲେ, "ବେଳେବେଳେ ଗାଲଦାହ ହେଉଛି, ଏ ଊର୍ଦ୍ଧ୍ୱଶ୍ୱାସଯୋଗୁ ଅଣ୍ଟା ଘୋଳି ହେଉଛି । ଆଶ୍ଚର୍ଯ୍ୟ ହରିହର ଆଖିବି ଦେଲେ । ଏ ଅବସ୍ଥାର ପ୍ରାୟ ଘଣ୍ଟା ପୂର୍ବରୁ ନାଡ଼ି ଏକାବେଳକେ ଲୋପ ପାଇଥିଲା । ବାରଂବାର ଇନ୍‌ଜେକସନ୍ ଦେଇଥିଲେ ସୁଦ୍ଧା ନାଡ଼ି ପୁନର୍ବାର ଆସି ନ ଥିଲା । ତଥାପି ମୋହ ଜ୍ୟୋତି ସେହି ଜ୍ଞାନ ପୂର୍ଣ୍ଣ ମାତ୍ରାରେ ରହିଥିଲା । ଶେଷକୁ ଗୁରୁତରେ ହାତ ମାରି କହିଲେ "ଏ ଊର୍ଦ୍ଧ୍ୱଶ୍ୱାସ ହେଲେ ବନ୍ଦ ହୋଇଯାଆନ୍ତା !" ତା'ର ଦୁଇ ତିନ ମିନଟପରେ ବିଧାତାଙ୍କର ଇଚ୍ଛା ପୂର୍ଣ୍ଣ ହେଲା । ତିନଥର ଘଡ଼ ଘଡ଼ ଶବ୍ଦ ପରେ ତାଙ୍କର ପୁଣ୍ୟାତ୍ମା ଅମର ଧାମକୁ ବିଜେ କଲେ । ସେତେବେଳକୁ ୭ଟା ବାଜି ୨୫ମିନଟ ।

ତାଙ୍କର ଉଇଲ୍ (Will) ରେ ସତ୍ୟବାଦୀ ପ୍ରେସ ଓ ସମାଜ ଖବର କାଗଜ ଲାଲା ଲଜପତ୍ ରାୟଙ୍କ ପ୍ରତିଷ୍ଠିତ ଲୋକସେବକ ସମାଜ ହାତରେ ଦେଇଗଲେ । ସର୍ତ୍ତ ରଖିଗଲେ ଏହାର ସମସ୍ତ ଲବ୍ଧ ଧନ ଓଡ଼ିଶାର ଲୋକ-ସାଧାରଣଙ୍କ ସାମାଜିକ, ରାଜନୈତିକ ଓ ଶିକ୍ଷା କାର୍ଯ୍ୟରେ ବ୍ୟୟ କରାଯିବ । ସତ୍ୟବାଦୀ ଇସ୍କୁଲର ପରିଚାଳନା ଭାର ସେହି ସମାଜ ହାତରେ ଦେଇଗଲେ । ନିଜର ସଞ୍ଚିତ ଟଙ୍କା ଭିତରୁ ଏକ ତୃତୀୟାଂଶ କୁଟୁମ୍ବଙ୍କର ବର୍ତ୍ତମାନ ଖର୍ଚ୍ଚ ପାଇଁ ଦେଇ ଅବଶିଷ୍ଟ ଦୁଇ ତୃତୀୟାଂଶ ସତ୍ୟବାଦୀ ଇସ୍କୁଲକୁ ଦେଇଗଲେ । ନିଜର ଭୂସମ୍ପତ୍ତି ସମସ୍ତ ତାଙ୍କର ଆରାଧ୍ୟ ଦେବତା ବନୋଦେବିହାରୀଙ୍କ ପିଣ୍ଡ ଖଞ୍ଜିଦେଇ ଗଲେ ।

ଏହି ମହାପୁରୁଷଙ୍କର ଦର୍ଶନ ପାଇଁ ବହୁଲୋକଙ୍କର ସମାଗମ ହୋଇ-ଥିଲା । ସହକର୍ମୀ, ବନ୍ଧୁ, ସ୍ନେହୀ ସମସ୍ତ ଲୋକସାଧାରଣ ମିଳି ତାଙ୍କ ମୃତ-ଦେହକୁ ପୁଷ୍ପଶଯ୍ୟାରେ ସଜାଇ ଫଟୋ ନେଇଥିଲେ ଏବଂ ସେହି ମୃତଦେହକୁ ସଙ୍କୀର୍ତ୍ତନ, ପଟୁଆର ଓ ଜୟଧ୍ୱନି ମଧ୍ୟରେ ସତ୍ୟବାଦୀର ବସ୍ତି ମଧ୍ୟରେ ବୁଲାଇ ତାଙ୍କର ପ୍ରିୟ କୁଟୀରଅନା ବକୁଳବନ ମଧ୍ୟରେ ଚନ୍ଦନ କାଠ କର୍ପୂର ଓ ଘିଅ ଦ୍ୱାରା ଦାହ କଲେ । ଶ୍ମଶାନରେ ତାଙ୍କର ଫଟୋ ମଧ୍ୟ ନିଆ ଯାଇଥିଲା ।

## ୧୭

କବିତା ଗୋପବନ୍ଧୁଙ୍କର ପ୍ରାଣ । ଅବଧାନ ଗୃହାଳରେ ପଢ଼ିବାବେଳେ ସେ କିପରି ଭାଗବତ ସଂଗେ ପଦ ମିଳାଇ ଲେଖୁଥିଲେ ପାଠକମାନେ ଜାଣନ୍ତି । କ୍ରମେ ବଡ଼ ହୋଇ ପୁରୀଜିଲା ସ୍କୁଲରେ ଅଧ୍ୟୟନ କଲାବେଳେ 'ଇନ୍ଦ୍ରଧନୁ' 'ବିଜୁଳି'ର ପ୍ରତିବାଦରେ କିପରି ଯୋଗ ଦେଇଥିଲେ ତାହା କାହାରିକୁ ଅବିଦିତ ନାହିଁ । କର୍ତ୍ତବ୍ୟବୋଧିନୀ ସମିତିର ସମ୍ପାଦକ ଥାଇ ପୁରାତନ ସାହିତ୍ୟର କିପରି ଚର୍ଚ୍ଚା କରୁଥିଲେ ତାହା ସମସ୍ତଙ୍କର ମନେ ଥିବ । କଲେଜରେ ଅଧ୍ୟୟନ କଲାବେଳେ ଯାହା ସବୁ ଲେଖିଥିଲେ ସେଥିରୁ କେତେକ 'ମୁକୁର' ମାସିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଆଉରି କେତେକ [illegible] ହୋଇ କେଉଁ ଅଜ୍ଞାତ ଅବସ୍ଥାରେ ଅଛି, କେତେକ ବା ଲୋପ ପାଇଲାଣି କିଏ କହିବ ! ଗୋପବନ୍ଧୁ କୁଆଟିଏ ବା କୋଇଲିଟିଏ ଦେଖି କବିତା ରଚନା କରୁନଥିଲେ । ସେ ବୀର; ବୀରପୂଜା ତାଙ୍କର ଧର୍ମ । ବୀରପୂଜା କରିବାକୁ ଯାଇ କବିତା ତାଙ୍କ ହୃଦୟର ଗଭୀର ପ୍ରଦେଶରୁ ଆବେଗରେ ଉଚ୍ଛୁଳୁଥିଲା । ଇତିହାସର ଚର୍ଚ୍ଚା ସଙ୍ଗେ ସଙ୍ଗେ ସାହିତ୍ୟ ଚର୍ଚ୍ଚା ସେ କରୁଥିଲେ, ଜଗନ୍ନାଥ ଦାସ ବଳରାମ ଦାସଙ୍କ ଠାରୁ ଆରମ୍ଭ କରି ଅନଙ୍ଗଭୀମ ଓ ପୁରୁଷୋତ୍ତମ ଦେବଙ୍କ ପର୍ଯ୍ୟନ୍ତ ସେ ସମସ୍ତଙ୍କୁ ପୂଜା କରୁଥିଲେ । ଏପରି କି ଏହି ମୁକୁନ୍ଦ ଦେବଙ୍କ ଶେଷ କାଳରେ ପୁରୀ ରାଜବଂଶର ଦୁର୍ଗତି ଓ ଦୁରବସ୍ଥା ଦେଖି ଅତ୍ୟନ୍ତ ମର୍ମାହତ ହୋଇ ସେ ଲେଖିଥିଲେ:—

"କରପୂର ଉଡ଼ି କନା ଥିଲେ ପଡ଼ି
କନା ରଖିଥାଏ କର୍ପୂର ସ୍ମୃତି,
କନା ଯାଇ ନାଶ ରହିଲେ ପାଉଁଶ
ଧରିବ ତା ଦେଖି କିଏ ସେ ଧୃତି ?
ମହନ୍ତ ନିଧନେ ସେ ମହତ ସ୍ଥାନେ
ପଡ଼ିଥିଲେ କ୍ଷୁଦ୍ର ଧୂଳି କଣିକା,

ଭକତ ଆଦର କରେ ଯେ ତାହାର
ସେ ହିଁ ମହତ ହୃଦସ୍ଥ ଶିକ୍ଷା ।"

ସେ ଯେ କେବଳ ଘର ପୂଜା କରୁଥିଲେ ତାହା ନୁହେ,ସବୁବେଳେ ସେ ଘର-ପ୍ରସବିନୀ ଶିଳ୍ପକଳାକୁଶଳା ଶସ୍ୟଶାମଳା ଉତ୍କଳମାତାର ବିଭିନ୍ନ ବିକଟ ରୂପ ଦେଖି ଲୋତକ ବର୍ଷଣ କରୁଥିଲେ । ଯାହାଙ୍କୁ ପୂଜା କରୁଥିଲେ ତାଙ୍କୁ ଉତ୍କଳରେ ଘରପୂର ଦେବାପାଇଁ ଉତ୍କଳରେ ପୁନର୍ବାର ଜନ୍ମ ଗ୍ରହଣ କରି ଉତ୍କଳକୁ ଦୁର୍ଦ୍ଦଶାରୁ ମୁକ୍ତକରିବା ପାଇଁ ବାରଂବାର ଆହ୍ୱାନ କରୁଥିଲେ । ସେ "ଅନଙ୍ଗଭୀମଦେବ" କବିତାରେ ଲେଖିଛନ୍ତିଃ—

\+ \+ \+

"ଉଠ ହେ ଉତ୍କଳୀ ଜଡ଼ତା ଶିକୁଳି
ଫିଙ୍ଗିଣ ଦୂରେ ବହନ,
ଅମର ଭୁବନୁଁ ସେ ଅନଙ୍ଗଭୀମ
କରୁଛନ୍ତି ଆମନ୍ତ୍ରଣ ।
କର୍ଣ୍ଣ ଡେରି ଶୁଣ ସେ ଦିବ୍ୟ ଆହ୍ୱାନ
ସ୍ମର ପୂର୍ବ ଯଶ ବାରେ
ପୂର୍ବ ବଂଶ ନାମେ ଶ୍ରୀ ଅନଙ୍ଗଭୀମେ
ଭଜ ଶୌର୍ଯ୍ୟ ଉପହାରେ ।"

\+ \+ \+

ଆହୁରି ମଧ୍ୟ " ଚନ୍ଦ୍ରଶେଖର" କବିତାରେ ଲେଖିଛନ୍ତି,—

\+ \+ \+

"ଅରଣ୍ୟନିବାସୀ ଜ୍ଞାନ-ଅଭିଳାଷୀ
ମୂନି ସମାନ ସରଳ
କେଉଁ ମନ୍ତ୍ରବଳେ ଆବୋରିଛୁ କହ
ଉତ୍କଳର କର୍ମସ୍ଥଳ ।
ସିଦ୍ଧାନ୍ତ-ଦର୍ପଣେ ସ୍ୱଦେଶର କୋଷ୍ଠି
ଦେଖି କରି ଏକ ଲକ୍ଷ୍ୟ
କହ କହ କେବେ ଦୁର୍ଦ୍ଦଶା ଏଦ୍ୱାର
ଯାଇବକି ସତେ ଛାଡ଼ି ।"

ଏବଂ ଶାରପୂଜା ସଂଗେ ସଂଗେ ଉତ୍କଳରେ ଶୁଭଦୃଷ୍ଟି ପକାଇବା ପାଇଁ ସତତ ଜଗଦୀଶ୍ୱରଙ୍କଠାରେ ପ୍ରାର୍ଥନା କରୁଥିଲେ । ସେ "ବନ୍ଦୀରମଦାସ" କବିତାରେ ଲେଖିଛନ୍ତି,—

+ + +

"ଏବେ ନୀଳାଚଳେ ରହିଛ କଷ୍ଟଲେ
ଦେଖି ଏ ଦଶା କପଟ
ଛାଡ଼ିଣ ଆସ୍ଥାନ ଆସ ଆତ୍ମତ୍ରାଣ
ଚଳାଅ ଉତ୍କଳ-ତରୀ ।"

ପୁଣି 'ବନ୍ଦୀର ଆତ୍ମ କଥା'ରେ ଲେଖିଛନ୍ତି,—

"ଏବେ ନୀଳାଚଳେ ଥିଲେ ଜଗନ୍ନାଥ
ତେବେ କିପାଁ କହ ଉତ୍କଳ ଅନାଥ
ନାହିଁ ପୂର୍ବ ବଳ, ନାହିଁ ପୂର୍ବ ଧର୍ମ,
ନାହିଁ ପୂର୍ବ ସତ୍ୟ, ନାହିଁ ପୂର୍ବ କର୍ମ,

ଉତ୍କଳବାସୀର ଦେଖି ଏ ଦୁର୍ଗତି
ବାରୁଭୁତ ଏବେ ନୀଳାଚଳ ପତି ।"

ସେତିକ ନୁହେଁ, କବିତା ତାଙ୍କ ପ୍ରାଣରୁ ସ୍ୱରଳହରୀରେ ଫୁଟି ଉଠୁଥିଲା । ତାଙ୍କର କବିତାରେ ଉତ୍କଳର ଦୁଃଖ ଦୁର୍ଦ୍ଦଶା ଦେଖି ସେ ସର୍ବଦା କାନ୍ଦୁ-ଥିଲେ ଏବଂ ସେ ଯେ ସବୁ କ୍ଷୁଦ୍ର କବିତାମାନ ଲେଖୁଥିଲେ ସେଥିରେ କବିଭାବ ସଂଗେ ସଂଗେ ସାହିତ୍ୟ ରୁଚି ଓ ବିଷୟାଂଶର ଅନୁପାତ ଜ୍ଞାନ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା । ତାଙ୍କର "ବନ୍ଦୀର ଆତ୍ମକଥା' ରେ ସେ ଲେଖିଥିଲେ:—

\+ \+ \+

" ପ୍ରଜାଲାଗି କଲେ ପ୍ରଜାପତି ସୃଷ୍ଟି
ପ୍ରଜାଲାଗି ଇନ୍ଦ୍ର କରେ ଜଳବୃଷ୍ଟି
ପ୍ରଜାଲାଗି ଉଦେ ରବି ଶଶୀ ତାରା
ପ୍ରଜାଲାଗି ବହେ ଶତ ନଦୀ ଧାରା
ପ୍ରଜାଲାଗି ରାଜ୍ୟ ପ୍ରଜାର ଶାସନ
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।"

\+ \+ \+

ଗୋପବନ୍ଧୁ ଯେ କେବଳ ପଦ୍ୟ ସାହିତ୍ୟର ଚର୍ଚ୍ଚା କରୁଥିଲେ ତାହା ନୁହେଁ; ଗଦ୍ୟ ସାହିତ୍ୟରେ ସେ ଜଣେ ପ୍ରବୀଣ ଲେଖକ ଥିଲେ । 'ସତ୍ୟବାଦୀ' ସାହିତ୍ୟ ନଜର ଆଲୋଚନା ଯାକ ଯେ ଥରେ ପଢ଼ିଥିବ ସେ ଗୋପବନ୍ଧୁଙ୍କର ଗଦ୍ୟ ସାହିତ୍ୟ ଲେଖା କଦାପି ଭୁଲି ପାରିବ ନାହିଁ । ସେ ଗଦ୍ୟ ସାହିତ୍ୟର ଜଣେ ନିଷ୍ଠାପର ସେବକ ଥିଲେ । ତାଙ୍କ ପ୍ରବର୍ତ୍ତିତ 'ସତ୍ୟବାଦୀ'ରେ ପଦ୍ୟ

ସାହିତ୍ୟର ସ୍ଥାନ ଅତି ଅଳ୍ପ ଥିଲା । ସୁନ୍ଦର ସୁରୁଚିପୂର୍ଣ୍ଣ ଗଦ୍ୟ ସାହିତ୍ୟକୁ ସେ ଖୁବ୍ ଭଲ ପାଉଥିଲେ । ଅତି ସରଳ ଗ୍ରାମ୍ୟ ଭାଷାରେ ଗମ୍ଭୀର ଚିନ୍ତାର ସମାବେଶ ଆଉ କାହା ଲେଖାରୁ ନିଃସୃତ ହେବାର ଦେଖା ଯାଇନାହିଁ । ସେ "ସତ୍ୟବାଦୀ"ରେ ଲେଖିଛନ୍ତି—

"ଜାଣିହେଉ ବା ନଜାଣି ହେଉ ପ୍ରତ୍ୟେକେ ନିଜର ଗୋଟିଏ କିଛି ଆଦର୍ଶ ଅନୁସରଣରେ ପ୍ରବୃତ୍ତ । ଏହା ମାନବର ଧର୍ମ; କାରଣ ମାନବ ଅପୂର୍ଣ୍ଣ । ପୂର୍ଣ୍ଣତା ଆଡକୁ ଯିବା ତାହାର ପ୍ରକୃତି ଓ ଅଧିକାର । ତାହା ନ ହୋଇଥିଲେ ଆଦିମ ଅବସ୍ଥାରେ ମନୁଷ୍ୟ ଯାହା ଥିଲା ଆଜି ମଧ୍ୟ ତାହାହିଁ ରହିଥାନ୍ତା । ଆକାଙ୍‌କ୍ଷା ଏବଂ ଅଭିରୁଚି ଅନୁସାରେ ପ୍ରତ୍ୟେକ ବ୍ୟକ୍ତିର ଆଦର୍ଶ ସ୍ୱତନ୍ତ୍ର । ଏହି ଭିନ୍ନ ଆଦର୍ଶ ହିନ୍ଦୁମାନଙ୍କ ଶାସ୍ତ୍ର ପୁରାଣରେ ଅତିମାନୁଷ ବା ଦୈବ ଆକାରରେ ଚିତ୍ରିତ ହୋଇଛନ୍ତି । ଧନୀର ଆଦର୍ଶ କୁବେର, ଯୋଗୀର ଆଦର୍ଶ ସଦାଶିବ, ଗାୟକର ଆଦର୍ଶ ଗନ୍ଧର୍ବ, ପଣ୍ଡିତର ଆଦର୍ଶ ବୃହସ୍ପତି ଇତ୍ୟାଦି ଏକା ହିନ୍ଦୁ ପୁରାଣରେ ନୁହେ, ଅନ୍ୟାନ୍ୟ ଜାତିମାନଙ୍କ ପୁରାଣ ପ୍ରବଚନିକା ଆଦିରେ ମଧ୍ୟ ଏହିପରି ବହୁଳ ଚିତ୍ର ଦେଖାଯାଏ । ପ୍ରତ୍ୟେକ ବ୍ୟକ୍ତି ପରି ପ୍ରତ୍ୟେକ ଜାତିର ଆଦର୍ଶ ସ୍ୱତନ୍ତ୍ର । ଜାତୀୟ ଜୀବନର ଗତି, ପ୍ରକୃତି, ଆଶା, ଉଦ୍ଦେଶ୍ୟ ପ୍ରଭୃତିର ଅନୁସରଣରେ ଏହି ଆଦର୍ଶ ଗଠିତ । ଭାରତୀୟ ଆର୍ଯ୍ୟ ପକ୍ଷରେ ଏ ସଂସାର କର୍ମଭୂମି; କର୍ମକ୍ଷୟ ହୋଇ ନଥିବାରୁ ମାନବ ଏଠାରେ ଜନ୍ମେ । କର୍ମ ସାଧନ ଏଠାରେ ତାହାର ଉଦ୍ଦେଶ୍ୟ । ତେଣୁ ଆର୍ଯ୍ୟଜୀବନ କର୍ମମୟ । ପାଶ୍ଚାତ୍ୟମାନଙ୍କପରି ଅନ୍ୟଠାରୁ ନିଜ ସ୍ୱତ୍ୱ ଦାବି କରିବା ଭାରତୀୟ ଜୀବନର ନିୟାମକ ଗତି ନୁହେ । ଅନ୍ୟର ପ୍ରାପ୍ୟ ଦେବାକୁ ଭାରତୀୟ ବ୍ୟସ୍ତ । ଅନ୍ୟ-ଠାରୁ ନିଜର ପ୍ରାପ୍ୟ ପାଇବା ଲାଗି, ଅନ୍ୟ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବା ଲାଗି ସେ ତେତେ ବ୍ୟସ୍ତ ନୁହେ । ସ୍ଥୂଳରେ, ଅନ୍ୟର ଦେଣା ପରି-ଶୋଧ କରିବା ଅର୍ଥାତ୍ ଅନ୍ୟପ୍ରତି ନିଜର କର୍ତ୍ତବ୍ୟ କରିବାହିଁ ଭାରତୀୟ ଆର୍ଯ୍ୟର ଧର୍ମ । ସେ ଯେପରି ଏହି ଅସୀମ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ର; ଅତୀତ



" ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ବର୍ତ୍ତମାନ ଭବିଷ୍ୟତର ସମସ୍ତ ଚରାଚରପ୍ରତି ତାଙ୍କର କର୍ତ୍ତବ୍ୟ ରହିଛି । ସେ ଅସଂଖ୍ୟ କର୍ତ୍ତବ୍ୟ ପରିଧିରେ ଆବୃତ । ପିତା ପୁତ୍ର, ପତି ପତ୍ନୀ ରାଜା ପ୍ରଜା ଶିକ୍ଷକ ଛାତ୍ର, ସାମନ୍ତ ସେବକ ଇତ୍ୟାଦି ବହୁବିଧ ଆପେକ୍ଷିକ ଅବସ୍ଥା ମଧ୍ୟରେ ମନୁଷ୍ୟ ରହିଅଛି ଏବଂ ଏହି ପ୍ରତ୍ୟେକ ଅବସ୍ଥାରେ ତାହାର ସ୍ୱତନ୍ତ୍ର କର୍ତ୍ତବ୍ୟ ଅଛି । ଏହି ସବୁ କର୍ତ୍ତବ୍ୟ କରିପାରିଲେ ତାହାର ଜନ୍ମ ସାର୍ଥକ । ଏହି ଅସଂଖ୍ୟ କ ର୍ତ୍ତ ବ୍ୟର ସମଷ୍ଟି ମାନବ ଧର୍ମ । ଏହି ମାନବ ଧର୍ମ ରକ୍ଷା କରିବା ଲାଗି ଭାରତର ଯୁଗେ ଯୁଗେ ଭଗବାନଙ୍କର ଅବତାର ।"

ଫକୀର ମୋହନଙ୍କର ଭାଷା ଥିଲା । ମାତ୍ର ସେ ତାହା ଉପନ୍ୟାସରେ ଦେଖାଇ ଯାଇ ଅଛନ୍ତି । ଚିନ୍ତା ପୂର୍ଣ୍ଣ ସାରଗର୍ଭକ ପ୍ରବନ୍ଧମାନ ଅତି ସରଳ-ଭାଷାରେ ଗୋପବନ୍ଧୁ ଯେପରି ଲେଖିଥିଲେ ତାହା ଉତ୍କଳରେ ଆଜି ପର୍ଯ୍ୟନ୍ତ ଦେଖାଯାଇ ନାହିଁ । ଅନେକେ କହନ୍ତି ଚିନ୍ତା ଉଚ୍ଚ ହେଲେ ଭାଷା ମଧ୍ୟ ଉଚ୍ଚ ହୋଇଯିବ । ମାତ୍ର ଚିନ୍ତା ଯେତେ ଉଚ୍ଚ ହେଉ ନା କାହିଁକି, ଭାବ ଯେତେ ସାରଗର୍ଭକ ହେଉନା କାହିଁକି, ଗୋପବନ୍ଧୁ ସେ ସମସ୍ତ କୋମଳ ମଧୁର ଭାଷାରେ ପ୍ରକାଶ କରିପାରୁ ଥିଲେ । ତାଙ୍କ ପ୍ରବର୍ତ୍ତିତ 'ସମାଜ'ର ଭାଷା ଆଜିକାଲି ଯୁଗର ସାହିତ୍ୟ । ସେଥିରେ ସେ ଯାହା ଯେପରି ଭାଷାରେ ଲେଖିଯାଇ ଅଛନ୍ତି ତାହା ଅକ୍ଷର ଚିହ୍ନି ଥିବା ଲୋକ ବୁଝି ପାରିବ ଅଥଚ ।ତାହା ଉତ୍କଳ ସାହିତ୍ୟର ଭାଷା । ତାଙ୍କ ନିକଟରେ ସାହିତ୍ୟଭାଷା ଓ ଗ୍ରାମ୍ୟ ଭାଷାର ପ୍ରଭେଦ ନ ଥିଲା । ଭାଷା ଉପରେ ପ୍ରକୃତ ତାଙ୍କର ଦଖଲ ଥିଲା । ତାଙ୍କ ଲିଖିତ ବିଷୟମାନଙ୍କର ଗ୍ରନ୍ଥାବଳୀ ହୋଇ ନାହିଁ କିମ୍ବା ତାଙ୍କର କିଛି ଉପନ୍ୟାସ ପ୍ରକାଶ ପାଇନାହିଁ । ଏଥିପାଇଁ ଯେ ସେ କବି ନୁହନ୍ତି ତାହା ନୁହେ । ସାହିତ୍ୟସେବୀ ମାତ୍ରକେ ତାଙ୍କ ସାହିତ୍ୟ ଚର୍ଚ୍ଚାର ମହତ୍ତ୍ୱ ବୁଝିବେ । ସେ କେବେ କବି ହେବା ପାଇଁ ଲାଳାୟିତ ନ ଥିଲେ ! ମାତ୍ର ଦେଶର ନାନା ଚିନ୍ତାରେ ରହି ଆଜୀବନ ଏପରି ଅଦ୍ଭୁତ କର୍ମମୟ ଜୀବନ ଯାପନ କରି ସାରସ୍ୱତ ଉପାସନା ଭୁଲି ନ ଥିଲେ । କେବଳ ପଦ୍ୟ ଓ ଗଦ୍ୟ ସାହିତ୍ୟ ନିଜ ଲେଖନୀରୁ ସରଳ, ସୁସଂଯତ ଓ ସୁବୋଧ

ଭାଷାରେ ପ୍ରକାଶ କରିବାରେ ସେ ଯେ ସୁଦକ୍ଷ ଥିଲେ ତାହାନୁହେ ;
ଅନ୍ୟାନ୍ୟ ସମସ୍ତ ଭାଷାରୁ ସେ ଅନୁବାଦ କରିବାରେ ଅତିଶୟ ପାରଂଗମ
ଥିଲେ । ଇଂରାଜି ହିନ୍ଦି ବଙ୍ଗଳା ପ୍ରଭୃତି ଯେ କୌଣସି ଭାଷାରୁ ନିଜ ମାତୃ-
ଭାଷାରେ ଅନୁବାଦ କରିବାରେ ସେ ସିଦ୍ଧହସ୍ତ ଥିଲେ ।

ଅନେକେ ଶୁଣିଥିବେ ସଭା ସମିତିରେ କେହି ଇଂରାଜି କିମ୍ବା ହିନ୍ଦିରେ
ବକ୍ତୃତା କରି ତାହାଁର ଓଡ଼ିଆ ଅନୁବାଦ ଲୋକଙ୍କୁ ବୁଝାଇବାକୁ ଗୋପବନ୍ଧୁଙ୍କୁ
କହିଲେ ସେ ତାହାଁର ଅବିକଳ ଅନୁବାଦ କରୁଥିଲେ । ଏହି ଘଟଣାରେ ମନେ
ପଡ଼େ [illegible] ଦିନ ବନ୍ୟା ସଂମିଳନୀରେ ମାନ୍ୟବର ଆଣ୍ଡ୍ରୁଜ ସାହେବ
ଇଂରାଜିରେ ଏକ ସାରଗର୍ଭକ ବକ୍ତୃତା ଦେଇ ଉପସ୍ଥିତ ଲୋକଙ୍କୁ ବୁଝାଇବା
ପାଇଁ ଗୋପବନ୍ଧୁଙ୍କୁ କହିଥିଲେ । ଗୋପବନ୍ଧୁ ଓଡିଆରେ ସେ ବକ୍ତୃତାକୁ
ଯେପରିଭାବରେ କହିଲେ ତାହା ତାଙ୍କ ପ୍ରାଣରୁ ବାହାରୁଥିଲା ପରି ଜଣା
ପଡ଼ୁଥିଲା । ସେପରି କହିବା କେବଳ ତାଙ୍କର ପକ୍ଷରେ ସଂଭବ । ଏଥିରେ
ଶ୍ରୋତୃବର୍ଗ ମୋହିତ ହୋଇଥିଲେ । ଏଥର ମହାତ୍ମା ଗାନ୍ଧିଙ୍କ ହିନ୍ଦି
ବକ୍ତୃତାର ଅନୁବାଦ ଯେଉଁମାନେ ପୁରୀ ସଭାରେ ଶୁଣିଥିବେ ସେମାନେ
ଚିରଦିନ ଗୋପବନ୍ଧୁଙ୍କୁ ମନେ ରଖିଥିବେ ।

ତାଙ୍କର ବାଣୀ ଆରାଧନା ଗ୍ରାମ୍ୟ ଚଟ୍ଟଶାଳୀ ଘରଠାରୁ ଆରମ୍ଭ ହୋଇ-
ଥିଲା । ସେ କେତେବେଳେ ସୁଦ୍ଧା ତାହାଁରୁ ବିରତ ନ ଥିଲେ । ଲୌହ
ଶୃଙ୍ଖଳିତ ହୋଇ କାରାଗୃହକୁ ଗଲାବେଳେ ମଧ୍ୟ ତାଙ୍କ ପ୍ରାଣରୁ 'ବନ୍ଦୀର
ଆତ୍ମକଥା' ଓଡ଼ିଆ ସାହିତ୍ୟପାଇଁ ବାହାରି ପଡ଼ିଥିଲା । ନିର୍ଜନ କାରାବାସ
ଦଣ୍ଡ ମଧ୍ୟରେ ଶାଗଭାତ ଖାଇ ରହିବାବେଳେ ତାଙ୍କ ଲେଖନୀରୁ 'ଗୋମାହାତ୍ମ୍ୟ'
'ଧର୍ମପଦ' ବୋଲି ଲେଖା ବାହାରିଥିଲା । ସେଦିନ ଉତ୍କଳ ସାହିତ୍ୟର
ସଂପାଦକ 'ଧର୍ମପଦ' ଗ୍ରନ୍ଥପଢ଼ି ଲେଖିଥିଲେ, 'ଗୋପବନ୍ଧୁ ଦେଶସେବାରେ
ଯୋଗ ନ ଦେଇ ସାହିତ୍ୟ ସେବା କରିଥିଲେ ଉତ୍କଳ ସାହିତ୍ୟ ବଡ଼
ଉପକୃତ ହୋଇଥାନ୍ତା ।' ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଦେଶର କାନ୍ଦର

ଜୀବନ ପ୍ରତି ଦୃକ୍‌ପାତ କରନ୍ତି ସେ ଯେଉଁ ବାଣୀ ଆରାଧନାରେ ଲାଗିଥାନ୍ତେ ସେ ଯେ ଉତ୍କଳରେ ରବିଠାକୁର ନ ହୋଇ ଥାନ୍ତେ କିଏ କହିପାରେ ? ଦେଶର ନାନା କାର୍ଯ୍ୟରେ ରହି ମଧ୍ୟ ସେ ସାରସ୍ୱତ ପୂଜାରେ ସତତ ରତ ଥିଲେ । ସତ୍ୟବାଦୀରେ କେତୋଟି ଶିକ୍ଷିତ ବ୍ୟକ୍ତିଙ୍କର ଉପକାର ବ୍ୟତୀତ ଲୋକ ସମାଜର ଉପକାର କରି ପାରୁ ନାହାନ୍ତି ଭାବି 'ସମାଜ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ସେଥିରେ ସେ ନାନା ଦେଶ ବିଦେଶର ସମ୍ବାଦ ଦେବା ସଙ୍ଗେ ସଙ୍ଗେ ସାହିତ୍ୟ ପ୍ରଚାର କରୁଥିଲେ, ଲିପି ସଂସ୍କାର କରୁଥିଲେ ଏବଂ ଦେଶରେ ନୂତନ ଭାବର ଆଦର୍ଶ ଦେଖାଉଥିଲେ । ଏବଂ ତଦ୍ଦ୍ୱାରା ସମଗ୍ର ବିଶ୍ୱ ମାନବ ସେବା କରି ପାରୁଥିଲେ । ନାନା କର୍ମ ମଧ୍ୟରେ ବାଣୀ ପୂଜାରେ ବ୍ୟତିକ୍ରମ ଘଟିବାରୁ ସେ ତାଙ୍କ ଜୀବନର ଶେଷ କେତେକ ବର୍ଷରେ ପ୍ରତି ସପ୍ତାହର ବୁଧବାର ଦିନ ମୌନ ବ୍ରତ ପାଳୁଥିଲେ । ଗୋପବନ୍ଧୁ ଗ୍ରନ୍ଥାବଳୀ ପ୍ରକାଶ କରି କବିବର ଉପାଧି ପାଇଁ ଲାଳାୟିତ ନଥିଲେ କିମ୍ବା କାହାରି ନାମରେ ଦୁଇ ପଦ ପ୍ରଶଂସାବାଦ କରି ଅର୍ଥ ଲାଭ କରିବା ତାଙ୍କର ଅଭିଳାଷ ନଥିଲା । ସଭାସମିତିରେ ବକ୍ତୃତା ଦେବାରେ ଗୋପବନ୍ଧୁ ସୁଦକ୍ଷ ଥିଲେ । ଓଡ଼ିଆ ଭାଷାରେ ଏପରି ପ୍ରାଣସ୍ପର୍ଶୀ ବକ୍ତୃତା ଆଉ କାହାରି ପାଟିରୁ ବାହାରିବ ନାହିଁ । ତାଙ୍କର କରୁଣ ଉକ୍ତି ଓ ଭାଷା ଛଟାରେ ସମସ୍ତେ ମୁଗ୍ଧ ଓ ଚମତ୍କୃତ ହେଉଥିଲେ । ସେ ଅଭିଜ୍ଞ ବ୍ୟକ୍ତି ଥିଲେ । ସେ ପିଲାଦିନେ ଟିକିଏ ଖନାଥିଲେ । ତାଙ୍କ ହାତେ ବକ୍ତୃତା ଦେଇ ନ ହେବ ଭାବି ପୁରୀରେ ଅଧ୍ୟୟନ କଲାବେଳେ ପ୍ରତ୍ୟହ ସମୁଦ୍ର କୂଳକୁ ଯାଇ ଜଳତଳେ ବାଲିଗରଜା ମାନ ନିଯୁମିତରୂପେ ବକ୍ତୃତା ଦେବାରୁ ଶିଖିଥିଲେ । ସେ ଯାହା କହୁଥିଲେ ତାହାଙ୍କ ହୃଦୟର କଥା । ସେଥିପାଇଁ ତାଙ୍କର ବକ୍ତୃତା ଶୁଣି ସମସ୍ତେ କାନ୍ଦୁଥିଲେ । ଏହିପରି ସୁକବି, ସୁଲେଖକ ଓ ସୁବକ୍ତା ଥାଇ ଗୋପବନ୍ଧୁ ଓଡ଼ିଶାରେ ଯେ ନୂତନ ସାହିତ୍ୟର ଆଦର୍ଶ ଦେଇ ଯାଇଅଛନ୍ତି, ଭାଷାକୁ ଯେପରି ନୂତନ ଭାବରେ ଗଢ଼ି ଦେଇ ଯାଇଅଛନ୍ତି ଏବଂ ନିଷ୍ଠାପର ସାହିତ୍ୟ ସେବାର ଯେ ପରାକାଷ୍ଠା ଦେଖାଇ ଯାଇଅଛନ୍ତି ତାହା ଉତ୍କଳ ସାହିତ୍ୟ

ଭଣ୍ଡାରରେ ଚିରକାଳ ଆଦର୍ଶ ରହିବ । ଉତ୍କଳୀୟମାନେ ସେହି ସିଦ୍ଧ ସାଧକଙ୍କର ମହାନୁଭବୁକତାରେ ଅନୁପ୍ରାଣିତ ହୋଇ ତାଙ୍କର ଅତୁଳନୀୟ ଆଦର୍ଶକୁ ସମ୍ମୁଖରେ ରଖି ନିଷ୍ଠାପରଭାବରେ ବାଣୀ ଆରାଧନା କରିବେ ।

ଉତ୍କଳ ରାଜନୀତିର କ୍ଷେତ୍ର ନୁହେ । ଉତ୍କଳୀୟମାନେ ଆଜୀବନ ବନ୍ୟା-କ୍ଲିଷ୍ଟ ଦୁର୍ଭିକ୍ଷପୀଡ଼ିତ ଏବଂ ଦରିଦ୍ର । ସମସ୍ୟା ଥିଲା ଯେତେବେଳେ ଓଡ଼ିଶାରେ ଆଦର୍ଶ ରାଜନୀତି ଥିଲା । ବର୍ତ୍ତମାନ ସେମାନଙ୍କ ପକ୍ଷରେ ରାଜନୀତିର ଅର୍ଥ କିଛି ନାହିଁ । ସେମାନେ ପେଟପୂରା ପୁଷ୍ଟେ ପାଇବା ପାଇଁ ସର୍ବଦା ଲାଗି ପଡ଼ିଥାନ୍ତି ଏବଂ ସେଥିପାଇଁ କେବଳ ଆନ୍ଦୋଳନର ସୃଷ୍ଟି । ସେମାନଙ୍କର ସମସ୍ତ ଆନ୍ଦୋଳନ, ସମସ୍ତ କାର୍ଯ୍ୟ, ସେଇଥିପାଇଁ । ଗୋପବନ୍ଧୁ ସେହି ଆନ୍ଦୋଳନର ଅଗ୍ରଣୀ ଥିଲେ । ଲୋକଙ୍କୁ ଅନ୍ନ ବସ୍ତ୍ର ଯୋଗାଇବାହିଁ ତାଙ୍କର ରାଜନୀତି ଥିଲା । ସେଥିପାଇଁ ସେ ଦେଶର ଖବର କାଗଜ-ମାନଙ୍କରେ ଆନ୍ଦୋଳନ କରୁଥିଲେ । ଏହି ଆନ୍ଦୋଳନ ସଙ୍ଗେ ସଙ୍ଗେ ସେ ଦେଶର ବଡ଼ ବଡ଼ ରାଜନୈତିକ ପ୍ରଶ୍ନମାନ ଆଲୋଚନା କରୁଥିଲେ । ଉତ୍କଳକୁ ପୂର୍ଣ୍ଣାଙ୍ଗ ଦେଖିବାପାଇଁ ସେ ତାଙ୍କର ସମସ୍ତ ଶକ୍ତି ନିଯୋଜିତ କରିଥିଲେ । ଦେଶର ଅଭାବ ଦୂର କରିବାପାଇଁ ସେ ରାଜନୀତିର କେନ୍ଦ୍ରସ୍ଥଳ ବ୍ୟବସ୍ଥାପକ ସଭାକୁ ଯାଇଥିଲେ । ରାଜନୀତିର ଚର୍ଚ୍ଚାପାଇଁ କଂଗ୍ରେସର ବୈଠକମାନଙ୍କରେ ଯୋଗ ଦେଉଥିଲେ । ଲୋକମାନଙ୍କୁ ସେମାନଙ୍କର ହକ୍ ଦାବି ବୁଝାଇବାପାଇଁ ସେ ଅସହଯୋଗ ନୀତି ଅବଲମ୍ବନ କରିଥିଲେ । ଉତ୍କଳରାଜନୀତି କ୍ଷେତ୍ରରୁ ବନ୍ଧୁଙ୍କାଳରୁ ଅଲଗା ଥିଲା । ଗୋପବନ୍ଧୁଙ୍କ କୃତିତ୍ୱରେ ସମଗ୍ର ଉତ୍କଳବାସୀ ଉତ୍କଳସମ୍ମିଳନୀରେ ରାଜନୀତି ଚର୍ଚ୍ଚା ପ୍ରଥମେ ଆରମ୍ଭ କରିଥିଲେ । ଓଡ଼ିଆମାନେ ଗୋପବନ୍ଧୁଙ୍କଠାରୁ ଶିଖିଥିଲେ ଯେ ସେମାନେ ପ୍ରଥମେ ଭାରତୀୟ, ତାପରେ ଉତ୍କଳୀୟ । ଗୋପବନ୍ଧୁଙ୍କ ଶେଷଜୀବନରେ ସେ ଲଜପତ ରାୟଙ୍କ ପ୍ରତିଷ୍ଠିତ The Tilak school of Politics ରେ ଯୋଗଦେଇ ଉତ୍କଳରେ ରାଜନୀତି

ଚର୍ଚ୍ଚାପାଇଁ କ୍ଷେତ୍ର ପ୍ରସ୍ତୁତ କରୁଥିଲେ । ଦେଶୀୟ ଏବଂ ବିଦେଶୀୟ ରାଜନୀତି-ମାନ ଖବର କାଗଜରେ ଚର୍ଚ୍ଚା କରୁଥିଲେ । ରାଜନୀତି କ୍ଷେତ୍ରରେ ତାଙ୍କର ବିଚକ୍ଷଣତା, ବହୁଦର୍ଶିତାର ପ୍ରମାଣ ବହୁବାର ମିଳିଥିଲା । ଭାରତରେ ରାଜନୀତିଜ୍ଞ ହୋଇ ସେ ଦେଶର ରାଜନୀତି ଚର୍ଚ୍ଚା କଲାବେଳେ ଲୋକମାନଙ୍କ ଦ୍ୱାରା ଅତି କଦର୍ଯ୍ୟ ଭାବରେ ସମାଲୋଚିତ ହେଲେ ସୁଦ୍ଧା ଲୋକମାନେ ତାଙ୍କର ନିନ୍ଦା ବାଦ କଲେ ମଧ୍ୟ ସେ ବିଚଳିତ ହେଉନଥିଲେ । ଏହିପରି ଭାରତର ରାଜନୀତି କ୍ଷେତ୍ରରୁ ସେ କେବେବେଳେ ଅଲଗା ହୋଇ ରହି ପାରୁନଥିଲେ ।

ଗୋପବନ୍ଧୁ ସତ୍ୟପ୍ରିୟ ଓ ନ୍ୟାୟପରାୟଣ ଥିଲେ । ଅତି ଶୈଶବରୁ ଯେ ଧର୍ମଚର୍ଚ୍ଚା କରୁଥିଲେ । ଗାଁ ମରହଟ୍ଟି ଲୋକଙ୍କ ପରି ତାଙ୍କର ଧର୍ମ ଉପରେ ଈଶ୍ୱରଙ୍କ ଉପରେ ଅଟଳ ବିଶ୍ୱାସ ଥିଲା । ଛାତ୍ର ଜୀବନରେ ଅବକାଶ ସମୟରେ ସେ କିପରି ସନ୍ଧ୍ୟା ସାରିରୂପେ ଗ୍ରାମଦେବତାଙ୍କଠାରେ ସମୟ କଟାଉଥିଲେ ତାହା ସମସ୍ତେ ଜାଣନ୍ତି । ପୁରୀଜିଲା ସ୍କୁଲରେ ପଢିବାବେଳେ ସେ ପ୍ରତ୍ୟହ ଜଗନ୍ନାଥ ଦର୍ଶନ କରୁଥିଲେ । କଟକ ଅବସ୍ଥାନ କାଳରେ କାଳୀ ତାଙ୍କର ଆରାଧ୍ୟ ଦେବତା ଥିଲେ । ସତ୍ୟବାଦୀରେ ସାକ୍ଷିଗୋପାଳଙ୍କୁ ଦର୍ଶନ ନ କଲେ ସେ ଅନ୍ନ ଭୋଜନ କରୁ ନ ଥିଲେ । ମୋଟ ଉପରେ ଧର୍ମପ୍ରାଣତା, ଈଶ୍ୱରନିର୍ଭରତା ଗୋପବନ୍ଧୁଙ୍କର ପ୍ରକୃତି ଥିଲା । ଯେତେବେଳେ ଯେଉଁ କାର୍ଯ୍ୟ କରୁଥିଲେ 'ଜଗଦ୍ଧିତାୟ କୃଷ୍ଣାୟ' ବୋଲି କହୁଥିଲେ । ସେ ନିଜେ କିଛି କରୁଛନ୍ତି ବୋଲି ତାଙ୍କର ବିଶ୍ୱାସ ନଥିଲା । ସେ ସମୟ ସମୟରେ ଏକାକୀ ବସି ବିଭୁ ଉପାସନାରେ ମଗ୍ନ ରହି ଅଶ୍ରୁ ବର୍ଷଣ କରୁଥିଲେ । ସେ ଯେପରି କି ସର୍ବଦା ଈଶ୍ୱର ସତ୍ତା ଅନୁଭବ କରୁଥିଲେ । ସେଥିପାଇଁ ବିପଦ ନିର୍ଯ୍ୟାତନ ଓ ତୀବ୍ର ସମାଲୋଚନାକୁ ତାଙ୍କର ଭ୍ରୂକ୍ଷେପ ନ ଥିଲା । ଧର୍ମବଳରେ ବଳୀୟାନ ହେବାପାଇଁ ଜଗତକୁ ଆଦର୍ଶ ଦେଖାଉ ଥିଲେ । ଭାରତର ଧର୍ମ, ଇତିହାସ, ସମାଜ ବିଧାନରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ସେ ରାଜନୀତିକୁ ଧର୍ମ ମଧ୍ୟରେ ରଖିଥିଲେ । ସେ ଧର୍ମବଳରେ ଏକା

ମନୁଷ୍ୟ ପଦବାଚ୍ୟ ଥିଲେ । ସେ ଯେଉଁ ନିଗୂଢ଼ ଧର୍ମତତ୍ତ୍ୱ ବୁଝିଥିଲେ ତହିଁର ବଳରେ ସେ ଦେଶରେ ଲୋକସାଧାରଣଙ୍କ ପ୍ରାଣରେ ଅପୂର୍ବ ଭାବ ଓ ତେଜ ଆଣିଥିଲେ । ଧର୍ମାତ୍ମା ଗୋପବନ୍ଧୁ ଧର୍ମ ଜଗତରେ ଯେ ନୂତନ ଜ୍ୟୋତି, ନୂତନ ତତ୍ତ୍ୱ ଓ ନୂତନ ଭାବ ଦେଇଯାଇ ଅଛନ୍ତି ତାହା ଚିରକାଳ ସ୍ମୃତିପଟରେ ଜାଗ୍ରତ ଥିବ । ତାଙ୍କର ଦୈନନ୍ଦିନ ଉପାସନାରେ ସେ କହୁଥିଲେ, "ଅସତୋ ମା ସଦ୍‌ଗମୟ, ତମସୋ ମା ଜ୍ୟୋତିର୍ଗମୟ, ମୃତ୍ୟୋର୍ମା ମୃତ ଗମୟ । ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟାଃ ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ । ଶଂନୋ ମିତ୍ର, ଶଂବରୁଣ, ଶଂନୋ ଭବତ୍ୟର୍ଯ୍ୟମା, ଶଂନୋ ଇନ୍ଦ୍ରୋ ବୃହସ୍ପତି, ଶଂନୋ ବିଷ୍ଣୁରୁରୁକ୍ରମ ନମୋ ବ୍ରହ୍ମଣେ, ନମସ୍ତେ ବାୟୋଃ, ତ୍ୱମେବ ପ୍ରତ୍ୟକ୍ଷଂ ବ୍ରହ୍ମାସି, ତ୍ୱମେବ ପ୍ରତ୍ୟକ୍ଷଂ ବ୍ରହ୍ମବଦିଷ୍ୟାମି, ଋତଂ ବଦିଷ୍ୟାମି, ସତ୍ୟଂ ବଦିଷ୍ୟାମି, ତନ୍ମାମବତୁ, ତଦ୍‌ବକ୍ତାରମବତୁ, ଅବତୁ ମାମବତୁ ବକ୍ତାରଂ, ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ, ଓ ଶେଷରେ କହନ୍ତି, ପ୍ରଭୋ ! ତୁମ୍ଭର ଇଚ୍ଛା ପୂର୍ଣ୍ଣହେଉ, ତୁମ୍ଭର ମହିମା ଧନ୍ୟହେଉ, ତୁମ୍ଭର ବାସନା ପୂର୍ଣ୍ଣ ହେଉ । ଦେଶର ନାନା କାର୍ଯ୍ୟରେ ଲାଗିଥିଲେ ସୁଦ୍ଧା ଦୈନନ୍ଦିନ ଉପାସନା ତାଙ୍କର ନିତ୍ୟ କର୍ତ୍ତବ୍ୟ ଥିଲା । ଏହି ବ୍ରତ ସେ ଶେଷଜୀବନ ଯାଏ ପାଳନ କରିଥିଲେ । ମୃତ୍ୟୁଶଯ୍ୟାରେ ପଡ଼ି କରଯୋଡ଼ି ଈଶ୍ୱରଙ୍କୁ ମଧ୍ୟ ଜଣାଇଥିଲେ ଏବଂ ସହକର୍ମୀମାନଙ୍କୁ ତାଙ୍କପାଇଁ ବିଧାତାଙ୍କୁ ଡ଼ାକିବା ନିମନ୍ତେ ଅନୁରୋଧ କରିଥିଲେ ।

ଗୋପବନ୍ଧୁ ଦରିଦ୍ରର ବନ୍ଧୁ ଥିଲେ ସେ ଆଜୀବନ ଦରିଦ୍ର ନାରାୟଣ ସେବାରେ ପ୍ରାଣ ଉତ୍ସର୍ଗ କରିଥିଲେ । ସେଥିପାଇଁ ରାଜା ଜମିଦାରମାନଙ୍କର ଅନେକ ସମୟରେ ବିରାଗଭାଜନ ହୋଇଥିଲେ । ସେମାନେ ଅନେକ ସମୟରେ ତୀବ୍ର ସମାଲୋଚନା କରୁଥିଲେ ସୁଦ୍ଧା ତାଙ୍କର ଉଦାର ହୃଦୟ ତ୍ୟାଗପୂତ ଜୀବନ ଓ ପ୍ରସନ୍ନ ବଦନ ଦର୍ଶନ କରି ସ୍ନେହଡୋରରେ ଆବଦ୍ଧ ରହୁଥିଲେ । ଅନେକ ସମୟରେ ସେ ବ୍ରାହ୍ମଣ ଥିଲେ ବୋଲି ବ୍ରାହ୍ମଣେତର ଜାତିମାନେ ତାଙ୍କ କାର୍ଯ୍ୟରେ ଆକ୍ଷେପ ପ୍ରକାଶ କରୁଥିଲେ ମାତ୍ର ତାଙ୍କର

ବିଶ୍ୱପ୍ରାଣତାରେ ସେ ସର୍ବଜନ ପ୍ରୀତି ଲାଭ କରିଥିଲେ । ଯେତେବେଳେ ଯେଉଁଠାରେ ରହୁଥିଲେ ସେଠାରେ ସେତେବେଳେ ସମସ୍ତେ ତାଙ୍କର ପୂଜା କରୁଥିଲେ । ସ୍ୱାଧୀନ ଜୀବନରେ ନୁହେଁ, ପରାଧୀନରେ ଥିଲେ ମଧ୍ୟ ସମସ୍ତଙ୍କର ଉପକାର ଲାଗି କପରି ସ୍ୱଦେଶବତ୍ସଳ ହୋଇ ପାରିଥିଲେ ତାହା ତାଙ୍କର ମୟୁରଭଞ୍ଜରୁ ବିଦାୟ ଘେନି ଆସିବା ସମୟରେ ରଚିତ ହୋଇଥିବା ନିମ୍ନଲିଖିତ ପଂକ୍ତିଚୟରୁ ପରିଚୟ ମିଳେ ।

"ଯେଷାଂ ମହୋତ୍ସବ କର-ସ୍ତବ ସଙ୍ଗଲୀଭୈ<br>
ବାଧେତ ତାନ୍ସବନ୍ଧୁ କିଂ ଭବତୋ ବିଯୋଗଃ ।<br>
ମେଘାତ୍ୟୟେ କ୍ୱମୁମୁଦା ବିହରନ୍ତି ବନ୍ଧୋ<br>
ମଞ୍ଜୁ-ପ୍ରଫୁଲ୍ଲବନରାଜିଗତା ମୟୂରାଃ ॥<br>
କର୍ତ୍ତବ୍ୟନଷ୍ଟ ସୁତରାଂ ମନସି ପ୍ରଶସ୍ତେ<br>
ଜାଗର୍ତ୍ତିତେ ସତତ ମୂକ୍ଳ-ମଙ୍ଗଳେଚ୍ଛା<br>
ସ୍ଥାନାନ୍ତରଂ ଗତବତ ସ୍ତବ ସୌହୃଦଂ କିଂ<br>
ସତ୍ୟକ୍ଷ୍ୟତୀହ ବସତୋ ବିପିନାଳୟେ ନଃ ॥<br>
ଦୂରତା ଯଦି ସଖିତ୍ୱ—ଘାତନୀ<br>
ନର୍ମ୍ମଦା-ବିମଳବାରି-ଖେଳତଃ<br>
ରାଜହଂସ-ନିଚୟସ୍ୟ ଭାରତେ<br>
ମାନସଂ ନ ଭବତୁ ପ୍ରିୟଂ ତଦା ॥<br>
ପରୋପକାର-ବ୍ରତ-ରତ୍ନ-ଧାପିତ<br>
ବରିଷ୍ଠ ତେ କେନ ଭବେଦଳଂ କ୍ୱଚିତ୍<br>
ହୃଦି ସ୍ଥିତାଂ ନଃ ପ୍ରଣୟାମ୍ବୁଜସ୍ରଜଂ<br>
ବିନା ନ କିଞ୍ଚିତ୍ ଖଲୁ ବିଦ୍ୟତେଽଧୁନା ॥

ଯଶୋଲଭସ୍ତ୍ୱାମ୍ପଗୁଣୈ ର୍ମହାସ୍ତ୍ୱଃ
ଶିବାନ୍ନ ତେ ସ୍ୱଃ ସକଳ ଜିହ୍ୱାସୁ
ନ ବସ୍ତୁର ସ୍ନେହତନ୍ତ୍ରା ଯଶୋ ନଃ
ସଦାବନ୍ତୁ ହ୍ୱାଂ ଜଗଦନ୍ତ ରମ୍ଭା ”

( ପଣ୍ଡିତ ଶ୍ରୀ କପିଳେଶ୍ୱର ମିଶ୍ର ଶର୍ମା )

ଜୀବନରେ ଏପରି ଅଦ୍ଭୁତ ଆତ୍ମତ୍ୟାଗର ଜ୍ୱଳନ୍ତ ଦୃଷ୍ଟାନ୍ତ ସମଗ୍ର ଦେଶରେ ଅତି ବିରଳ ଦେଖାଯାଏ । ଗୋପବନ୍ଧୁ ତାଙ୍କର କର୍ମମୟ ଜୀବନକୁ ତ୍ୟାଗରେ ଆରମ୍ଭ କରିଥିଲେ ଏବଂ ସେହି ତ୍ୟାଗରେ ତାହା ସାଙ୍ଗ କରି ଅଛନ୍ତି । ତାଙ୍କର ସମସ୍ତ ଜୀବନ ଦେଶ ସେବାରେ ଖଟାଇ ନିଜର ବିଳାସ ବିଭବ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ତହିଁରେ ସ୍ୱର୍ଗୀୟ ସୁଖ ଶାନ୍ତି ଉପଭୋଗ କରୁଥିଲେ । ପରିଚ୍ଛଦ ପର୍ଯ୍ୟନ୍ତ ତାଙ୍କର ଆଡମ୍ବରଶୂନ୍ୟ ଥିଲା । ସାଧା ଧୋତି ଗୁଦର ଦୁଇଖଣ୍ଡିରେ ସେ ସର୍ବତ୍ର ଉପସ୍ଥିତ ହେଉଥିଲେ । ତାଙ୍କର ଯଥାସର୍ବସ୍ୱ ସେ ଦେଶକାର୍ଯ୍ୟରେ ନିୟୋଗ କରିଥିଲେ । ତାଙ୍କର ଜୀବନତ୍ୟାଗରେ, ତାଙ୍କର ଅଦ୍ଭୁତ ବୈରାଗ୍ୟ ଓ ସାଧନାର ଫଳରେ ସେ ସିଦ୍ଧିଲାଭ କରି ପାରିଥିଲେ ।

ଗୋପବନ୍ଧୁ ଆଜି ଇହ ଜଗତରେ ନାହାନ୍ତି । ତାଙ୍କର କାର୍ଯ୍ୟ ଶେଷ କରି ସେ ଚିର ବିଶ୍ରାମ ନେଇ ଅଛନ୍ତି । ଅବଶ୍ୟ ଜନ୍ମଭୂମିର ଏ ବିଷମ ଦୁର୍ଦ୍ଦିନରେ, ଓଡ଼ିଶାର ଅନ୍ନ ବସ୍ତ୍ର ସମାଧାନର ଏ ଘୋର ସଙ୍କଟ ସମୟରେ, ଉତ୍କଳର ରାଜନୈତିକ ଆକାଶ ଏପରି ତମସାଚ୍ଛନ୍ନ ଥିଲାବେଳେ ଗୋପବନ୍ଧୁଙ୍କର ତିରୋଧାନ ଦେଶବାସୀଙ୍କ ପ୍ରାଣରେ ମର୍ମନ୍ତୁଦ ଯନ୍ତ୍ରଣା ଆଣିବାର କଥା । ଦେଶବାସୀ ହତାଶ ହେବା ସୁନିଶ୍ଚିତ । ତାଙ୍କର ଏ ଅକାଳ ବିୟୋଗରେ ଉତ୍କଳ ତଥା ଭାରତବାସୀଙ୍କର ପ୍ରାଣ କାନ୍ଦୁଛି । ପଲ୍ଲୀର କୃଷକଠାରୁ ଆରମ୍ଭ କରି ସହରର ସୌଧନିବାସୀ ଯାଏ, ଦାଣ୍ଡର ଭିକାରୀଠାରୁ ଆରମ୍ଭ କରି

ରଜା ମହାରାଜା ଯାଏ ସମସ୍ତେ ଆଜି ତାଙ୍କର ଅଭାବ ଅନୁଭବ କରୁଛନ୍ତି । ସେ ଯେ ଖାଲି ଦରିଦ୍ରର ବନ୍ଧୁ, ପତିତର ସହାୟ ଓ ରୋଗଗ୍ରସ୍ତର ସେବାକାରୀ ଥିଲେ ତାହା ନୁହେଁ । ତାଙ୍କୁ ଯେ ଯେତେବେଳେ ଆଶ୍ରୟ ମାଗୁଥିଲା ସେ ସେତେବେଳେ ସେଠାରେ ଉପସ୍ଥିତ ହେଉଥିଲେ । ସେଥି ପାଇଁ ଅନେକେ ତାଙ୍କର ନାମକୁ ଗୋପବନ୍ଧୁ ଅର୍ଥାତ୍ ଭାରତବାସୀଙ୍କର ବନ୍ଧୁ ବୋଲି ଲେଖି ଅଛନ୍ତି । ସେ ଯାହା ହେଉ ତାଙ୍କର ଉଦାର ସୁକୋମଳ ହୃଦୟ କାହାରି ଦୁଃଖ ଦେଖିଲେ ବିଗଳିତ ହେଉଥିଲା । ସେ ପର ଦୁଃଖରେ ଲୋତକ ବର୍ଷଣ ନ କରି ରହି ପାରୁ ନ ଥିଲେ । ସେଥିପାଇଁ ସେ ପରଦୁଃଖ ମୋଚନକୁ ଜୀବନର ବ୍ରତ କରି ନେଇଥିଲେ । ସେ କହୁଥିଲେ—

କାପୁରୁଷ ପରି ମରିବା ଜଗତେ<br>
ନୁହେଁ ନର ପଉରୁଷ<br>
ପରହିତ ସାଧି ମରେ ଯେ ମହୀରେ<br>
ସେହି ଏକା ସୁପୁରୁଷ ।

ମାନବ ଜୀବନ ନୁହଇ କେବଳ<br>
ବର୍ଷ ମାସ ଦିନଦଣ୍ଡ<br>
ଧର୍ମେ ଜୀଏ ନର କର୍ମ ଏକା ତାର<br>
ଜୀବନର ମାନଦଣ୍ଡ ।

ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର-<br>
ଶିଖା ହେଜି ହୁତାଶନ<br>
କଳି ଭେଦ କରେ ଆଲୋକ ପ୍ରଦୀପ<br>
ତମୋଦଗେ ବିକିରଣ ।

ଲଭୁ ସେ ଝଣକେ ତଥାପି ଏ ଲୋକେ<br>
ରହେ ତା, ଆଦର ଯଶ

ନ ଲୋଡ଼ା ତହିଁରେ    ରହେ ଯେ ମହୀରେ
କୁହୁଳି ସହସ୍ର ବଷ ।

ବାସ୍ତବିକ ଗୋପବନ୍ଧୁ ବୁଝିଥିଲେ କର୍ମହିଁ ମାନବର ଜୀବନ । ମନୁଷ୍ୟର ଜୀବନ ବର୍ଷ, ମାସ, ଦିନ, ଦଣ୍ଡରେ ମପାଯାଏ ନାହିଁ; ମପାଯାଏ କର୍ମରେ । ମଲା ପରେ ଲୋକେ ହିସାବ ଖୋଜନ୍ତି-ସଂସାରକୁ ଆସି ଲୋକ କି କି କର୍ମ କରି ଯାଇଅଛନ୍ତି । ସେହି କର୍ମବଳରେ ବଳୀୟାନ ହୋଇ ପାଞ୍ଚବର୍ଷର ଶିଶୁ ପ୍ରହ୍ଲାଦ ସାତକଳ୍ପ ମୁନିଙ୍କଠାରୁ ବଡ ହୋଇଥିଲା । ସେହି କର୍ମ ବଳରେ ବଳୀୟାନ ହୋଇ ଶଂକର ୩୨ ବର୍ଷ ବଞ୍ଚିଥିଲେ ସୁଦ୍ଧା ଜଗତ୍ପୂଜ୍ୟ ହୋଇଥିଲେ । ସେହି କର୍ମର ଫଳରେ ମାନବ ପଶୁତ୍ୱ ତ୍ୟାଗ କରି ଦେବତ୍ୱ ଲାଭକରେ । ଗୋପବନ୍ଧୁ ସେହି କର୍ମ ବଳରେ ବଳୀୟାନ ଥିଲେ । ସେହି କର୍ମ ବଳରେହିଁ ସେ ଆଜି ଦେବତ୍ୱ ଲାଭ କରିଅଛନ୍ତି । ସେ ଜଗତରେ ସହସ୍ର ବର୍ଷ ରହି କୁହୁଳିବା ପାଇଁ ଆସି ନଥିଲେ, ସେ ଆସିଥିଲେ କ୍ଷଣକ ପାଇଁ, ସେହି କ୍ଷଣକର ଦୀପ୍ତ ଆଲୋକରେ ଜଗତକୁ ଚମକିତ କରିବା ପାଇଁ । ସେହି କ୍ଷଣ-ଜନ୍ମା ମହା ପୁରୁଷ ୫୧ ବର୍ଷ ମାତ୍ର ରହି ଜଗତକୁ ଯେଉଁ ଉଜ୍ଜ୍ୱଳ ଆଦର୍ଶ ଦେଖାଇ ଯାଇ ଅଛନ୍ତି, ଯେଉଁ ଜ୍ୱଳନ୍ତ ପ୍ରତିଭା ଜଗତ୍ ସମ୍ମୁଖରେ ପ୍ରତିଭାତ କରି ଯାଇଅଛନ୍ତି, ଯେଉଁ ମହିମାମୟ ତେଜରେ ଜଗତକୁ ଆଲୋକିତ କରିଅଛନ୍ତି ତାହା ଯୁଗେ ଯୁଗେ ଜଗତକୁ ଆଲୋକ ଦେଉଥିବ । ସେ ଯୁଗେ ଯୁଗେ ଭାରତର ନର ନାରୀଙ୍କର ହୃଦୟରେ ଦୟା, ଶକ୍ତି, ଧୈର୍ଯ୍ୟ ଆନୟନ କରୁଥିବେ । ତାଙ୍କର ସେହି ଶକ୍ତି ସମୀରର ମୃଦୁମନ୍ଦ ସ୍ୱନରେ, ସମୀରଣର କୁଞ୍ଜ କୁଞ୍ଜ ତାନରେ, କୋକିଳର କୁହୁ କୁହୁ ଗାନରେ କହି ବୁଲୁଥିବ,

"ଯେ ବାଞ୍ଛାରେ ଥରେ କରନ୍ତି ବିଶ୍ୱାସ
ନ ଛାଡ଼ି ତା ଥିବା ଯାଏ କି ନିଶ୍ୱାସ ।"

ଭାରତରେ ଗୋପବନ୍ଧୁ ଯେ କି ଆଦର୍ଶ ଦେଖାଇ ଯାଇଅଛନ୍ତି, ସେ ଜଗତକୁ ଯେ କି ପ୍ରେରଣା ଦେଇ ଯାଇଅଛନ୍ତି ତାହାର ପୁନରୁଲ୍ଲେଖ

ଏଠାରେ ନିଷ୍ପ୍ରୟୋଜନ । ସେ ବୀର ଥିଲେ, ସେଥିପାଇଁ ଆଜୀବନ ବୀରପଣ ତାଙ୍କର ବ୍ରତ ଥିଲା । ସେ ଉପଦେଶ ଦେଉଥିଲେ :—

"କାତରତା ସିନା କାପୁରୁଷ ପଣ
ବୀର ମାରେ ଅବା ମରେ କରି ରଣ
ପଛ ଘୁଂଚା ନାହିଁ ବୀରର ଜୀବନେ
ନ ମରେଁ ସେ କେଭେ ପଶ୍ଚ ଆଚରଣେ ।"

ଆବାଲ୍ୟରୁ ଗୃହ ତ୍ୟାଗ କରିଥିଲେ ସୁଦ୍ଧା ସେ ଆଦର୍ଶ ଗୃହସ୍ଥ ଥିଲେ । ସଂସାରୀ ହୋଇ,ସନ୍ତାନମାନଙ୍କର ଲାଳନପାଳନ ଭାରଗ୍ରହଣକରିକପରି ନିର୍ଲିପ୍ତ ଭାବରେ ପର ଉପକାର ସାଧନ କରାଯାଇ ପାରେ ତାହାର ଜ୍ୱଳନ୍ତ ଉଦାହରଣ ଗୋପବନ୍ଧୁଙ୍କ ଠାରେ ଦେଖା ଯାଇଥିଲା । ସଂସାର ତ୍ୟାଗ କରି ବନ ଜଂଗଲରେ ନ ବୁଲି, ଫଳ ମୂଳ ଆହାର ନ କରି ମାନବ କପରି ସନ୍ନ୍ୟାସବ୍ରତ ଅବଲମ୍ବନ କରିପାରେ ତାହା ତାଙ୍କର ଦୈନନ୍ଦିନ କାର୍ଯ୍ୟ ଲିପିରୁ ଜଣା ଯାଏ । ପୋଷାକ ପରିଚ୍ଛଦରେ ତାଙ୍କର ଆଡମ୍ବର ନ ଥିଲା । ଈଶ୍ୱରୋପାସନା ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ଥିଲା । ରାଜନୀତି କ୍ଷେତ୍ରରେ ଥାଇ ମଧ୍ୟ ସେ କବିତା ରଚନା କରୁଥିଲେ । ତାଙ୍କ ପରି କବିତା ରଚନା କରିବା ଶକ୍ତି ଅତି ଅଳ୍ପ ଦେଖାଯାଏ । ମୋଟ ଉପରେ କହିବାକୁ ଗଲେ ଗୋପବନ୍ଧୁ ଏକାଧାରରେ କବି,ରାଜନୈତିକ ସନ୍ନ୍ୟାସୀ, ଗୃହସ୍ଥ, ଆଉ କ୍ଷେତ୍ରରେ ତାଙ୍କର ସରଳ ସଂଯତ ଜୀବନ ଯାପନରେ ଏବଂ ଦେଶସେବା, ସତ୍ୟନିଷ୍ଠା ଓ ପରୋପକାର ନୀତିପାଳନରେ ସମସ୍ତଙ୍କ ମୁଗ୍ଧ କରିଥିଲେ । ତାଙ୍କର ମହନୀୟ ତ୍ୟାଗ ନିକଟରେ ଶତ୍ରୁର ମସ୍ତକ ସୁଦ୍ଧା ଅବନତ ହେଉଥିଲା ।

ସେ ବର୍ତ୍ତମାନ ସଂସାରରୁ ବିଦାୟ ନେଇଅଛନ୍ତି; ତାଙ୍କର କଳେବର ବର୍ତ୍ତମାନ ଧୂଳିରେ ମିଶିଯାଇ ଅଛି । ଉତ୍କଳ ମାତାର ବକ୍ଷରେ ତାଙ୍କର ପ୍ରିୟ

ନିକୁଞ୍ଜ ବନରେ ସେ ବର୍ତ୍ତମାନ ଚିର ଆଶ୍ରୟ ଗ୍ରହଣ କରିଅଛନ୍ତି । ତାଙ୍କର ଆତ୍ମା ଉତ୍କଳର ଆକାଶରେ ଅଦ୍ୟାପି ବିରାଜିତ ରହିଅଛି । ସେ ପ୍ରାଣ ବର୍ତ୍ତମାନ ସୁଦ୍ଧା ଉତ୍କଳ ମାତାର 'ଖଣ୍ଡ ବିଖଣ୍ଡିତ' ଶରୀରର ପୂର୍ଣ୍ଣାଙ୍ଗ ଦର୍ଶନ ପାଇଁ ବ୍ୟାକୁଳ ନୟନରେ ଗୃହିଁ ରହିଅଛି । ସେ ଡାକୁଛନ୍ତି, ଆସ ଭାଇ-ମାନେ, ଆସ ବନ୍ଧୁମାନେ, ଆସ ପୁତ୍ରଗଣ, ଆସ ଶିଷ୍ୟଗଣ, ଆସ ଦେଶବାସିଗଣ, ଉତ୍କଳମାତାର କାତର କ୍ରନ୍ଦନ ଶ୍ରବଣକର । ମାତାର ଉଦ୍ଧାର ପାଇଁ ପଣକର :—

'ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖା ଯିବ
ଗିରିପଥେ ଲକ୍ଷ୍ୟ ରଖି ଗୃଲିବ ମୁକର ।



ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।

ଗୋପବନ୍ଧୁଙ୍କର କର୍ତ୍ତବ୍ୟନିଷ୍ଠା, ନିର୍ଭୀକତା, ପରଦୁଃଖକାତରତା ପାଇଁ ସେ ଯେ ଭାରତରେ ଚିରସ୍ମରଣୀୟ ହୋଇ ରହିବେ ଏହା କହିବା ବାହୁଲ୍ୟ ମାତ୍ର । ପୁରୀ, କଟକ, ବାଲେଶ୍ୱର ପ୍ରଭୃତିରେ ସେ ଯେଉଁମାନଙ୍କୁ ଜୀବଦାନ କରିଅଛନ୍ତି ସେମାନେ ଯେ ଗୋପବନ୍ଧୁଙ୍କୁ କି ପ୍ରକାରରେ ପାଶୋରିବେ ଜାଣି ହେଉ ନାହିଁ । ସେତିକି ନୁହେ ତାଙ୍କର ଚରିତ୍ରବଳରେ ସେ କିପରି ଉଚ୍ଚ ଆସନ ପାଇଥିଲେ ଏବଂ ତାଙ୍କ କର୍ମମୟ ଜୀବନରେ ସେ କିପରି ଭାରତରେ ପ୍ରତିଷ୍ଠା ଲାଭ କରିଥିଲେ, ତାହା ତାଙ୍କ ମୃତ୍ୟୁ ପରେ ଉତ୍ତମରୂପେ ପ୍ରକାଶ ପାଇଅଛି । ବମ୍ବେଇ ବିହାର, ପଞ୍ଜାବ, ମାନ୍ଦ୍ରାଜ ଓ ବଙ୍ଗଳା ପ୍ରଭୃତି ସମସ୍ତ ପ୍ରଦେଶମାନଙ୍କରେ ଗୋପବନ୍ଧୁଙ୍କ ମୃତ୍ୟୁରେ ଆଜ ଶୋକ ଉଚ୍ଛ୍ୱାସ ଉଠୁଅଛି । ସୁଦୂର ବ୍ରହ୍ମ ଦେଶରେ ମଧ୍ୟ ଗୋପବନ୍ଧୁଙ୍କ ପାଇଁ ଆଜ ଶୋକସଭାମାନ ହୋଇ ସ୍ମୃତିରକ୍ଷା ପାଇଁ ଗୃନ୍ଦା ସଂଗ୍ରହ କରାଯାଉଅଛି । ସରକାରୀ ବେସରକାରୀ ଭେଦ ଗୁଡ଼,

ନରମପନ୍ଥୀ ଗରମପନ୍ଥୀ ପାର୍ଥକ୍ୟ ଦୂରକୁ ପକାଇ ସମସ୍ତେ ଏକକଣ୍ଠ ଆଜି ଗୋପବନ୍ଧୁଙ୍କର ଗୁଣକୀର୍ତ୍ତନ କରି ତାଙ୍କର ଆତ୍ମାର ସଦ୍ଗତି ପାଇଁ ଜଗଦୀଶ୍ୱରଙ୍କଠାରେ ପ୍ରାର୍ଥନା କରୁ ଅଛନ୍ତି । ସମ୍ବାଦପତ୍ରମାନଙ୍କଠାରୁ ଆରମ୍ଭ କରି ସାହିତ୍ୟ ପତ୍ରିକାମାନଙ୍କ ପର୍ଯ୍ୟନ୍ତ ସର୍ବତ୍ର ତାଙ୍କର ଯଶୋଗାନ ହେଉଅଛି । 'ଗୋପବନ୍ଧୁ କୋଇଲି' 'ଉତ୍କଳ ମାତାର ଶୋକ' 'ଶ୍ମଶାନ ତୁଳସୀ' ପ୍ରଭୃତି ପୁସ୍ତକମାନ ମୁଦ୍ରିତ ହୋଇ ଗୋପବନ୍ଧୁଙ୍କର ମହିମା କୀର୍ତ୍ତନ କରୁଅଛି । ଜୀବିତାବସ୍ଥାରେ ଯେଉଁମାନେ ତାଙ୍କର ଗୁଣ ଗ୍ରହଣ କରିବାକୁ ଅସ୍ୱୀକାର କରୁଥିଲେ ସେମାନେ ଆଜି ଉତ୍କଳ ମାତା ସହିତ ସମସ୍ୱରରେ କ୍ରନ୍ଦନ କରୁଅଛନ୍ତି । ଦେଶବାସୀ ଗୋପବନ୍ଧୁଙ୍କ ମୃତ୍ୟୁରେ ଯେ କିପରି ବ୍ୟଥା ପାଇଛନ୍ତି ତାହା ନିମ୍ନଲିଖିତ ବିଶିଷ୍ଟ ଲେଖାମାନଙ୍କରୁ ଉତ୍ତମରୂପେ ଜଣାଯାଏ ।—

ସରଭିଆଣ୍ଟ ଖବର କାଗଜ – କଲିକତା । —

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦାରୁଣ ମୃତ୍ୟୁସମ୍ବାଦ ପାଇ ଦେଶର ପ୍ରକୃତ ମଙ୍ଗଳାକାଙ୍କ୍ଷୀ ମାତ୍ରକେ ସମସ୍ତେ ବ୍ୟସ୍ତ ହୋଇ ପଡ଼ିବେ । ଗୋପବନ୍ଧୁ ଦାସଙ୍କପରି ଖାଣ୍ଟି ଜାତୀୟ କର୍ମୀ ଓ ନେତାଙ୍କୁ ହରାଇ କେବଳ ଓଡ଼ିଶା ନୁହେଁ ,ସମଗ୍ର ଭାରତ ଓ ଭାରତୀୟ ଜାତୀୟ ଆନ୍ଦୋଳନ ସୁସ୍ପଷ୍ଟଭାବରେ ଅଭାବଗ୍ରସ୍ତ ହୋଇ ପଡ଼ିବ । ଓଡ଼ିଶାପକ୍ଷରେ ତାଙ୍କର ମୃତ୍ୟୁ ଏକ ଦାରୁଣ ଆଘାତ । ଓଡ଼ିଶାରେ ଜାତୀୟ ଆନ୍ଦୋଳନର ସେ ପ୍ରକୃତ ସୃଷ୍ଟିକର୍ତ୍ତା ଥିଲେ । କର୍ମ କରିବାର ପ୍ରକୃତି ତାଙ୍କର ଅସ୍ଥିମଜ୍ଜାଗତ ହୋଇଥିଲା ଏବଂ ସେ ଯାହା ପ୍ରଚାର କରୁଥିଲେ ନିଜ ଜୀବନରେ ତାହା ପାଳନ କରୁଥିଲେ । ତାଙ୍କର ଭାବଗତି ଓ ଚାଲିଚଳନରେ ପ୍ରକୃତ ସ୍ୱଦେଶୀଭାବ ପ୍ରତିଫଳିତ ହେଉଥିଲା । ସରଳତା ଓ କୃତ୍ରିମତାର ଅଭାବ ତାଙ୍କ ବ୍ୟବହାରରେ ଅତି ସୁସ୍ପଷ୍ଟଭାବରେ ପରିଲକ୍ଷିତ ହେଉଥିଲା । ଅସହଯୋଗ ଆରମ୍ଭହେବା ପୂର୍ବରୁ ମଧ୍ୟ ସେ ଗଠନମୂଳକ ଜାତୀୟ କାର୍ଯ୍ୟରେ ବ୍ୟାପୃତ ଥିଲେ ଏବଂ ସେ

ଆନ୍ଦୋଳନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ତାଙ୍କର ଭାବପ୍ରବଣ ଆତ୍ମା ସ୍ୱଭାବତଃ ତାହା ଗ୍ରହଣ କଲେ ଏବଂ ସେ ଅକୁଣ୍ଠିତ ଚିତ୍ତରେ ସେହି ତ୍ୟାଗ, ସାଧନା ଓ କ୍ଳେଶର ମାର୍ଗ ଆଲିଙ୍ଗନ କଲେ । ଜାତୀୟ ଶିକ୍ଷାପ୍ରତି ତାଙ୍କର ନିୟୋଗ, ଓଡ଼ିଶାରେ ବନ୍ୟା ଓ ଦୁର୍ଭିକ୍ଷ ହେଲାମାତ୍ରକେ ତାହାର ପ୍ରତୀକାର ଦିଗରେ ତାଙ୍କର ଏକାଗ୍ର ଚେଷ୍ଟା, ତାଙ୍କର ଅଗାଧ ଜାତୀୟତା ଓ ଶ୍ରମଜୀବୀ ସଂଗଠନ ପାଇଁ ପ୍ରବୃତ୍ତି ଏ ସମସ୍ତ ଓଡ଼ିଶାର ଯୁବକମାନଙ୍କ ହୃଦୟରେ ନୂତନ ଜୀବନ ଓ ଉନ୍ମାଦନା ଆଣି ଦେଇଥିଲା । ଆମ୍ଭମାନଙ୍କର ଆଶା, ଓଡ଼ିଶାର ଯୁବକମଣ୍ଡଳୀ ତାଙ୍କ ଅନୁସୃତ ମାର୍ଗରେ ଚାଲି ତାଙ୍କର ପ୍ରକୃତ ଅନୁଚର ହେବେ ଓ ତାଙ୍କର ପତାକା ଟେକି ଧରିବେ । ଶୋକ-ସନ୍ତପ୍ତ ପରିବାର ଓ ବନ୍ଧୁମାନଙ୍କ ସଙ୍ଗେ ଆମ୍ଭେମାନେ ସମବେଦନା ପ୍ରକାଶ କରୁଅଛୁଁ ।

ସର୍ଚ୍ଚଲାଇଟ ଖବର କାଗଜ—ବିହାର—

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ତିରୋଧାନର ସମ୍ବାଦ ଏ ପ୍ରଦେଶର ସର୍ବତ୍ର ଅତିଦୁଃଖର ସହିତ ପଢ଼ୁଥିବ । କାରଣ ଅନେକ ବର୍ଷ ଧରି ଏ ପ୍ରଦେଶରେ ସେ ତ୍ୟାଗ, ସାଧନା ଓ ସଂଯମର ଗୋଟିଏ ଜୀବନ୍ତ ମୂର୍ତ୍ତି ସ୍ୱରୂପ ଥିଲେ । ଓଡ଼ିଶା ତ ଭୟଙ୍କର ଭାବରେ ତାଙ୍କର ଅଭାବ ଅନୁଭବ କରିବ ଏବଂ ଏହି ପ୍ରଦେଶ ମଧ୍ୟ ତାଙ୍କପରି ଦେଶସେବୀଙ୍କୁ ହରାଇ ବିଶେଷ କ୍ଷତି ଅନୁଭବ କରିବ। ତାଙ୍କଠାରେ ପ୍ରଗାଢ ଦେଶ ପ୍ରୀତି ସଙ୍ଗେ ସଙ୍ଗେ ଅତି ଅଦ୍ଭୁତ ବିନୟଭାବ ଓ ସାଧୁ ହୃଦୟ ଥିଲା। ପଣ୍ଡିତଜି ତାଙ୍କର ସମସ୍ତ ଜୀବନ ପର ପାଇଁ କଟାଇ ଅଛନ୍ତି ଏବଂ କର୍ତ୍ତବ୍ୟ କରୁ କରୁ ସେ ନିଜର ପ୍ରାଣ ଦେଇଛନ୍ତି । ପୁରୀ ଦୁର୍ଭିକ୍ଷବେଳେ ସେ ଲୋକଙ୍କ ଦୁଃଖ ନିବାରଣ କରିବାପାଇଁ ସରକାରଙ୍କ ଉଦାସୀନତା ପଦେ ପଦେ ଅନୁଭବ କରିଥିଲେ ଏବଂ ସେହିଦିନୁଁ ସରକାରଙ୍କ ଶାସନନୀତି ପ୍ରତି ତାଙ୍କର ଘୋର ଅଶ୍ରଦ୍ଧା ଜନ୍ମିଲା । ସତ୍ୟବାଦୀଠାରେ ସେ ଯେଉଁ ଆଦର୍ଶ ବିଦ୍ୟାଳୟ କରିଥିଲେ ତାହା ସ୍ୱର୍ଗୀୟ

ଆଶୁତୋଷ ମୁଖର୍ଯୀଙ୍କପରି ମନୀଷୀମାନେ ପ୍ରଶଂସା କରିଅଛନ୍ତି । ବିହାର ବ୍ୟବସ୍ଥାପକ ସଭାର ସଭ୍ୟ ଥାଇ ସେ ଓଡ଼ିଶା ଲୁଣ ଗୋଲ୍ଲାନର ପୁନରୁଦ୍ଧାର ପାଇଁ ଏବଂ ପୁରୀ ଦୁର୍ଭିକ୍ଷରେ ସ୍ଥାନୀୟ ସରକାରୀ କର୍ମଚାରୀଙ୍କ ନିର୍ମମତା ପ୍ରମାଣ କରିବାକୁ ଯାଇ ଯେଉଁ ତେଜୋଗର୍ଭକ ବକ୍ତୃତା ଦେଇଥିଲେ ତାହା ଏବେ ସୁଦ୍ଧା ସ୍ପଷ୍ଟ ମନେ ପଡ଼ୁଅଛି । * * ରୋଗ ଶଯ୍ୟାରେ ପଡ଼ି ସେ 'ସର୍ଚ୍ଚଲାଇଟ' ଖବର କାଗଜକୁ ନିଜର ଆଶୀର୍ବାଦ ଦେଇଥିଲେ ତାହା ଆମ୍ଭମାନଙ୍କ ମନରେ ସର୍ବଦା ଜାଗରୂକ ରହିବ । ମରିବାବେଳେ ତାଙ୍କର ନିଜର ଯାହା କିଛିଥିଲା ତାହା ସେ ସାଧାରଣ କାର୍ଯ୍ୟପାଇଁ ଦାନ କରି ଯାଇଛନ୍ତି । ତାଙ୍କର ସ୍ମୃତିମନ୍ଦିର ସୁନାରେ ତିଆରି ହେଉ ବା ମାର୍ବଲ୍ ପଥରରେ ତିଆରି ହେଉ ତାହା କଦାପି ଚିରସ୍ଥାୟୀ ହେବନାହିଁ । ତାଙ୍କର କାର୍ଯ୍ୟ ଅନୁସରଣ କରିବାହିଁ ତାଙ୍କର ପ୍ରକୃତ ସ୍ମୃତିରକ୍ଷା ହେବ । ତାଙ୍କର ଆତ୍ମା ଶାନ୍ତିରେ ରହୁ !

ବିହାର ହେରାଲ୍ଡ—ବିହାର :—

ପଣ୍ଡିତ ଗୋପବନ୍ଧୁ ଦାସ ସାକ୍ଷୀ ଗୋପାଳଠାରେ ଗତ ଶନିବାର ନିଜ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ଜନହିତକର, ଦେଶହିତକର କାର୍ଯ୍ୟରେ ସେ ଜଣେ ନିଃସ୍ୱାର୍ଥପର କର୍ମୀଥିଲେ । ତାହାଙ୍କର ଜନ୍ମଭୂମି ଓଡ଼ିଶା ପ୍ରତି ଅଗାଧ ପ୍ରେମ ଥିଲା । ଗରିବ ଦୁଃଖୀ, କୁଲି ମଜୁରିଆଙ୍କ ସେବାରେ ନିଜକୁ ନିୟୋଜିତ କରିବା ଭଳି କର୍ମୀ ସେହି ଅସହାୟ ଦେଶରେ ଏକମାତ୍ର ଗୋପବନ୍ଧୁ ଥିଲେ । ପଣ୍ଡିତ ଗୋପବନ୍ଧୁ ପ୍ରଧାନତଃ ସମାଜକର୍ମୀ ଥିଲେ । ସେ ଧୀର, ସ୍ଥିର,ଶାନ୍ତ, ସୁନ୍ଦର ଭାବରେ ନିପୀଡ଼ିତ ମହା ମାନବର ସେବାରେ ନିଜକୁ ନିୟୋଜିତ କରୁଥିଲେ । ତାହାଙ୍କର ସେହି ପ୍ରିୟ ଆବାସ ସ୍କୁଲ ସତ୍ୟ-ବାଦୀ ଆଶ୍ରମରେ ଦେଶ ନିମନ୍ତେ ସରଳ ଭାବରେ ଦାରିଦ୍ର୍ୟକୁ ବରଣ କରି ସୁଦ୍ଧା ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବା ନିମନ୍ତେ କେତେ-ଗୁଡ଼ିଏ ଯୁବକଙ୍କୁ ସେ ଶିକ୍ଷା ଦେଇଥିଲେ । ସେ ପଞ୍ଜାବରେ ଲାଲାଲଜପତରାୟଙ୍କ

ପରି ଅସହାୟ ଗାଁ ଅନ୍ନକ୍ଲିଷ୍ଟ ଓଡ଼ିଶାବାସୀଙ୍କ ସେବାରେ ବ୍ୟାପୃତ ଥିଲେ । ଆନନ୍ଦର କଥା ଏହି ଦୁଇ ମହାତ୍ମାଙ୍କ ଏହି କେତେକ ଦିନ ହେଲା ଉଭୟ କାର୍ଯ୍ୟରେ ମିଳିତ ଚେଷ୍ଟା ହୋଇ ପାରିଥିଲା । ପଣ୍ଡିତ ଗୋପବନ୍ଧୁ ଦାସଙ୍କପରି ଜଣେ ଏ ଦେଶରେ କାହିଁକି ଯେ କୌଣସି ଦେଶରେ ସୁଦ୍ଧା ବିରଳ । ବର୍ତ୍ତମାନ ତାଙ୍କଦ୍ୱାରା ଅନୁଷ୍ଠିତ କାର୍ଯ୍ୟ ପରିଚାଳନା କରିବା ନିମନ୍ତେ ତାଙ୍କେ କର୍ମୀ ବା ଜଣେ କର୍ମୀ ସୁଦ୍ଧା ପାଇବା ବଡ଼ କଠିନ । ଶୋକସନ୍ତପ୍ତ ଜାତିର ସ୍ନେହ, ଭକ୍ତି, ଶ୍ରଦ୍ଧା, ସହାନୁଭୂତି ପାଇ ପଣ୍ଡିତ ମହାତ୍ମା ଗୋପବନ୍ଧୁ ଅମର ଧାମକୁ ଚାଲି ଯାଇଛନ୍ତି ।

ସିପୁଲ—ଲାହୋର :—

ଓଡ଼ିଶାର ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ବାସ୍ତବରେ ମନୁଷ୍ୟଙ୍କ ଭିତରେ ଗୋଟିଏ ହୀରା ଥିଲେ । ଖାଣ୍ଟି ମରହଟ୍ଟି ଧରଣର ଧର୍ମ ବିଶ୍ୱାସ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ତାଙ୍କର ଉନ୍ନତ ଚରିତ୍ର ଦ୍ୱାରା ସେ ପ୍ରମାଣିତ କରି ଯାଇଛନ୍ତି ଯେ ଜୀବନ୍ତ ଧର୍ମ ବିଶ୍ୱାସହିଁ ମନୁଷ୍ୟକୁ ସତ୍ ଏବଂ ମହତ୍ ସେବାରେ ସାହାଯ୍ୟ କରେ । ସାମ୍ପ୍ରଦାୟିକ ସଂକୀର୍ଣ୍ଣ ମତ ଅବଲମ୍ବନରେ ତାହା କଦାପି ସାଧିତ ହୋଇ ନ ପାରେ । ତାଙ୍କର ମୃତ୍ୟୁ ଶଯ୍ୟାରେ ଯେ ଯେଉଁ ଉଇଲ୍ ଡାକ ଦେଇ ଯାଇଛନ୍ତି ସେଥିରେ ସେ ତାଙ୍କର କୁଳ ଦେବତାଙ୍କର ସେବା ପୂଜାଦିର ପରିଚାଳନାର ବ୍ୟବସ୍ଥା କରି ଯାଇଛନ୍ତି । ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନ ଦ୍ୱାରାହିଁ ତାଙ୍କ ଜୀବନର ମହତ୍ତ୍ୱ ପରିସ୍ଫୁଟ ହୋଇଥିଲା । ଏଥିପୂର୍ବରୁ ମଧ୍ୟ ସେ ତାଙ୍କର ସମସ୍ତ ଶକ୍ତି ଏବଂ ଅର୍ଥ ଲୋକସେବାରେ ନିୟୋଜିତ କରୁଥିଲେ । ମାତ୍ର ଅସହଯୋଗ ଆନ୍ଦୋଳନ ସମୟଠାରୁ ସେ ତାଙ୍କର ଯଥାସର୍ବସ୍ୱ ଲୋକସେବାରେ ଉତ୍ସର୍ଗ କଲେ । ସେ ପ୍ରଥମେ ଓକିଲାତି ବ୍ୟବସାୟ କରୁଥିଲେ । ଏଥିରେ ଖୁବ୍ ନାମ କରିଥିଲେ ଏବଂ ବେଶ୍ ଟଙ୍କାପଇସା ରୋଜଗାର ମଧ୍ୟ କରୁଥିଲେ ।

ତାଙ୍କ ଦେହ, ଧନ, ବୁଦ୍ଧି, ଶକ୍ତି ଏବଂ ଆତ୍ମା ସମସ୍ତ ସେ ଲୋକସେବାରେ ଉତ୍ସର୍ଗ କରି ଯାଇଛନ୍ତି । କେବଳ ମହାତ୍ମାଗାନ୍ଧିଙ୍କୁ ଛାଡ଼ିଦେଲେ ଆଜି କୌଣସି

ଆଡ଼ମ୍ବରହୀନ ଭାବରେ ଦେଖାଯାଉଥିଲେ ମଧ୍ୟ ମୁଁ ଗୋପବନ୍ଧୁଙ୍କ ଭଳି ଏପରି ନିରାଡ଼ମ୍ବର ପରିଚ୍ଛଦରେ କଦାପି ଦେଖି ନାହିଁ । ହାତକଟା ଏବଂ ହାତବୁଣା ଖଣ୍ଡିଏ ଧୋତି ଓ ଖଣ୍ଡିଏ ଚାଦର ଛଡ଼ା ତାଙ୍କର ଆଉ କିଛି ଆବଶ୍ୟକ ହେଉ ନ ଥିଲା । ଘରେ ବାହାରେ, ଦଳ୍ପସମିତିରେ ବା ଆଇନ ଅଦାଲତରେ, ସ୍କୁଲରେ ବା କଂଗ୍ରେସ ଦରବାରରେ ସର୍ବଦା ତାଙ୍କର ଏହି ଏକମାତ୍ର ପୋଷାକ ଥିଲା । ତାଙ୍କର କଥା ଯାହା, କାର୍ଯ୍ୟରେ ସେଇଆ । ସେ ସାଧୁ, ସତ୍ୟବାଦୀ, ସରଳ, ନିଷ୍କପଟ ଏବଂ ନିରାଡ଼ମ୍ବର ଥିଲେ । ନିଜ ଦେଶବାସୀଙ୍କ ଉପରେ ତାଙ୍କର ପ୍ରଭାବ ଅସାଧାରଣ ଥିଲା । ସେ ଓଡ଼ିଆର ମୁକୁଟହୀନ ରଜା ଥିଲେ । ମୃତ୍ୟୁ ସମୟକୁ ସେ ଯୌବନ ଅତିକ୍ରମ କରିଥିଲେ ସତ୍ୟ ମାତ୍ର ବୃଦ୍ଧ ହୋଇ ଯାଇ ନ ଥିଲେ । ଯୁବକର ଅଦମ୍ୟ ଉତ୍ସାହରେ ସେ ସର୍ବଦା କଠିନ ଅଧ୍ୟବସାୟ ସହକାରେ କାର୍ଯ୍ୟରେ ଲାଗି ପଡ଼ୁଥିଲେ ଏବଂ ସର୍ବଦା ସକଳପ୍ରକାର ସଂଗ୍ରାମର ଅଗ୍ରଣୀ ଥିଲେ । ନିଜର ମତ ଉପରେ ତାଙ୍କର ଦୃଢ଼ ପ୍ରତ୍ୟୟ ଥିଲା । ତଥାପି ଯେଉଁମାନଙ୍କୁ ସେ ସ୍ନେହ ଏବଂ ବିଶ୍ୱାସ କରୁଥିଲେ, ସେପରି ଲୋକଙ୍କ ମତାମତ ଦ୍ୱାରା ପରିଚାଳିତ ହେବାକୁ ସେ ସର୍ବଦା ପ୍ରସ୍ତୁତ ଥିଲେ । + + + + ଏପରି ଜଣେ ପୁତ୍ର ହରାଇ ସାରାଦେଶ ଆଜି ବିଶେଷଭାବରେ ଦୀନ ଏବଂ କ୍ଷତିଗ୍ରସ୍ତ ହୋଇଅଛି ।

ସ୍ୱର୍ଗ ଉତ୍କଳ—କଟକ :—

ଦେଶରେ ଗୋପବନ୍ଧୁଙ୍କ କାର୍ଯ୍ୟ ଯେତେବେଳେ ଅତି ଆବଶ୍ୟକତା ହୋଇଥିଲା ଆମ୍ଭମାନଙ୍କ ଜାତୀୟ ଜୀବନର ସନ୍ଧି ସମୟରେ ତାଙ୍କର ଅକାଳ ବିୟୋଗ ଦ୍ୱାରା ଯେ ସ୍ଥାନ ଶୂନ୍ୟହେଲା ତାହା ପୂର୍ଣ୍ଣ ହେବାର ନୁହେ । ସରଳ, ନିରାଡମ୍ବର, ଦୟାଳୁ ଏବଂ ସହୃଦୟଭାବବିଶିଷ୍ଟ ଥାଇ ତାଙ୍କର ସ୍ତ୍ରୀ ବିୟୋଗ ପରେ ସେ ବିଶେଷଭାବରେ ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିଥିଲେ । ସଂଗତିସଂପନ୍ନ ଏକ ପରିବାରର ପୁତ୍ର ଥାଇ ସେ ଆଉଥରେ ବିବାହ କରି ପାରିଥାନ୍ତେ ମାତ୍ର ତାହା ନ କରି ଦେଶସେବାରେ ଦୁଃଖ

କଷ୍ଟକୁ ବରଣ କରିଥିଲେ । ତାଙ୍କର ହୃଦୟ ଅତି କୋମଳ ଥିଲା । ଦରିଦ୍ରର
ଦୁଃଖରେ ସେ ପ୍ରାଣ ତରଳି ଯାଉଥିଲା । ପୁରୀ ଦୁର୍ଭିକ୍ଷପୀଡ଼ିତ ଲୋକଙ୍କ
ଦୁଃଖ ନିରାକରଣାର୍ଥେ ସରକାର ଉଦାସୀନତା ଦେଖାଇଲାବେଳେ ତାହାର
କାଉନ୍ସିଲରେ ଗୋପବନ୍ଧୁଙ୍କ କାର୍ଯ୍ୟ ଆମ୍ଭମାନଙ୍କର ମନେ ଅଛି । ମହାମନା
ଗୋଖଲେଙ୍କ ଆଦର୍ଶ ଗୋପବନ୍ଧୁ କଲେଜ ଜୀବନରୁ ନିଜସମ୍ମୁଖରେ ରଖି-
ଥିଲେ । ଗୋଖଲେଙ୍କ ନେତୃତ୍ୱରେ ପରିଚାଳିତ ଫର୍ଗୁସନ କଲେଜ ପାଇଁ
ଯେତେବେଳେ ପରାଞ୍ଜପେ ଇଂଲଣ୍ଡରୁ ଫେରି ଜୀବନ ଉତ୍ସର୍ଗ କଲେ
ସେତେବେଳେ ପରିଷ୍କାର, ମନେଅଛି ଗୋପବନ୍ଧୁ କଟକରେ ଫର୍ଗୁସନ କଲେଜ
ଆଦର୍ଶରେ ଏକ କଲେଜ ସ୍ଥାପନକରିବେ ବୋଲି କହୁଥିଲେ । ଗ୍ରାମ୍ୟ ଜୀବନରେ
ମଧ୍ୟ ମାନବଜାତିର ଦୁଃଖରେ ତାଙ୍କହୃଦୟ ବିଗଳିତହେଉଥିଲା ।୧୯୦୮ ମସିହାର
କେନ୍ଦ୍ରାପଡ଼ା ଯାଜପୁର ବନ୍ୟା ସାହାଯ୍ୟବେଳେ ଗୋପବନ୍ଧୁ ସେବାକାର୍ଯ୍ୟ
କରିଥିଲେ । ସେତେବେଳେ ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କ ଶାସନରେ ଦୁର୍ଭିକ୍ଷ
ବୋଇଲେ ରାଜବିଦ୍ରୋହ ତହିଁର ଅର୍ଥ ଥିଲା । ଗୋପବନ୍ଧୁ ଉତ୍କଳ ସମ୍ମିଳନୀର
ଉତ୍କଳ ଆଲୋକ ଥିଲେ । ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠାନରେ ତାଙ୍କର ଦରିଦ୍ରପ୍ରତି
ନିଃସ୍ୱାର୍ଥପର ପ୍ରେମ ଓ ଏକନିଷ୍ଠତା ଦେଖି ଅନ୍ୟାନ୍ୟମାନେ ସେଠାକୁ
ଆକୃଷ୍ଟ ହୋଇଥିଲେ । ଗୋପବନ୍ଧୁ ପଲ୍ଲୀରେ କାର୍ଯ୍ୟ କରିବାକୁ ଭଲ ପାଉ
ଥିଲେ । କାଉନ୍ସିଲରେ ସେ ଯଥେଷ୍ଟ କୃତିତ୍ୱ ଦେଖାଇଥିଲେ । ଦୁର୍ଭିକ୍ଷଗ୍ରସ୍ତ
ଲୋକଙ୍କ ପାଇଁ ସେ ଯେପରି ନିର୍ଭୀକଭାବରେ ଓ ଦକ୍ଷତାର ସହିତ କାର୍ଯ୍ୟକରି
ଥିଲେ ତହିଁରେ ସାର୍ ଏଡ଼ୱାର୍ଡ ଗେଟଙ୍କ ସରକାର ଦାବାରେ ପଡ଼ି ଯାଇଥିଲେ
ଏବଂ ଭାରତର ସବୁଆଡ଼ୁ ଅନେକ ଅର୍ଥ ସାହାଯ୍ୟ ମିଳିଥିଲା ଏବଂ ମହାତ୍ମାଜୀଙ୍କ
ପ୍ରେରିତ ଅମୃତ ଲାଲ ଠକ୍କରଙ୍କ ଭଳି କର୍ମୀ ଓଡ଼ିଶାକୁ ଆସି ଦୁର୍ଭିକ୍ଷ
ଅଞ୍ଚଳରେ କାର୍ଯ୍ୟ କରିଥିଲେ । ଗୋପବନ୍ଧୁ ବୁଝି ବିଚାରି ଅସହଯୋଗ
ଆନ୍ଦୋଳନରେ ପଶିଥିଲେ । ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ନେତା
ଥାଇ ସେ ସରକାରଙ୍କ ଦମନନୀତି ସହ୍ୟକରି ଦୁଇବର୍ଷ ଜେଲ ଯାଇଥିଲେ ।
ତାଙ୍କ ପ୍ରତିଷ୍ଠିତ 'ସମାଜ' କାଗଜର ବହୁଳ ଯଶ ସବୁଆଡ଼େ ଶୁଣାଗଲା ।
ଗୋପବନ୍ଧୁଙ୍କୁ ହରାଇ ଉତ୍କଳ ମାତା ଏକ ନିଷ୍ଠାପର କର୍ମୀ ଏକ ନିଃସ୍ୱାର୍ଥ-

ପର ଦେଶସେବକ ହରାଇ ଅଛୁ । ଉତ୍କଳ ଚିରଦିନ ଏ ବିଚ୍ଛେଦ ଅନୁଭବ କରିବ ।

ଅମୃତ ବଜାର ପତ୍ରିକା—କଲିକତା :— ୮

ଦେଶବନ୍ଧୁ ଦାସ ବଙ୍ଗଳାର ଯେପରି ଥିଲେ ଗୋପବନ୍ଧୁ ଦାସ ଓଡ଼ିଶାର ସେହିପରି ଥିଲେ । ଦେଶବନ୍ଧୁ ଦାସଙ୍କ ବିୟୋଗରେ ବଙ୍ଗଳାର ଯେ କ୍ଷତି ହୋଇଥିଲା ତାହାଠାରୁ ଅଧିକ କ୍ଷତି ଗୋପବନ୍ଧୁଙ୍କ ମୃତ୍ୟୁରେ ଓଡ଼ିଶାର ହେଲା । କାରଣ ବଙ୍ଗଦେଶ ଅପେକ୍ଷା ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଅଧିକତର ଅଭାବ । ଗୋପବନ୍ଧୁ ଉତ୍କଳରେ ଜାତୀୟତାର ଜନ୍ମଦାତା ଓ ପ୍ରତିଷ୍ଠାତା ଥିଲେ । ସାକ୍ଷୀ ଗୋପାଳସ୍ଥ ତାଙ୍କର ସତ୍ୟବାଦୀ ଆଶ୍ରମରେ ତାଙ୍କ ଅଧୀନରେ ଦଳେ କର୍ମୀ ଶିକ୍ଷା ପାଉଥିଲେ ଏବଂ ତାଙ୍କର ନିଦେଶରେ ଦେଶସେବା ଓ ମାନବସେବା କରିବାପାଇଁ ଯେ କୌଣସି ସ୍ଥାନକୁ ତାଙ୍କ ସଙ୍ଗରେ ଯିବା ପାଇଁ ପ୍ରସ୍ତୁତ ଥିଲେ । ଦୁର୍ଭିକ୍ଷ ହେଉ, ବନ୍ୟା ହେଉ ବା ଯେ କୌଣସି ଦୁରବସ୍ଥା ହେଉ ସର୍ବଦା ଦେଶର ଆହ୍ୱାନ ବେଳେ ଦରିଦ୍ର ଓଡ଼ିଶା ଗୋଟିଏ ବନ୍ଧୁ ପାଇଥିଲା । ସେ ସବୁରୂପେ ପୂର୍ଣ୍ଣ–ମାତ୍ରାରେ ଦେଶମାତାର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ଶେଷ ଥର ଅସୁସ୍ଥତାରୁ ସେ ରକ୍ଷା ପାଇନଥିଲେ । ପୁଣି ତାଙ୍କର ସ୍ୱଭାବସିଦ୍ଧ ତେଜର ସହିତ କାମରେ ଲାଗିଗଲେ । ସ୍ତୁପ ଏତେ ଅଧିକ ହେଲା ଯେ ସେ ଭଗ୍ନସ୍ୱାସ୍ଥ୍ୟ ଆଉ ସହି ପାରିଲା ନାହିଁ । ଶେଷକୁ ଗୋପବନ୍ଧୁ ପରଲୋକ ହେଲେ । ସେ ସତ୍ୟପାଇଁ ମୃତ୍ୟୁକୁ ଆଲିଙ୍ଗନ କଲେ ।

ଦରିଦ୍ରମାନଙ୍କ ମଧ୍ୟରେ ଗୋପବନ୍ଧୁ ନିଜକୁ ଯେପରି ସଂପୂର୍ଣ୍ଣରୂପେ ପରିଚୟ ଦେଇଥିଲେ ସେଥିପାଇଁ ଦେଶବାସୀ ତାଙ୍କ ନିକଟରେ ଚିରକୃତଜ୍ଞ । କେବଳ ଉତ୍କଳରେ ନୁହେଁ, ଦୂର ବିଦେଶରେ ଦରିଦ୍ର ଉତ୍କଳୀୟମାନଙ୍କ ପାଇଁ ତାଙ୍କ ପ୍ରାଣ ଉଦବେଳିତ ହେଉଥିଲା । ଲୋକ ବାଉରେ ଓଡ଼ିଆମାନେ

ଭାରତର ଅନ୍ୟାନ୍ୟ ଅଂଶରେ ସାମାନ୍ୟ ବୃତ୍ତିପାଇଁ ଘର ଛାଡ଼ି ଚାଲି-ଯାଇଛନ୍ତି । ଗୋପବନ୍ଧୁ ଏହି ଶ୍ରମଜୀବୀମାନଙ୍କର ହିତାର୍ଥେ କଲିକତାରେ ଏକ ଓଡ଼ିଆ ଶ୍ରମିକ ସଂଘ ସ୍ଥାପନ କରିଥିଲେ । ଏହି ସଂପର୍କରେ ସେ ବହୁବାର କଲିକତା ଆସିଥିଲେ । ତାଙ୍କର ଅନ୍ୟାନ୍ୟ ନାନାପ୍ରକାର କାର୍ଯ୍ୟ ନ ଥିଲେ, ସେ ଏହାକୁ ଏକ ଶକ୍ତିଶାଳୀ ଅନୁଷ୍ଠାନରେ ପରିଣତ କରିଥାନ୍ତେ ।

ଭାରତର ଯେ କୌଣସି ନେତାଙ୍କ କାର୍ଯ୍ୟ ଅପେକ୍ଷା ଗୋପବନ୍ଧୁଙ୍କ କାର୍ଯ୍ୟ ଅଧିକତର କଠିନ ଥିଲା । କାରଣ ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଶିକ୍ଷା ବିଷୟରେ ପଶ୍ଚାତ୍‌ପଦ ଏପରି ଲୋକଙ୍କ ସହିତ ତାଙ୍କୁ କାର୍ଯ୍ୟ କରିବାକୁ ହେଉଥିଲା । ତାଙ୍କର କାର୍ଯ୍ୟ ଅତିଶୟ କଷ୍ଟକର ଥିଲା । ତାଙ୍କର ପ୍ରକାଣ୍ଡ ହୃଦୟ ଏଥିରେ ନିରୋତ୍ସାହ ହୋଇ ନ ଥିଲା । ତାଙ୍କର ବିଶ୍ୱାସ ଥିଲା ସେ ଯାହା କରୁଥିଲେ ମଙ୍ଗଳ ନିମନ୍ତେ କରୁଥିଲେ । ଗୋପବନ୍ଧୁ ତାଙ୍କ ଜୀବନରେ ଗୀତାର "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ" ଏହି ଉକ୍ତିର ସାର୍ଥକତା ହୃଦୟଙ୍ଗମ କରିଥିଲେ । ସମଗ୍ର ଭାରତବର୍ଷରେ ଅଧିକତମ ଦରିଦ୍ର ଓ ଜ୍ଞାନ-ଶୂନ୍ୟ ଲୋକଙ୍କ ମଧ୍ୟରେ ପୁରସ୍କାର ବା ପ୍ରଶଂସାର ଆଶା ନ ରଖି ସେ ଅନବରତ କାର୍ଯ୍ୟ କରୁଥିଲେ । ଉପସ୍ଥିତ ମୁହୂର୍ତ୍ତରେ ଓଡ଼ିଶାରେ ଯେ ସାଧାରଣ ଜୀବନ ବା ଜାଗରଣ ଆସିଛି ତାହା କେବଳ ଗୋଟିଏ ଲୋକର ଚେଷ୍ଟାର ଫଳ, ଗୋପବନ୍ଧୁ ଦାସଙ୍କ ଚେଷ୍ଟାର ଫଳ ।

ଗୋପବନ୍ଧୁଙ୍କୁ ହରାଇ ଦରିଦ୍ର ଓଡ଼ିଶା ତାହାର ପ୍ରାଣ ଓ ଆତ୍ମା ହରାଇଛି । କିନ୍ତୁ ଏ କ୍ଷତି ଭାରତ ପ୍ରତି କମ କଷ୍ଟଦାୟକ କି ? ଭାରତ ଏକ ଉତ୍କୃଷ୍ଟ ନିଷ୍ଠାପର ନିଃସ୍ୱାର୍ଥପର ପ୍ରକୃତ କର୍ମୀ ହରାଇଅଛି । ତାହାର ନିଷ୍ଠାପର ଦେଶସେବକଙ୍କମଧ୍ୟରେ ଗୋପବନ୍ଧୁଙ୍କ ସ୍ଥାନ ସହଜରେ ପୂରଣ ହେବ ନାହିଁ ।

  

ୟଙ୍ଗଇଣ୍ଡିଆ—ଅହମଦାବାଦ :—

ମହାତ୍ମା ଗାନ୍ଧି ଲେଖିଛନ୍ତି:—ଏକ ପୁଣ୍ୟାତ୍ମା ଚାଲିଗଲେ । ମୁଁ ୟଙ୍ଗ-ଇଣ୍ଡିଆ ପାଇଁ ଲେଖୁଥିଲାବେଳେ ଦୁଃଖ ଓ ଜନ୍ଦନର ଆବାସଭୂମି ଓଡ଼ିଶାର ଶ୍ରେଷ୍ଠ ସତ୍‌ପୁତ୍ର ପଣ୍ଡିତ ଗୋପବନ୍ଧୁ ଦାସଙ୍କର ସାକ୍ଷିଗୋପାଳଠାରେ ପରଲୋକ ସମ୍ବାଦ ନୀଳକଣ୍ଠ ବାବୁଙ୍କଠାରୁ ତାର ଦ୍ୱାରା ଜାଣିଲି । ଗୋପବନ୍ଧୁ ଓଡ଼ିଶାପାଇଁ ତାଙ୍କର ସର୍ବସ୍ୱ ଦେଇଥିଲେ । ମୁଁ ତାଙ୍କ ସମ୍ବନ୍ଧରେ ଓ ତାଙ୍କର ପ୍ରକୃତ ଚରିତ୍ର ଓ କର୍ମନିଷ୍ଠତା ସଂପର୍କରେ ୧୯୧୭ ମସିହାରେ ଓଡ଼ିଶାର ଦୁର୍ଭିକ୍ଷପୀଡ଼ିତ ଅଂଚଳରେ ଶ୍ରୀଯୁକ୍ତ ଅମୃତଲାଲଠକର ସାହାଯ୍ୟ ବିତରଣ କାର୍ଯ୍ୟ କଲାବେଳେ ଶୁଣିଥିଲି । ନିରନ୍ନଲୋକଙ୍କୁ ସାହାଯ୍ୟ ଦେବାଲାଗି ଗୋପବନ୍ଧୁ କେତେ ଅଭାବ ଅସୁବିଧା ଦୁଃଖ କଷ୍ଟ ଭୋଗୁଥିଲେ ତାହା ଶ୍ରୀଯୁକ୍ତ ଠକର ମୋତେ ବରାବର ଲେଖୁଥିଲେ । ଉତ୍କଳରେ ସେ ବନ୍ଧୁ ଆଗରୁ ଶୁଣୁଥିଲେ ଏବଂ ଅସହଯୋଗ ଆନ୍ଦୋଳନବେଳେ କାଉନ୍‌ସିଲ୍ ଛାଡ଼ିଥିଲେ । ସେ କେବେହେଁ ଏ ପାଖ ସେ ପାଖ ହୋଇ ନ ଥିଲେ । ଏହି ଆନ୍ଦୋଳନରେ ପଡ଼ି ତାଙ୍କୁ ତାଙ୍କ ପ୍ରିୟତମ ସୃଷ୍ଟି ସତ୍ୟବାଦୀ ବିଦ୍ୟାଳୟକୁ ମଧ୍ୟ ଉତ୍ସର୍ଗ କରିବାକୁ ପଡ଼ିଥିଲା । ସେଥିପାଇଁ ସେ ତାଙ୍କର ଘନିଷ୍ଠ ବନ୍ଧୁମାନଙ୍କଠାରୁ ନାନାପ୍ରକାର କଟୂକ୍ତି ସହିଥିଲେ ଏବଂ ଏହା ତାଙ୍କ ମନର ଦୁର୍ବଳତା ବୋଲି ବନ୍ଧୁମାନେ ବିଚାରିଲେ ସୁଦ୍ଧା ଗୋପବନ୍ଧୁ ସେହି ମତକୁ ବଜାୟ ରଖି ଶେଷ ପର୍ଯ୍ୟନ୍ତ ଦୃଢ଼ଭାବରେ ବନ୍ଧୁମାନଙ୍କ ହୋଇଥିଲେ । ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ ଏକତ୍ରିତ ଓ ସୁଖସଂପନ୍ନ ଦେଖିବାପାଇଁ ତାଙ୍କର ଏକ ଅଭିଳାଷ ଥିଲା । ସେ ନିକଟରେ ଲାଲା ଲଜପତ୍ ରାୟଙ୍କ ସମାଜର ଜଣେ ସଭ୍ୟ ହୋଇଥିଲେ ଏବଂ ଖାଦିଦ୍ୱାରା ବନ୍ୟାପୀଡ଼ିତ ଓଡ଼ିଶାର ଦାରିଦ୍ର୍ୟ କପରି ଘୁଞ୍ଚିବ ତହିଁର ଉପାୟ ବାହାରୁଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁରେ ଦେଶ ଅଧିକତର ଦରିଦ୍ର ହେଲା । ସେ ଆମ୍ଭମାନଙ୍କ ମଧ୍ୟରେ ଜୀବଦଶାରେ ନ ଥିଲେ ମଧ୍ୟ ତାଙ୍କର ଆତ୍ମା ଆମ୍ଭମାନଙ୍କ ମଧ୍ୟରେ ଅଛି । ସେହି ପୁଣ୍ୟାତ୍ମା ଓଡ଼ିଶାର କର୍ମୀମାନଙ୍କର ପଥ ପ୍ରଦର୍ଶକ ହେଉ । ତାଂକର ମୃତ୍ୟୁ-

ଫଳରେ ମୁଷ୍ଟିମେୟ ବିଚ୍ଛିନ୍ନ ଜାତୀୟ କର୍ମୀମାନଙ୍କ ମଧ୍ୟରେ ଅଧିକତର ଏକତା, ଅଧିକତର ଚେଷ୍ଟା ହେଉ ଏବଂ କର୍ମୀମାନେ ଅଧିକତର ସ୍ୱାର୍ଥ ଗୋପନ କରି କର୍ମରେ ବିଶେଷପରିମାଣରେ ଆତ୍ମନିୟୋଗ କରନ୍ତୁ । ଏହି ସ୍ୱର୍ଗୀୟ ସ୍ୱଦେଶ-ପ୍ରେମିକଙ୍କର ଆତ୍ମୀୟ ସ୍ୱଜନ ଓ ଶିଷ୍ୟବର୍ଗଙ୍କୁ ମୋର ଶୋକ ଜଣାଉଅଛି ।

ହିନ୍ଦୁ—ମାନ୍ଦ୍ରାଜ :—

ଯାହାଙ୍କର ମୃତ୍ୟୁ ଆଜ କଲିକତା ସମ୍ବାଦରେ ପ୍ରଚାରିତ ହୋଇଅଛି ସେହି ପଣ୍ଡିତ ଗୋପବନ୍ଧୁ ଦାସ ଜଣେ ପ୍ରସିଦ୍ଧ ଓଡ଼ିଆ ନେତା ଥିଲେ । ସେ ତାଙ୍କର ଜୀବନବ୍ୟାପୀ ନିସ୍ୱାର୍ଥପର ଦେଶସେବାରେ ଲୋକଙ୍କର ପ୍ରିୟପାତ୍ର ହୋଇଥିଲେ । ତାଙ୍କ ଅନୁନ୍ନତ ପ୍ରଦେଶର ଅନୁନ୍ନତ ଦେଶବାସୀଙ୍କ ଜାଗରଣ ପାଇଁ କୌଣସି ଅର୍ଥ ବ୍ୟୟକୁ ସେ ଅତି ମୂଲ୍ୟବାନ୍ ଏବଂ କୌଣସି ପରିଶ୍ରମକୁ ସେ ଅତି କଷ୍ଟକରବୋଲି ମଣୁନଥିଲେ । ମହାତ୍ମାଗାନ୍ଧିଙ୍କ ଖଦଡ଼ଆନ୍ଦୋ-ଳନରେ ପଣ୍ଡିତ ଗୋପବନ୍ଧୁ ଦାସ ନିଜର ଜୀବନ ଢ଼ାଳି ଦେଇଥିଲେ ଏବଂ ମହାତ୍ମାଜୀଙ୍କର ବିଶ୍ୱସ୍ତ ପ୍ରତିନିଧି ଥିଲେ । ତାଙ୍କ ମୃତ୍ୟୁରେ ଓଡ଼ିଶା ଏକ ଅମୂଲ୍ୟ କର୍ମୀ ଓ ଏକ ମାନବ ପ୍ରେମିକ ହରାଇ ଅଛି ଏବଂ ଦେଶ ଗୋଟିଏ ନୈଷ୍ଠିକ ଦେଶସେବକ ଓ ଦେଶପ୍ରେମିକ ହରାଇଅଛି ।

ସ୍ୱରାଜ୍ୟ—ମାନ୍ଦ୍ରାଜ :—

ଗୋପବନ୍ଧୁ ଦାସଙ୍କ ମୃତ୍ୟୁରେ ଓଡ଼ିଶା ସମ୍ଭବତଃ ତାର ପ୍ରଧାନ ସାମାଜିକ ଓ ରାଜନୈତିକ କର୍ମୀ ହରାଇ ଅଛି । ତାଙ୍କର ନାମ ସେହି ଅତି ଦୁଃଖ ବିଜଡ଼ିତ ଦୁର୍ଭିକ୍ଷକ୍ଲିଷ୍ଟ ପ୍ରଦେଶର ପ୍ରତି ଗୃହରେ ପ୍ରଚାରିତ । ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ପଣ୍ଡିତ ଗୋପବନ୍ଧୁ ଯୋଗ ଦେଇ-ଥିଲେ । ଏବଂ ସେହିଦିନଠାରୁ ସେ ଖଦି କାମରେ ସର୍ବଦା ପରିଶ୍ରମ କରୁଥିଲେ । ଓଡ଼ିଶା ଦୁର୍ଭିକ୍ଷ ଓ ଅଭାବର ଘର । ଏହି ବ୍ୟାଧି ଓ ଅଭାବ ଗ୍ରସ୍ତ ଲୋକଙ୍କୁ ଆନନ୍ଦ ଦେବାପାଇଁ ଓ ସେମାନଙ୍କୁ ବଂଚାଇବା ପାଇଁ ପଣ୍ଡିତ

ଗୋପବନ୍ଧୁ ଥିଲେ । ତେଣୁ ସାଧାରଣ ବହୁ ସଂଖ୍ୟକ ଲୋକ ଗୋପବନ୍ଧୁଙ୍କ ମୃତ୍ୟୁରେ ବ୍ୟକ୍ତିଗତଭାବରେ ବନ୍ଧୁଚ୍ୟୁତ ହେଲେ ବୋଲି ମଣିବେ । ଏ ଆଘାତରେ ଓଡ଼ିଶାର ଯେ କ୍ଷତି ହେଲା ତାହା ପୂରଣ ହେବାକୁ ବହୁ ଦିନ ଲାଗିବ ।

ଷ୍ଟେଟ୍ସ୍‌ମ୍ୟାନ—କଲିକତା ;—

କଟକର ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମୃତ୍ୟୁରେ ଓଡ଼ିଶା ଗୋଟିଏ ପ୍ରକୃତ ସାମାଜିକ କର୍ମୀ ହରାଇ ଅଛି । ସେ କଂଗ୍ରେସ ଦଳର ରାଜନୈତିକ ଥିଲେ ଏବଂ ତାଙ୍କ ସହିତ ଅନେକଙ୍କର ମତାନ୍ତର ଥିଲା କିନ୍ତୁ ତାଙ୍କର ବିବିଧ ସାମାଜିକ ଅନୁଷ୍ଠାନରେ କେହି ଶତ୍ରୁତା ଆଚରଣ କରୁ ନ ଥିଲେ । ପଣ୍ଡିତ ଜଣେ ସଂଗତିସମ୍ପନ୍ନ ମଧ୍ୟମ ଶ୍ରେଣୀର ଭଦ୍ରବ୍ୟକ୍ତି ଥିଲେ ଗାନ୍ଧିଙ୍କର ବିଶ୍ୱସ୍ତ ଶିଷ୍ୟ ଥିଲେ ଏବଂ ଏକ ତପସ୍ୱୀର ଜୀବନ ଆଚରଣ କରିଥିଲେ । ତାହାଙ୍କର ଯାହା ଥିଲା ଗୋଟିଏ ଟ୍ରଷ୍ଟି ହସ୍ତରେ ଦେଇଯାଇ ଅଛନ୍ତି । ସେମାନେ ତଦ୍ୱାରା ଓଡ଼ିଶାଲୋକଙ୍କର ସାମାଜିକ ଓ ନୈତିକ ଉନ୍ନତି ନିମନ୍ତେ କାର୍ଯ୍ୟ କରିବେ । ଲାଲା ଲଜପତ୍ ରାୟଙ୍କ ପ୍ରତିଷ୍ଠିତ 'ଲୋକ ସେବକ ସମାଜ'ର ସେ ଏକ ସଭ୍ୟ ଥିଲେ ଏବଂ ନିକଟରେ ସେ ଉକ୍ତ ସମାଜର ଜଣେ ସହକାରୀ ସଭାପତି ନିର୍ବାଚିତ ହୋଇଥିଲେ ।

ଲାଲା ଲଜପତ୍ ରାୟ :—

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମୃତ୍ୟୁରେ କେବଳ ଓଡ଼ିଶାର ନୁହେଁ ସମଗ୍ର ଭାରତର ସାଧାରଣ ଜୀବନରେ ଗୋଟିଏ ସ୍ଥାନ ଶୂନ୍ୟ ହୋଇଗଲା । ସେ ଶୂନ୍ୟ ସ୍ଥାନ ପୂରଣ ହେବା ଅସମ୍ଭବ । ଗୋପବନ୍ଧୁଙ୍କ ପରି ବେଶି ସରଳ ଓ ଦେଶ କାର୍ଯ୍ୟରେ ବେଶି ନିଷ୍ଠାବାନ୍ ସାଧାରଣ କର୍ମୀ ଭାରତ ପାଇପାରିବ ନାହିଁ । ଦେଶଲୋକଙ୍କ ଚିନ୍ତା ଛଡ଼ା ତାଙ୍କ ନିଜପାଇଁ କିମ୍ବା ଜ୍ଞାତି କୁଟୁମ୍ବ ପାଇଁ ଗୋପବନ୍ଧୁ କେବେ ଚିନ୍ତା କରୁନଥିଲେ । ମାନବ

ସମାଜର ହିତାର୍ଥେ ଉତ୍ସୃଷ୍ଟ ଜୀବନ ଏତେ ଦୂର ସରଳ ଓ ଆଡ଼ମ୍ବରଶୂନ୍ୟ ଆଜି କାହାର ହୋଇ ନପାରେ ।

ତାଙ୍କସଙ୍ଗେ ସାକ୍ଷାତ ହେଲା ଦିନ ଠାରୁ ତାଙ୍କ ସଙ୍ଗେ ମୋର ପ୍ରଣୟ ହେଲା ଏବଂ 'ଲୋକସେବକ ସମିତି'ର ସଭ୍ୟ ହେବା ସକାଶେ ତାଙ୍କର ସ୍ୱୀକୃତି ପାଇ ମୁଁ ବଡ଼ ଗର୍ବ ଅନୁଭବ କଲି । ଲୋକସେବକ ସମିତର ଗତ ବାର୍ଷିକ ଅଧିବେଶନରେ ତାଙ୍କୁ ଉତ୍କଳର ସଦସ୍ୟ ସଭାପତି କରାଯାଇଥିଲା । ତାଙ୍କ ଅଭାବ ଏକ ଜାତୀୟ ଅଭାବ ଛଡ଼ା ମୋ ପକ୍ଷରେ ବ୍ୟକ୍ତିଗତ ଅଭାବ ଏବଂ ମୁଁ ଯେଉଁ ସୋସାଇଟିର ସଭାପତି ସେହି ସୋସାଇଟି ପକ୍ଷରେ ମଧ୍ୟ ବିଶେଷ ଅଭାବ । ପ୍ରକୃତ ଜଣେ ଦେଶ ସେବକ ରୂପେ ସେ ବହୁ ଦିନ ଓଡ଼ିଶାରେ ମନେ ପଡ଼ିବେ କିନ୍ତୁ ଆମ୍ଭ ଲୋକସେବକ ସମିତି ପକ୍ଷରେ ତାଙ୍କ ଅଭାବ ଅପୂରଣୀୟ । ଆମ୍ଭ ସମାଜ ତରଫରୁ ସେ ଯେଉଁ କାର୍ଯ୍ୟ କରୁଥିଲେ ତାହା ନଷ୍ଟପ୍ରାୟ ବନ୍ଦ ନ ହୋଇ ଚାଲିବ କିନ୍ତୁ କି ଉପାୟରେ ହେବ ତାହା ବର୍ତ୍ତମାନ ଆମକୁ ସ୍ଥିର କରିବାକୁ ହେବ । ଲୋକସେବକ ସମିତି ଆଦି ତାଙ୍କପରି ଜଣେ ନେତାର ଗୁଣ ଗ୍ରହଣ କଲା ବେଳକୁ ଏବଂ ତାଙ୍କୁ ପୂଜା କରିବାକୁ ଶିଖିଲା ବେଳକୁ ତାଙ୍କୁ ହରାଇ ବସିଅଛୁ ।

ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବୋଷ :—

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦାରୁଣ ଓ ଅପ୍ରତ୍ୟାଶିତ ମୃତ୍ୟୁରେ ଓଡ଼ିଶାରେ ଯେ କି ଭୟଙ୍କର କ୍ଷତି ହେଲା ତାହା ଓଡ଼ିଶାର ଲୋକେ କେବଳ ଅନୁଭବ କରି ପାରିବେ । ଓଡ଼ିଶା ଯେ କେବଳ ଆର୍ଥିକ ଅବସ୍ଥାରେ ହୀନ ତାହା ନୁହେଁ, କର୍ମୀ ହିସାବରେ ମଧ୍ୟ ଓଡ଼ିଶା ବଡ଼ ହୀନ । ତେଣୁ ଗୋପବନ୍ଧୁଙ୍କ ମୃତ୍ୟୁରେ ଓଡ଼ିଶା ଉପରେ ଯେଉଁ ବଜ୍ରପାତ ହେଲା ସେଥିରୁ ଅବ୍ୟାହତି ପାଇବା ଭୟଙ୍କର କଷ୍ଟଦାୟକ ହେବ ।

ପଣ୍ଡିତ ଗୋପବନ୍ଧୁହିଁ ପ୍ରକୃତରେ ଓଡ଼ିଶାର ଜାତୀୟ ଆନ୍ଦୋ-

ଜନର ସୃଷ୍ଟି କରି। ଜାତୀୟ ଜାଗରଣ ଅବଶ୍ୟ ମିଷ୍ଟର ମଧୁସୂଦନ ଦାସଙ୍କ ଠାରୁ ଆରମ୍ଭ ହେଲା । କିନ୍ତୁ ମଧୁବାବୁ ଅନେକ ପରିମାଣରେ ପାଶ୍ଚାତ୍ୟଭାବ ଓ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ଥିଲେ । ପଶ୍ଚାତ୍ତରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ରୁଚି ଓ ଦୃଷ୍ଟି ପୂର୍ଣ୍ଣଭାବରେ ଜାତୀୟ ଥିଲା । ସରଳ ଭାବରେ ଚଳିବା ଓ ଉଚ୍ଚ ମହତ୍ ଚିନ୍ତା କରିବା ଏହି ଆଦର୍ଶ ସେ ଜୀବନରେ ପାଳନ କରୁଥିଲେ । ଜୀବନର ସର୍ବୋତ୍କୃଷ୍ଟ ସମସ୍ତ ସେ ଦୀନ ଦରିଦ୍ରମାନଙ୍କ ମଧ୍ୟରେ ସାକ୍ଷିଗୋପାଳର ନିଭୃତ ନିକୁଞ୍ଜରେ କଟାଇଥିଲେ । ସେଠାରେ କର୍ମ ଓ ଧର୍ମର ସରଳ ଓ ଶୁଦ୍ଧ ଜୀବନ ଯାପନ କରୁଥିଲେ । ଅସହଯୋଗର ବହୁ ପୂର୍ବରୁ ସେ ସାକ୍ଷିଗୋପାଳରେ ଏକ ବିଦ୍ୟାଳୟ ଆରମ୍ଭ କରିଥିଲେ । ଏହି ବିଦ୍ୟାଳୟ ଜାତୀୟ ଧରଣରେ ସ୍ଥାପିତ ହୋଇଥିଲା ଏବଂ ଜାତୀୟ ଚିନ୍ତା ଓ କର୍ମର ଏହା ଏକ ପ୍ରଧାନ କେନ୍ଦ୍ର ହୋଇଥିଲା ।

ଅସହଯୋଗର ବନ୍ୟା ଦେଶରେ ବ୍ୟାପିଲା ମାତ୍ରକେ ପଣ୍ଡିତ ଗୋପବନ୍ଧୁ ଓ ତାଙ୍କର ସହକର୍ମିବୃନ୍ଦ ଆନ୍ଦୋଳନରେ ଯୋଗ ଦେଲେ । ସତ୍ୟବାଦୀ ସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହେଲା ।

\+ \+ \+ \+ ପଣ୍ଡିତ ଗୋପବନ୍ଧୁଙ୍କୁ ଜେଲରେ ପୂରାଇବା ପାଇଁ କର୍ତ୍ତୃପକ୍ଷ ବହୁତ ଚେଷ୍ଟା କରିଥିଲେ । ସେ ଚେଷ୍ଟା କେତେଥର ବିଫଳ ହୋଇଥିଲେହେଁ ତାଙ୍କୁ ଦୁଇ ବର୍ଷ କାରାଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥିଲା । ତାଙ୍କର କାରାମୁକ୍ତି ପରେ ପଣ୍ଡିତ ଗୋପବନ୍ଧୁ ଦାସ ନୀରବ ନିଷ୍ଠଳ ଭାବରେ ଜାତୀୟ ଆନ୍ଦୋଳନ ଓ ଓଡ଼ିଶାର ଉନ୍ନତି ଦିଗରେ କାର୍ଯ୍ୟ କରୁଥିଲେ । ସନ୍ନ୍ୟାସୀ ଭାବରେ ନିଷ୍କଳରେ ଦେଶହିତାର୍ଥେ କାର୍ଯ୍ୟକରିବା ତାଙ୍କର ଲକ୍ଷ୍ୟ ଥିଲା ଏବଂ ନାମ ଓ ଯଶ ସେ ଆଦୌ ଲୋଡ଼ୁ ନ ଥିଲେ । ଓଡ଼ିଶାରେ ବନ୍ୟା ଓ ଦୁର୍ଭିକ୍ଷ ହେଲାମାତ୍ରକେ ପଣ୍ଡିତ ଗୋପବନ୍ଧୁ ଦାସ ପ୍ରତୀକାର ପାଇଁ ସ୍ୱେଚ୍ଛାସେବକଦଳ ନେଇ ହାଜର ହୁଅନ୍ତି ।

ଅସହଯୋଗ ପୂର୍ବେ ଓ ପରେ ମୁଁ ଅନେକଥର ପଣ୍ଡିତଜୀଙ୍କ ସଙ୍ଗେ ସାକ୍ଷାତ କରିଥିଲି ଏବଂ ତାହାଙ୍କ ପ୍ରତି ମୋର ଖୁବ୍ ଭକ୍ତି ଥିଲା । ୧୯୨୪ ରେ

ମୁଁ ଜନ୍ମ ଓ ଲାଳିତ ପାଳିତ ହୋଇଥିବା ଯୋଗୁଁ ଗୋପବନ୍ଧୁ ବାବୁଙ୍କ ମୃତ୍ୟୁରେ ଓଡ଼ିଆ ଜଣେ ତାଙ୍କର ଅଭାବ ଯେପରି ତୀବ୍ରଭାବରେ ଅନୁଭବ କରୁଥିବ ମୁଁ ମଧ୍ୟ ସେହିପରି ଅନୁଭବ କରୁଅଛି । ମୋର ଏକାନ୍ତ ଅନୁରୋଧ, ଓଡ଼ିଶାର ଯୁବକବୃନ୍ଦ ଏହି ଦୁର୍ଦ୍ଦିନରେ କାର୍ଯ୍ୟକ୍ଷେତ୍ରକୁ ବାହାରିପଡ଼ି ଗୋପବନ୍ଧୁଙ୍କ ପତାକା ଧରି ରଖିବେ । ଏହି କେତେବର୍ଷ ମଧ୍ୟରେ ଶତ ଶତ ଗୋପବନ୍ଧୁ ଓଡ଼ିଶାରେ ବାହାରନ୍ତୁ; ତେବେ ବୁଝିବାକୁ ହେବ ଯେ, ସ୍ୱର୍ଗୀୟ ମହାତ୍ମାଙ୍କ ଜୀବନର କାର୍ଯ୍ୟ ନିରର୍ଥକ ହୋଇ ନାହିଁ ।

ଶ୍ରୀଯୁକ୍ତ ଜେ. ଏମ୍. ସେନଗୁପ୍ତ—

ପଣ୍ଡିତ ଗୋପବନ୍ଧୁ ଦାସ ଆଜି ଇହଧାମରେ ନାହାନ୍ତି, ଏ ସମ୍ବାଦ ଶୁଣି ମୁଁ ବଡ଼ ମର୍ମାହତ ହେଲି । ଏହି ଅଳ୍ପ ଦିନ ତଳେ ମୁଁ ତାଙ୍କୁ ସୁସ୍ଥ ଶରୀରରେ କଂଗ୍ରେସର ଓ ଓଡ଼ିଶାର କାର୍ଯ୍ୟ କରିବାର ଦେଖିଥିଲି । ସେ ପ୍ରକୃତରେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ । ତାଙ୍କର ସ୍ଥାନପୂରଣ ହେବା ଅତି କଷ୍ଟକର । ପଣ୍ଡିତ ଗୋପବନ୍ଧୁଙ୍କ ପରି ମନୀଷୀ ଖୁବ୍ କମ ଏ ଦେଶରେ ଜନ୍ମି ଅଛନ୍ତି । ଦେଶର ଦୀନ ଦରିଦ୍ରଙ୍କ ପାଇଁ ଯେତେବେଳେ ସ୍ୱାର୍ଥତ୍ୟାଗର ଆବଶ୍ୟକ ପଡ଼ୁଥିଲା ପଣ୍ଡିତଜୀ ସର୍ବଦା ସେଠାରେ ଉପସ୍ଥିତ ହେଉଥିଲେ ।

ଶ୍ରୀଯୁକ୍ତ କିରଣଶଙ୍କର ରାୟ—

ଦେଶର ଏହି ଦୁର୍ଦ୍ଦିନରେ ଓଡ଼ିଶାର ସର୍ବପ୍ରଧାନ ନେତା ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁ କେବଳ ଓଡ଼ିଶା ପକ୍ଷରେ ନୁହେଁ, ସମଗ୍ର ଭାରତ ପକ୍ଷରେ ବଡ଼ ଜାତୀୟ ବିପଦ ।

ବଙ୍ଗନେତା ଓ ନିଖିଳଭାରତ ଖଦ୍ଦରଭଣ୍ଡାରର ପ୍ରସିଦ୍ଧ କର୍ମୀ ଶ୍ରୀଯୁକ୍ତ ସତୀଶଚନ୍ଦ୍ର ଦାସଗୁପ୍ତ—

ପରମଶ୍ରଦ୍ଧାସ୍ପଦ ଉତ୍କଳମଣି ଗୋପବନ୍ଧୁଙ୍କ ମୃତ୍ୟୁରେ ଓଡ଼ିଶାର ସର୍ବନାଶ । ତାଙ୍କ ମୃତ୍ୟୁରେ ଭାରତର ଘୋର କ୍ଷତି । ମୋର ତାଙ୍କ ସହିତ

ଯେ ବନ୍ଧୁତା ଓ ସୌହାର୍ଦ୍ଦ୍ୟ ଥିଲା ସେ ସ୍ମୃତି ଏବେ ମନେପଡ଼ିଲେ ମନ ଫାଟି ହୋଇଯାଉଛି । ତାଙ୍କପାଇଁ ଲକ୍ଷ ଲକ୍ଷ ଲୋକ କାନ୍ଦୁଛନ୍ତି । ସେହି ଅସୀମ ଲୁହ ଧାରରେ ମୋର ଏ ଲୋତକ ଧାର ମିଶିଯାଉ ।

ଶ୍ରୀଯୁକ୍ତ ଦେବଧର—ସଭାପତି ଭାରତ ସେବକସମାଜ, ପୁନା—

ପଣ୍ଡିତ ଗୋପବନ୍ଧୁଙ୍କ ବିୟୋଗରେ ଓଡ଼ିଶାରେ ଯେ ଅଭାବ ଘଟିଲା ତା ଆଜି ପୂରଣ ହେବା ସହଜ ନୁହେଁ । ତାଙ୍କ କାର୍ଯ୍ୟ ଓ ବିଶ୍ୱାସର ମହତ୍ତ୍ୱ ରକ୍ଷା ପାଇଁ ସେ ବହୁ ତ୍ୟାଗ କରିଛନ୍ତି । ବଙ୍ଗ, ବିହାର, ଓଡ଼ିଶାର ଲୋକେ ଲାଗି ପଡ଼ି ତାଙ୍କ କାର୍ଯ୍ୟ ସବୁ ଚଳାଇ ସେ ପୁଣ୍ୟାତ୍ମାଙ୍କର ସ୍ମୃତି ନିଷ୍ଟୟ ରଖିବେ ।

ମିଷ୍ଟର ଏମ୍. ଏସ୍. ଦାସ [ମଧୁବାବୁ] —

ସାଧାରଣ ଜୀବନରେ ତାଙ୍କ ସହିତ ମୋର ଯେ ସଦ୍‌ଭାବ ଥିଲା, ଏବେ ସେ ସବୁ ସୁଖସ୍ମୃତି ମନେପଡ଼େ । କେତେ ବର୍ଷ ହେଲା ଆମ୍ଭେ ଦୁହେଁ ଏକାଠେଇଁ ବସି କଥାବାର୍ତ୍ତା ହୋଇ ନାହୁଁ । ଓଡ଼ିଶାର ଭବିଷ୍ୟତ୍ ଏକାଠି ବିଚାର କରି ନାହୁଁ । ଆମ୍ଭମାନଙ୍କର ଜୀବନ ଅଲଗା ହେଲେ କଣ ହେବ, ଆମ୍ଭମାନଙ୍କର ମତଦ୍ୱୈଧ ଥିଲେ କଣ ହେବ, ଗୋପବନ୍ଧୁଙ୍କର ଜୀବନୀ ମହତ୍, ଏହା ଉତ୍କଳର ଜାତୀୟ ସମ୍ପଦ । ମୋର ଆଶା, ସେ ଯେଉଁ କାର୍ଯ୍ୟ ବାକି ରଖିଛନ୍ତି, ତାହାଙ୍କର ବନ୍ଧୁ ତାହା ଚଳାଇବେ । ପରଲୋକଗତ ନେତାଙ୍କର କାର୍ଯ୍ୟ ଚଳାଇବାହିଁ ତାଙ୍କପକ୍ଷେ ଶ୍ରେଷ୍ଠ ସମ୍ମାନ । ସେ ଯେତେବେଳେ କର୍ତ୍ତବ୍ୟରେ ଲାଗିଛନ୍ତି ଭଗବାନ୍ ତାଙ୍କୁ ସେହି ସମୟରେ ନେଇଗଲେ । ମୋର ଆଶା, ଉତ୍କଳବାସୀ ପଣ୍ଡିତ ଗୋପବନ୍ଧୁଙ୍କର ଯଥାର୍ଥ ସମ୍ମାନ କରିବେ ।

ଶ୍ରୀଯୁକ୍ତ ବ୍ରଜକିଶୋର ପ୍ରସାଦ—

ମୋର ପ୍ରିୟ ପୁରାତନ ବନ୍ଧୁ ଶ୍ରୀ ଗୋପବନ୍ଧୁଙ୍କର ଅକାଳ ବିୟୋଗରେ ମୋ ହୃଦୟରେ ଯେ ବେଦନା ହୋଇଛି ତାହା କିପରି କହିବି ? ତାଙ୍କ ବିୟୋଗରେ ଦେଶରୁ ଜଣେ ସରଳ ଶୁଦ୍ଧ ନୀରବକର୍ମୀ ଓ ପ୍ରକୃତ ଦେଶସେବକ

ଚାଲିଗଲେ । ତାଙ୍କପରି ମହାତ୍ମା ଲୋକ ଖୋଜିଲେ ଏ ଦେଶରେ କ୍ୱଚିତ୍ ଦେଖାଯାଏ । ମୋର ଆନ୍ତରିକ ଆଶ୍ୱାସନା ଗ୍ରହଣ କର ।

ଶ୍ରୀଯୁକ୍ତ ସତ୍ୟେନ୍ଦ୍ର ଚନ୍ଦ୍ର ମିତ୍ର—

ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ମୃତ୍ୟୁରେ ସମଗ୍ର ଭାରତ ଯେଉଁ ରତ୍ନ ହରାଇଥିଲା, ପଣ୍ଡିତ ଗୋପବନ୍ଧୁ ଦାସଙ୍କ ତିରୋଧାନରେ ଓଡ଼ିଶା ସେହିପରି ରତ୍ନଟିଏ ହରାଇଛି । ସ୍ୱର୍ଗୀୟ ପଣ୍ଡିତ ଜୀ ଜୀବନର ପ୍ରତି ରକ୍ତବିନ୍ଦୁ ଦେଶହିତାର୍ଥେ ଦାନ କରୁଥିଲେ ଏବଂ ସେହି କାର୍ଯ୍ୟରେ ତାଙ୍କ ଜୀବନ ନିର୍ବାଣ ପାଇଲା ।

ଶ୍ରୀଯୁକ୍ତ କେ. ଏମ୍. ଦାସଗୁପ୍ତ—

ଓଡ଼ିଶାର ସୁବିଖ୍ୟାତ ନେତା ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁ ଏକ ବିପଦ । ଦେଶମାତାର ସେବାରେ ସେ ଜୀବନ ଉତ୍ସର୍ଗ କରିଥିଲେ ଏବଂ ଦିବାରାତ୍ର ଦେଶର ମଙ୍ଗଳ ଚିନ୍ତା କରୁଥିଲେ । ଯେତେଦିନ ପର୍ଯ୍ୟନ୍ତ ଭାରତବର୍ଷର ମାନଚିତ୍ରରେ ଓଡ଼ିଶାର ନାମ ରହିଥିବ ତେତେଦିନ ପର୍ଯ୍ୟନ୍ତ ଓଡ଼ିଶା ବନ୍ୟାରେ ପଣ୍ଡିତ ଗୋପବନ୍ଧୁ ଯେଉଁ କାର୍ଯ୍ୟ କରିଛନ୍ତି ତାହା କେହି ଭୁଲିବେ ନାହିଁ ।’

‘ଉତ୍କଳ ସାହିତ୍ୟ’ ଲେଖିଛନ୍ତି—ଉତ୍କଳଖଣ୍ଡର ଏକନିଷ୍ଠ ଦେଶ-ସେବକ କର୍ମୀ, ଜନପ୍ରିୟ ନେତା ପଣ୍ଡିତ ଗୋପବନ୍ଧୁ ଦାସ ଇହ ଜଗତରେ ନାହାନ୍ତି ! ତାଙ୍କର ଆକସ୍ମିକ ଓ ଅକାଳ ପ୍ରୟାଣରେ ସମଗ୍ର ଉତ୍କଳରେ ଶୋକର ପ୍ରବଳ ତରଙ୍ଗ ଉତ୍ଥିତ ହୋଇଅଛି—ସମଗ୍ର ଭାରତଖଣ୍ଡରେ ମଧ୍ୟ ସେ ତରଙ୍ଗର ଆଘାତ ଲାଗିଛି । ଯଥାର୍ଥରେ ନାନାଗୁଣରେ ମଣ୍ଡିତ ଥାଇ ଏବଂ ସରଳ ମଧୁର ପ୍ରକୃତି ଯୋଗୁଁ ଗୋପବନ୍ଧୁ ଉତ୍କଳ ଜନଗଣଙ୍କର ଅତି ପ୍ରିୟ ସନ୍ତାନ ରୂପରେ ସର୍ବତ୍ର ସମାଦୃତ ହୋଇଥିଲେ ଏବଂ ନିଜର କର୍ମ ଜୀବନ ଓ ସାଧୁ ଚରିତ୍ର ପ୍ରଭାବରେ ଉତ୍କଳ ବାହାରେ ମଧ୍ୟ ଖ୍ୟାତି, ପ୍ରତିପତ୍ତି ବିସ୍ତାର କରି ପାରିଥିଲେ । ଆଜି ଅକାଳରେ ତାଙ୍କୁ ହରାଇ ଉତ୍କଳ ଦୀନତର ହୋଇଅଛି । ଉତ୍କଳ ନାନା ବିଭାଗରେ ଅନେକ କୃତୀ ସନ୍ତାନଙ୍କୁ ହରାଇ

କାତର ପ୍ରାଣରେ ହାହାକାର କରଅଛି—ବ୍ୟାକୁଳ ନେତ୍ରରେ ସ୍ୱର ଆଡ଼କୁ ଅନାଇ ଅଛି, ମାତ୍ର ତାହାର କୌଣସି ଅଭାବ କୌଣସି କାଳେ ପୂର୍ଣ୍ଣ ହୋଇନାହିଁ। ଏବେ ନାନାଭାବରେ କର୍ମନିରତ, ସ୍ୱଦେଶର ସେବାରେ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗୀକୃତପ୍ରାଣ ଗୋପବନ୍ଧୁଙ୍କ ଅଭାବ କିଏ ବା ପୂରଣକରିବେ ? ସ୍ୱତନ୍ତ୍ର ଜୀବନରେ ଆମ୍ଭେମାନେ ଗୋପବନ୍ଧୁଙ୍କୁ ଜାଣିଅଛୁ, ତାଙ୍କରପ୍ରାଣର ଆବେଗ ବୁଝିଅଛୁ । ନାନା ପରିବର୍ତ୍ତନ ଘାତ ପ୍ରତିଘାତ ମଧ୍ୟରେ ତାଙ୍କ ଜୀବନର ଯେ ବର୍ତ୍ତମାନ ପରିଣତି ଘଟିଥିଲା, ତାହା ମଧ୍ୟ ଦୂରରେ ଥାଇ ଲକ୍ଷ୍ୟ କରିଅଛୁ । ସେହି ଯୌବନର ଉନ୍ମେଷରୁ ତାଙ୍କ ପ୍ରାଣର ଅନ୍ତଃସ୍ଥଳରେ ଯେ ଚିନ୍ତା ଓ ଭାବର ଧାରା ଅକ୍ଷୁଣ୍ଣଭାବରେ ପ୍ରବାହିତ ହୋଇ ଆସିଅଛି ତାହା ତାଙ୍କ ଜୀବନକୁ ସର୍ବଥା ଗୌରବ ମଣ୍ଡିତ କରିଅଛି ଏବଂ ଏହାହିଁ ଜାତିପକ୍ଷରେ ତାଙ୍କର ସର୍ବଶ୍ରେଷ୍ଠ ଦାନ । ସେହି ଚିନ୍ତା ଓ ଭାବହିଁ କର୍ମକ୍ଷେତ୍ରରେ ନାନା ଭାବରେ ଆତ୍ମ ପ୍ରକାଶ କରିଅଛି—କେତେବେଳେ ସାଫଲ୍ୟମଣ୍ଡିତ ହୋଇ-ଅଛି, କେତେବେଳେ ବା ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଅଛି । କିନ୍ତୁ କୌଣସିଥିରେ ସେହି ଧୀର ପ୍ରଶାନ୍ତ ପ୍ରାଣଟି ସ୍ଫୀତ ବା କ୍ଷୁବ୍ଧ ହୋଇନାହିଁ । ଏହାହିଁ ଗୋପବନ୍ଧୁଙ୍କ ଜୀବନର ମହତ୍ତ୍ୱ ଓ ଚରିତ୍ରର ମାଧୁରୀ । କର୍ମକ୍ଷେତ୍ରରେ ତାଙ୍କସହିତ କେତେ ସ୍ଥଳରେ ମତଭେଦ ଘଟିଅଛି—ସମୟ ସମୟରେ ଉଭୟ ପକ୍ଷରୁ ତୀବ୍ର ସମାଲୋଚନା ମଧ୍ୟ ହୋଇଛି । କିନ୍ତୁ ସେଥିପାଇଁ ପରସ୍ପର ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟର ଅଭାବ କେବେ ହେଲେ ଘଟିନାହିଁ । ଆଜିକାଲି ଜୀବନରେ ଏଇଟା ସାମାନ୍ୟ ମୂଲ୍ୟବାନ୍ ବସ୍ତୁ ନୁହେ ।

ଗୋପବନ୍ଧୁଙ୍କ ଜୀବନର କାର୍ଯ୍ୟାବଳୀ ଓ ତାହାର ଫଳାଫଳ ଗଣନା କରିବାର ସ୍ଥାନ ବା ସମୟ ଏ ନୁହେ । ସତ୍ୟବାଦୀର ଶିକ୍ଷା ପ୍ରତିଷ୍ଠାନ ଦ୍ୱାରା ଉତ୍କଳୀୟ ବହୁଶତ ତରୁଣ ପ୍ରାଣରେ ସେ ଯେଉଁ ଜାଗରଣ ଏବଂ ଜ୍ଞାନ ଓ କର୍ମର ପ୍ରେରଣା ଆନୟନ କରି ପାରିଥିଲେ, ତାହା ଉତ୍କଳର ଜାତୀୟ ଜୀବନରେ ଗୋଟିଏ ବିଶେଷ ଅଧ୍ୟାୟ । ତାହାର ଦ୍ୱାରା ସେ କେବଳ ସମଗ୍ର ଉତ୍କଳରେ ନୁହେ, ଉତ୍କଳର ବାହାରେ ମଧ୍ୟ ପ୍ରତିଷ୍ଠା ଅର୍ଜନ କରିଥିଲେ । ଦଳଗତ ସଙ୍କୀର୍ଣ୍ଣତା ସତ୍ତ୍ୱେ ଏହା ଉତ୍କଳର ଗୌରବ ସାମଗ୍ରୀ ଥିଲା । ଉଗ୍ର ରାଜନୀତିର ଉଷ୍ଣ ବାୟୁପ୍ରବାହରେ ପ୍ରତିଷ୍ଠାନଟି ବିଧ୍ୱସ୍ତ ହୋଇଯିବା ସାମାନ୍ୟ

ଯୋଗ୍ୟର ବିଷୟ ନୁହେ । 'ସମାଜ'ପତ୍ରିକାର ପରିଚାଳନାରେ ଗୋପବନ୍ଧୁ ଯେଉଁ ଦକ୍ଷତା ଦେଖାଇଛନ୍ତି ବର୍ତ୍ତମାନ ଉତ୍କଳରେ ତାହାର ତୁଳନା ନାହିଁ କହିଲେ ଚଳେ । ବନ୍ୟାବିପତ୍ତି ଓ ଦୁର୍ଭିକ୍ଷର ଆକ୍ରମଣରେ ଗତ କେତେବର୍ଷ ମଧ୍ୟରେ ଉତ୍କଳ ଉପର ବାରମ୍ବାର ବିବ୍ରତ ହୋଇ ପଡ଼ିଅଛି ତାହା ସମସ୍ତଙ୍କୁ ଜଣା । ଏ କ୍ଷେତ୍ରରେ ଗୋପବନ୍ଧୁଙ୍କର ଅଦମ୍ୟ ଚେଷ୍ଟା ଓ ଅକ୍ଳାନ୍ତ ଶ୍ରମ ସର୍ବଜନ ସୁବିଦିତ । ଉତ୍କଳରେ ଅସହଯୋଗ ଆନ୍ଦୋଳନର ସେ କର୍ଣ୍ଣଧାର ଥିଲେ । ଉକ୍ତ ଆନ୍ଦୋଳନର ବ୍ୟର୍ଥତା ଅନୁଭବ କରି ସେ ନିଜ କର୍ମପନ୍ଥାର ନୂତନ ବ୍ୟବସ୍ଥା କରିବାରେ ବ୍ୟାପୃତ ଥିଲେ । କିନ୍ତୁ ସବୁ ଶେଷ ହୋଇଗଲା ।

ତରୁଣ ବୟସରୁ ଗୋପବନ୍ଧୁ ସାହିତ୍ୟ ସାଧନାରେ ମନ ବଳାଇଥିଲେ ଏବଂ ସ୍ୱାଭାବିକ ଶକ୍ତି ଓ ଗଭୀର ଅନୁଶୀଳନ ଫଳରେ ଉତ୍କଳର ସାହିତ୍ୟ କ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିପାରିଥିଲେ । ଉତ୍କଳସାହିତ୍ୟ ପ୍ରତି ତାଙ୍କର ଦାବୀ ବେଶୀ ନୁହେ—ଏହା ଅବଶ୍ୟ ଉତ୍କଳର ଦୁର୍ଭାଗ୍ୟ ବୋଲିବାକୁ ହେବ । ମାତ୍ର ସେ ଯାହା ଲେଖିଅଛନ୍ତି, ତାହା କେଡ଼େ ସରଳ, କେଡ଼େ ମଧୁର, କି ହୃଦୟସ୍ପର୍ଶୀ !

ନାନା ଦିଗରୁ ଆଲୋଚନା କଲେ ଦେଖାଯିବ ଗୋପବନ୍ଧୁଙ୍କ ଜୀବନଟି ଦୀନ ଉତ୍କଳର ଗୋଟିଏ ଅମୂଲ୍ୟ ଧନ । ସେଥିପାଇଁ କହୁଥିଲୁ ଏ ଧନ ହରାଇ ଆଜି ଉତ୍କଳ ଦୀନତର ହୋଇଅଛି । ଆମ୍ଭେମାନେ ତାଙ୍କର ଅକାଳ ବିୟୋଗରେ ଗଭୀର ମର୍ମ ବେଦନା ଅନୁଭବ କରୁଅଛୁଁ ଏବଂ ଦୁଃଖଦୈନ୍ୟ-ପୀଡ଼ିତ ଉତ୍କଳଭୂମିର ଦୁର୍ଦ୍ଦଶାକଥା ଭାବି ବ୍ୟାକୁଳ ହେଉଅଛୁଁ ।

ସମ୍ବଲପୁରର 'ନବଯୁଗ' ଲେଖିଅଛନ୍ତି—ଓଡ଼ିଶାର ଦୁର୍ଭାଗ୍ୟ ଯେ ଏ ବର୍ଷ ତାର ଚାରିପୁତ୍ରଶ୍ରେଷ୍ଠଙ୍କ ନିର୍ମମ ବିଧାତାକୃତ ଅପହୃତ ହୋଇ ଅଛନ୍ତି । ମୟୂରଭଞ୍ଜର ସ୍ୱର୍ଗୀୟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବଙ୍କ ବିୟୋଗ ଯନ୍ତ୍ରଣା ମନରୁ ଯାଇନାହିଁ । ଏପରି ସମୟରେ ଉତ୍କଳ ମାତାଙ୍କ ମହୋତ୍ତମଣି ପଣ୍ଡିତ ଗୋପବନ୍ଧୁ ଇହଧାମ ଛାଡ଼ି ଚାଲିଗଲେ । ଏହା କେବଳ ଓଡ଼ିଶା ପକ୍ଷରେ ନୁହେ, ସମଗ୍ର ଭାରତ ପକ୍ଷରେ ଗୋଟିଏ ନିଦାରୁଣ ଦୁଃସମ୍ବାଦ । ଭାରତର ଆଧୁନିକ ରାଜନୈତିକ ପରିସ୍ଥିତିରେ ଗୋପବନ୍ଧୁଙ୍କ ନିଃସ୍ୱାର୍ଥ

ଦେଶ ସେବାର ଉପରେ [ଆବଶ୍ୟକତା ଥିଲା, ତାହା ବୁଝାଇ କହିବା ଅନାବଶ୍ୟକ । ବିଶେଷତଃ ଗୋପବନ୍ଧୁଙ୍କ ପ୍ରିୟତମ ସମସ୍ୟା ଦେଶମିଶ୍ରଣ ବିଷୟରେ ସିଦ୍ଧାନ୍ତ ନ ହେଉଣୁ ସେ ପରଲୋକକୁ ଚାଲିଗଲେ । ଯେଉଁ କାର୍ଯ୍ୟ ସେ ଅସମ୍ପୂର୍ଣ୍ଣ ରଖି ଯାଇ ଅଛନ୍ତି ତାହା ପୂର୍ଣ୍ଣ କରିବାକୁ ଓଡ଼ିଶାରେ ଲୋକ ଅଛନ୍ତି ବୋଲି ବିଶ୍ୱାସ ହେଉନାହିଁ । ଗୋପବନ୍ଧୁ ଯେ କେବଳ ରାଜନୈତିକ ନେତା ଥିଲେ ତାହା ନୁହେଁ,ତାଙ୍କପରି ଉଚ୍ଚ ଧରଣର କବି ମଧ୍ୟ ଏଯୁଗରେ ବିରଳ କହିଲେ ଚଳେ । 'ମୁକୁର'ରେ ପ୍ରକାଶିତ ତାଙ୍କର ପ୍ରାରମ୍ଭିକ ପଦ୍ୟ ଗୁଡ଼ିକ ଯେଉଁମାନେ ପଢ଼ିଅଛନ୍ତି, ସେମାନେ ଆମ୍ଭମାନଙ୍କ ଉକ୍ତିର ସତ୍ୟତା, ଉପଲବ୍ଧି କରି ପାରିବେ । ଗୋପବନ୍ଧୁ ଯଦି ରାଜନୀତିରେ ମନ ନ ଦେଇ ସାହିତ୍ୟ ସେବାରେ ମନ ଦେଇଥାନ୍ତେ, ତାହାହେଲେ ସ୍ୱର୍ଗୀୟ କବିବର ରାଧାନାଥଙ୍କ ସ୍ଥାନ ତାଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥାନ୍ତା । କିନ୍ତୁ ଦେଶର ଅବସ୍ଥା ଦୃଷ୍ଟିରେ ସେ ସାହିତ୍ୟ-ସେବା ଛାଡ଼ି ରାଜନୀତିରେ ଯୋଗ ଦେବାକୁ ବାଧ୍ୟ ହୋଇଥିଲେ । ଗୋପବନ୍ଧୁ ପ୍ରକୃତରେ ଜନନେତା ଥିଲେ । ଓଡ଼ିଶାର କିପରି ଉନ୍ନତି ହେବ, ଏବିଷୟ ତାଙ୍କର ଶୟନର ସ୍ୱପ୍ନ ଓ ଜାଗରଣର ଧ୍ୟାନ ଥିଲା । ଏହି କଳ୍ପନାକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ସେ ସତ୍ୟବାଦୀର ଲୁଣିଅନା ନିକୁଞ୍ଜରେ ଫରଗୁସନ୍ କଲେଜର ଅନୁକରଣରେ ଗୋଟିଏ ଜାତୀୟ ବିଦ୍ୟାଳୟ ଆରମ୍ଭ କରିଥିଲେ । ଯେତେବେଳେ ମହାତ୍ମା ଗାନ୍ଧୀ ଅସହଯୋଗ ମନ୍ତ୍ର ଭାରତରେ ପ୍ରଚାର କଲେ, ଗୋପବନ୍ଧୁଙ୍କ ଭାବପ୍ରବଣ ପ୍ରାଣ ସେହି ସ୍ରୋତରେ ଭାସିଗଲା । ଓଡ଼ିଶାରେ ଅସହଯୋଗ ମନ୍ତ୍ର ପ୍ରଚାର କରି ସେ ସୁପ୍ତ ଓଡ଼ିଆ ଜାତିର ପ୍ରାଣରେ ଯେଉଁ ଚେତନା ଆଣିଅଛନ୍ତି, ତାହା ସମସ୍ତେ ଜାଣନ୍ତି । ଏହି ସମୟରେ ସତ୍ୟବାଦୀ ସର୍କାରୀ ସମ୍ପର୍କ ତୁଟାଇ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା । ଗୋପବନ୍ଧୁ 'ସମାଜ'ର ସମ୍ପାଦକ ଥିଲେ । ତାଙ୍କପରି ସମ୍ପାଦକ ଓଡ଼ିଶାରେ ଆଜପର୍ଯ୍ୟନ୍ତ ଦେଖିନାହିଁ; ସରଳ ଭାଷାରେ ଗୂଢ଼ ରାଜନୀତି ତତ୍ତ୍ୱ ବିଷୟରେ ତାଙ୍କର ଅସାଧାରଣ କ୍ଷମତା ଥିଲା । ଓଡ଼ିଶାର ଦୁର୍ଭିକ୍ଷ-ପ୍ରପୀଡ଼ିତ ଲୋକଙ୍କ ସାହାଯ୍ୟ ନିମନ୍ତେ ସେ ମନ

ପ୍ରାଣ ଢାଳି ଦେଇଥିଲେ । ତାଙ୍କପରି ଏହି ସବୁ କାର୍ଯ୍ୟ କରିବାକୁ ଓଡ଼ିଶାରେ ଆଉ କିଏ ଅଛି ? ଅଭିଶପ୍ତ ଓଡ଼ିଆ ଜାତି ଜୀବନମରଣର ସଙ୍କଟ ସ୍ଥଳରେ ତାଙ୍କୁ ହରାଇ ମ୍ରିୟମାଣ ହୋଇଅଛି । ଉତ୍କଳମାତାଙ୍କ ମୁକୁଟମଣି ମସ୍ତକ-ଚ୍ୟୁତ ହୋଇଅଛି । ଭାରତର ପତ୍ରିକା ମହଲରେ ଏହି ଦାରୁଣ ସମ୍ବାଦ ଯୋଗୁଁ ବିଶେଷ ଚହଳ ପଡ଼ି ଯାଇଅଛି । ବିଧାତା ଓଡ଼ିଆମାନଙ୍କ କପାଳରେ କଅଣ ଲେଖିଛନ୍ତି କିଏ କହିପାରେ ?

ଏମାନଙ୍କ ଛଡ଼ା ଓଡ଼ିଶା ଭିତରର ଏବଂ ବାହାରର ଓ ବ୍ରହ୍ମଦେଶର ନେତା ଓଟୋମାଙ୍କ ପର୍ଯ୍ୟନ୍ତ ଅନ୍ୟାନ୍ୟ ଅନେକ ବିଶିଷ୍ଟ ବ୍ୟକ୍ତି ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରି ତାଙ୍କ ଆଜୀବନ ସେବାର ପ୍ରଶଂସା କରିଅଛନ୍ତି ।

( ସମ୍ପୂର୍ଣ୍ଣ )



ମୁଦ୍ରାକର—ଶ୍ରୀ ବାଳକୃଷ୍ଣ କର ବି. ଏ., ସାରସ୍ୱତ ପ୍ରେସ, କଟକ

ଓଡ଼ିଆ ଜାତିର ଗୌରବ, କାଞ୍ଚି ବିଜୟର ଅଧିନାୟକ,

ନ୍ୟାୟର ଅବତାର

## ପୁରୁଷୋତ୍ତମ ଦେବ

ଦେଶାତ୍ମବୋଧ ହୃଦୟରେ ଜାଗ୍ରତ କରାଇବାକୁ ହେଲେ, ସ୍ୱଦେଶ-ପ୍ରେମିକତାର ତେଜରେ ଦେଶ ପ୍ଲାବିତ କରିବାକୁ ହେଲେ ଶୈଶବାବସ୍ଥାରୁ ବାଳକବାଳିକାମାନଙ୍କୁ ସ୍ୱଦେଶର ବୀରପୁରୁଷ, ଓଡ଼ିଶାର ନେପୋଲିଅନ **ପୁରୁଷୋତ୍ତମଦେବ**ଙ୍କ ଜୀବନଚରିତ ପଢ଼ିବାକୁ ଦିଅନ୍ତୁ । ଭାଷା ଅତି ସରଳ—ବାଳକବାଳିକାମାନଙ୍କର ହୃଦୟଗ୍ରାହୀ ଓ ସ୍ୱଦେଶୀ ଭାବରେ ପୂର୍ଣ୍ଣ ।

ଦରିଦ୍ର ଉତ୍କଳରେ ବହୁଳ ପ୍ରଚାର ପାଇଁ ନାମମାତ୍ର ମୂଲ୍ୟ

ଛ'ପଇସା

———

ଆର୍ଯ୍ୟଧର୍ମର ପ୍ରତିଷ୍ଠାତା

## ସ୍ୱାମୀ ଦୟାନନ୍ଦ

ଧର୍ମହିଁ ଭାରତର ଜାତୀୟତାର ମେରୁଦଣ୍ଡ । ଏହି ମେରୁଦଣ୍ଡ ସୁଦୃଢ଼ ନୁହେଁ ବୋଲି ଭାରତ ଆଜି ପଦାନତ । ଧର୍ମଜୀବନର ନବ ଜାଗରଣ ପାଇଁ ଧର୍ମବୀର **ସ୍ୱାମୀ ଦୟାନନ୍ଦଙ୍କର ତ୍ୟାଗମୟ ଜୀବନଚରିତ** ବାଳକବାଳିକାମାନଙ୍କ ହସ୍ତରେ ଅର୍ପଣ କରାଗଲା । ଭାଷା ଅତି ସରଳ ଓ ମର୍ମସ୍ପର୍ଶୀ । ଆରମ୍ଭ କଲେ ଶେଷ ନକରି ରହି ପାରିବେ ନାହିଁ ।

ମୂଲ୍ୟ ତିନଅଣା ମାତ୍ର

ବାଣୀପୂଜାର ସର୍ବଶ୍ରେଷ୍ଠ ଉପହାର, ସ୍ୱଦେଶ-ପ୍ରେମିକତାର ମୃତସଞ୍ଜୀବନ-
ମହାମନ୍ତ୍ର, ସ୍ୱଦେଶହିତୈଷୀ ବୀରପୁରୁଷମାନଙ୍କର ହୃଦୟୋଚ୍ଛ୍ୱାସ,
ସ୍ୱାଧୀନତାର ବଜ୍ରଦୁନ୍ଦୁଭି

# ଯୁଗବାଣୀ

ମାତୃଭୂମି ଯେଉଁମାନଙ୍କର ଆରାଧ୍ୟା ଦେବୀ, ମାତୃଭୂମିର ସେବା ଯେଉଁମାନଙ୍କ ଜୀବନର ପ୍ରଧାନ ବ୍ରତ, ସେମାନେ ଥରେ 'ଯୁଗବାଣୀ'ର ସମ୍ମୋହନ ତାନ ଶ୍ରବଣ କରନ୍ତୁ । ଦେଖିବେ—ପ୍ରାଣ ସ୍ୱଦେଶ ପ୍ରୀତିର ମଧୁ ହିଲ୍ଲୋଳରେ ନାଚି ଉଠିବ—ହୃଦୟରେ ଦେଶପ୍ରେମର ନନ୍ଦନନ୍ଦନା ଜାଗି ଉଠିବ—ଶିରା ପ୍ରଶିରାରେ ବିଦ୍ୟୁତ୍ ଶକ୍ତି ଖେଳିଯିବ ।

ଯୁଗବାଣୀ ସଙ୍ଗୀତପ୍ରିୟ ଯୁବକଯୁବତୀଙ୍କ ଅମୂଲ୍ୟନିଧି । ଉତ୍କଳର ପ୍ରସିଦ୍ଧ ସଙ୍ଗୀତ-ବିଶାରଦ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ଓ ଗୋବିନ୍ଦ ଶୂରଦେଓ ଏବଂ ବଙ୍ଗ ସାହିତ୍ୟରଥୀ ଡ଼. ଏଲ୍. ରାୟ ପ୍ରଭୃତିଙ୍କର ବାଛା ବାଛା ସଙ୍ଗୀତରେ ଯୁଗବାଣୀର କଳେବର ପରିପୂର୍ଣ୍ଣ ।

ଏକଶତାଧିକ ପୃଷ୍ଠାବିଶିଷ୍ଟ ପୁସ୍ତକର ମୂଲ୍ୟ **ଦଶଅଣା** ମାତ୍ର ।



ସପନ ପୁରୀ ଗ୍ରନ୍ଥମାଳା— —ପ୍ରଥମଖଣ୍ଡ

# ସୁନାରାଇଜ

ସପନକୁହୁକବୋଳା ସାନ ସାନ ଝିଅ ପୁଅଙ୍କ ସୁକୋମଳ ହୃଦୟରେ ସୁନାରାଇଜର ଏଭଳି ସରସ-ସୁନ୍ଦର ଛବି ଆଙ୍କିବା ଏଇ ପ୍ରଥମ । ଦୁଇଟି ସରସ ସରଳ **କଣ୍ଢେଇ** କାହାଣୀ କଥାରେ 'ସୁନାରାଇଜ' ତିଆରି । 'ସୁନାରାଇଜ'ର ସବୁ ଥାନ ନାନାପ୍ରକାର ନାନା ରଙ୍ଗର ଚକ୍ ଚକ୍ଆ ଚିତ୍ରରେ ଝଲମଲ !!!

( ଖୁବ୍ ଅଳ୍ପ ଦିନଭିତରେ ପ୍ରକାଶିତ ହେବ )